ସୁବର୍ଣ୍ଣ ଜୟନ୍ତୀ ପ୍ରକାଶନ ମାଳା

# ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ

୫୦ ସୁବର୍ଣ୍ଣ ଜୟନ୍ତୀ



ଡକ୍ଟର ଗଣେଶ ପ୍ରସାଦ ସାହୁ

# ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ

ସଂକଳକ :
ଗଣେଶ ପ୍ରସାଦ ସାହୁ



ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ

ସଂକଳକ ଡକ୍ଟର ଗଣେଶ ପ୍ରସାଦ ସାହୁ

ପ୍ରକାଶକ ଓଡ଼ିଶା ସାହିତ୍ୟ ଏକାଡେମୀ,
ସଂସ୍କୃତି ଭବନ, ଭୁବନେଶ୍ୱର-୧୪

ପ୍ରଥମ ପ୍ରକାଶ : ୨୦୦୮

ମୁଦ୍ରଣ ସଂସାର ପ୍ରେସ,
ତଳତେଲେଙ୍ଗା ବଜାର, କଟକ-୯

ମୂଲ୍ୟ ଟ ୧୨୫.୦୦
(ଏକଶତ ପଚିଶ ଟଙ୍କା) ମାତ୍ର

**Paramananda Acharya's Prabandha**

*Compiler* : **Dr. Ganesh Prasad Sahu**

*Published by* : **Orissa Sahitya Akademi**
Sanskruti Bhawan,
Bhubaneswar-14

First Publication: **2008**

*Printed by* : **Sansar Press,**
Talatelenga Bazar, Cuttack-9

*Price* : **Rs.125.00** (Rupees one hundred twenty five) only

**ISBN : 81-7586-160-6**

# ଅଗ୍ରଲେଖ

ପରମାନନ୍ଦ ଆଚାର୍ଯ୍ୟ (୧୮୯୩-୧୯୭୨) ଓଡ଼ିଶାର ପ୍ରଥମ ପ୍ରତ୍ନତତ୍ତ୍ୱବିଦ୍ । ସେ ସାରାଜୀବନ ଅନୁସଂଧାନରେ ଲିପ୍ତ ଥିଲେ । ତାଙ୍କ ମନୀଷାର ଉଜ୍ଜ୍ୱଳ ସ୍ୱାକ୍ଷର ରାଧାନାଥଙ୍କ ଅନନ୍ୟ ପ୍ରତିଭା (୧୯୬୪) , **Studies in Orissan History, Archeology and Archives** (୧୯୬୯), ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ ପ୍ରଥମ ଭାଗ (୧୯୬୯), ଦ୍ୱିତୀୟ ଭାଗ (୧୯୭୨) ଏବଂ ଆହୁରି ଅନେକ ଲେଖା, ଯାହା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଅଶେଷ ପାଠକୀୟ ଆଦୃତି ହାସଲ କରିପାରିଛି । କିମ୍ବଦନ୍ତୀ ଓ ଇତିହାସର ଦ୍ୱନ୍ଦ୍ୱକୁ ନେଇ ପରମାନନ୍ଦ ସଦାସର୍ବଦା ଗବେଷଣାରେ ବ୍ରତୀ ରହିଥା'ନ୍ତି । ଦ୍ୱନ୍ଦ୍ୱର ରୂପ ପ୍ରଦାନ ଓ ତହିଁରୁ ଐତିହାସିକ ସତ୍ୟର ଅନ୍ୱେଷଣରେ ତାଙ୍କ ପ୍ରବନ୍ଧ ଗୁଡ଼ିକ ସମୃଦ୍ଧି ଲାଭ କରିଛି । କିମ୍ବଦନ୍ତୀ ଓ କଳ୍ପନା ପ୍ରାଚୁର୍ଯ୍ୟ-ଲୋକବିଶ୍ୱାସ ଭିତରେ ଲୁକ୍‌କାୟିତ ଓଡ଼ିଆ ସଂସ୍କୃତିର ବିଭିନ୍ନ ସମୃଦ୍ଧ ଦିଗକୁ ପରମାନନ୍ଦ ଅନ୍ୱେଷଣରେ ଆବିଷ୍କାର କରି ଏ ଜାତି ପ୍ରତି ତାଙ୍କର ଯେଉଁ କର୍ତ୍ତବ୍ୟନିଷ୍ଠା ପ୍ରତିପାଦନ କରିଛନ୍ତି, ସେଥିପାଇଁ ଓଡ଼ିଆ ସଂସ୍କୃତି ତାଙ୍କ ନିକଟରେ ଋଣୀ ହୋଇ ରହିବ । ଏହିପରି ଜଣେ ପ୍ରତିଭାସଂପନ୍ନ ପ୍ରତ୍ନତତ୍ତ୍ୱବିଦ୍ ଓ ଐତିହାସିକ ତଥା ସୁଲେଖକଙ୍କ ବଳିଷ୍ଠ କୃତିସମୂହକୁ ଏକତ୍ର ସଂକଳନ କରି ଏକ ପୁସ୍ତକ ଆକାରରେ ପ୍ରକାଶ କରିବାକୁ ଓଡ଼ିଶା ସାହିତ୍ୟ ଏକାଡେମୀ କିଛି ବର୍ଷ ପୂର୍ବରୁ ପଦକ୍ଷେପ ଗ୍ରହଣ କରିଥିଲା । ପରମାନନ୍ଦଙ୍କ ସୃଷ୍ଟି ଉପରେ ଉଚ୍ଚତର ଗବେଷଣାରେ ମଗ୍ନ ଯୁବ-ସାହିତ୍ୟିକ ଡକ୍ଟର ଗଣେଶପ୍ରସାଦ ସାହୁଙ୍କୁ ଏହି ସାରସ୍ୱତ କୃତିଟିକୁ ଏକତ୍ର ସଂକଳନ କରିବାକୁ ଓଡ଼ିଶା ସାହିତ୍ୟ ଏକାଡେମୀ ଅନୁରୋଧ କରିଥିଲା । ଏକାଡେମୀର ସାଗ୍ରହ ଅନୁରୋଧକୁ ରକ୍ଷାକରି ଡକ୍ଟର ସାହୁ ଖୁବ୍ ସ୍ୱଳ୍ପ ସମୟ ମଧ୍ୟରେ ପରମାନନ୍ଦଙ୍କ ଲେଖା-ସମୂହକୁ ବିଭିନ୍ନ ପତ୍ରପତ୍ରିକା ତଥା ଅପ୍ରକାଶିତ ପାଣ୍ଡୁଲିପି ପୃଷ୍ଠାରୁ ପ୍ରବନ୍ଧଗୁଡ଼ିକ ସଂଗ୍ରହ କରି ଅତି ଉଚ୍ଚମାନର ପଚିଶଗୋଟି ପ୍ରବନ୍ଧକୁ ସଂକଳନ କରି ପାଣ୍ଡୁଲିପି ଆକାରରେ

ଏକାଡେମୀକୁ ପ୍ରଦାନ କରିଥିଲେ । ସେଥିପାଇଁ ତନ୍ମୟ ସାହୁଙ୍କ ନିକଟରେ ଏକାଡେମୀ କୃତଜ୍ଞତା ସ୍ୱୀକାର କରୁଛି ।

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠାର ପଞ୍ଚାଶବର୍ଷ ପୂର୍ତ୍ତି ଉପଲକ୍ଷେ ପାଳନ କରାଯାଇଥିବା ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସରରେ ଏହି 'ପରମାନନ୍ଦ ଆଗ୍ରୱାଲଙ୍କ ପ୍ରବନ୍ଧ ରଚନାବଳୀ' ପୁସ୍ତକଟି ଆତ୍ମପ୍ରକାଶ କରୁଥିବାରୁ ବିଶିଷ୍ଟ ପ୍ରାବନ୍ଧିକ ପରମାନନ୍ଦ ଆଗ୍ରୱାଲଙ୍କ ପ୍ରତି ଏକାଡେମୀ କୃତଜ୍ଞ ହୋଇ ରହିବ । ଏହିଭଳି ଜଣେ ପ୍ରଖ୍ୟାତ ପ୍ରାଜ୍ଞପୁରୁଷଙ୍କ ରଚନା ଏକାଡେମୀର ପ୍ରକାଶନ ବିଭାଗ ସହିତ ସଂଶ୍ଳିଷ୍ଟ ହୋଇଥିବାରୁ ଏହା ଏକାଡେମୀର ମାନ ଓ ଗୌରବ ବୃଦ୍ଧିରେ ଯଥେଷ୍ଟ ସହାୟକ ହେବ ବୋଲି ମୁଁ ମନେ କରୁଅଛି ।

ପୁସ୍ତକଟି ଓଡ଼ିଆ ପାଠକ, ଗବେଷକ ତଥା ବିଦ୍ୱାନ ମଣ୍ଡଳୀଙ୍କ ଦ୍ୱାରା ଆଦର ଲାଭ କଲେ ଏକାଡେମୀର ଶ୍ରମ ସାର୍ଥକ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ହରପ୍ରସାଦ ପରିଚ୍ଛା ପଟ୍ଟନାୟକ
ସଚିବ

ରଥଯାତ୍ରା
୨୦୦୮

# ପରମାନନ୍ଦ ପରିଚୟ

*''ମାଟି ତଳେ ହଜିଥିଲା ଯେ ଅତୀତ, ଯେ ଗୌରବ ଆଶା*
*ତୁମେ ତାରେ ଦେଇଅଛ ଅମୃତର ଆଶୀର୍ବାଦ, ସଂଜୀବନୀ ଭାଷା ।''*

-- କୁଞ୍ଜବିହାରୀ ଦାଶ

ପରମାନନ୍ଦ ଆଚାର୍ଯ୍ୟ (୧୮୯୩-୧୯୭୧) ଓଡ଼ିଶାର ଜଣେ କୃତବିଦ୍ୟ ଗବେଷକ ଥିଲେ । ଅମର୍ଦା ମାଇନର ସ୍କୁଲ, ବାରିପଦା ହାଇସ୍କୁଲ, ରେଭେନସା କଲେଜ, କଲିକତାର ସେଣ୍ଟ ଜେଭିୟର୍ସ ଆଦି ଶିକ୍ଷା ଅନୁଷ୍ଠାନରେ ସେ ଅଧ୍ୟୟନ କରିଥିଲେ । ୧୯୨୩ ମସିହାରେ ଜାପାନରେ ଭୂମିକମ୍ପ ହେବା ଓ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ସିଲଂରେ ଥିବାରୁ ପରମାନନ୍ଦ ଅଧ୍ୟୟନ ନିମନ୍ତେ ଜାପାନକୁ ଯାଇପାରି ନଥିଲେ । କିନ୍ତୁ ୧୯୩୪ ମସିହାରେ ମୟୂରଭଞ୍ଜ, ଯୁବରାଜଙ୍କ ସଙ୍ଗେ ସେ ବିଲାତ ଯାତ୍ରା କରିଥିଲେ । ସେଠାରେ ରଏଲ୍ ଏସିଆଟିକ୍ ସୋସାଇଇଟିକୁ ଦେଖିବାର ସୁଯୋଗ ପାଇଥିଲେ । ସେହିଠାରେ ହିଁ ପରମାନନ୍ଦ ଚନ୍ଦ୍ରିକା ଦେବୀଙ୍କ ଶିଳାଲିପିଟି ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ପରବର୍ତ୍ତୀ କାଳକୁ ସେ ଉକ୍ତ ଶିଳାଲିପିଟିକୁ ଅନନ୍ତ ବାସୁଦେବଙ୍କ ମନ୍ଦିରର ଶିଳାଲିପି ବୋଲି ଯୁକ୍ତିର ସହ ପ୍ରମାଣ କରିପାରିଲେ । ଏହିପରି ଭାବେ ସେ ନାନା ଦିଗରେ ଅଧ୍ୟୟନ ଓ ଗବେଷଣା କରି ସହସ୍ରାଧିକ ପ୍ରବନ୍ଧ ପ୍ରସ୍ତୁତ କରିପାରିଥିଲେ । ପ୍ରତ୍ନତତ୍ତ୍ୱ, ଇତିହାସ ଓ ସାହିତ୍ୟ ତାଙ୍କ ଗବେଷଣାର ଆଧାର ଥିଲା । ଗବେଷଣାଲବ୍ଧ ଜ୍ଞାନ ଦ୍ୱାରା ସେ ବହୁ ଅନାଲୋଚିତ ଦିଗ ଉପରେ ଆଲୋକପାତ କରିବା ସହ ଅତୀତ ମଧ୍ୟରେ ଲୁଚି ରହିଥିବା ବହୁ ସତ୍ୟକୁ ଉଦ୍‌ଘାଟନ କରିଥିଲେ। ତାଙ୍କର ଗୋଟିଏ ବ୍ୟକ୍ତିଗତ ଲାଇବ୍ରେରୀ ଥିଲା  ସେଠାରେ ସ୍କିଶ ବର୍ଷର ଉତ୍କଳ ସାହିତ୍ୟ ସହ ମୁକୁର, ସତ୍ୟବାଦୀ, ସହକାର, ନବଭାରତ ଏବଂ **Stories from Greek Tragedy** ଆଦି ଅନେକ ଦୁଷ୍ପ୍ରାପ୍ୟ ପୁସ୍ତକ ଥିଲା । ତାଙ୍କର ଗବେଷଣା ଦୃଷ୍ଟିଟି ଦ୍ୱାରା ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ ନଟବର ସାମନ୍ତରାୟ, କୁଞ୍ଜବିହାରୀ ଦାଶ ଓ ବଂଶୀଧର ମହାନ୍ତି ଆଦି ପ୍ରଭାବିତ ହୋଇଛନ୍ତି । ପରମାନନ୍ଦ ଆଚାର୍ଯ୍ୟ ରାଧାନାଥଙ୍କ ସାହିତ୍ୟର ପରମ ଭକ୍ତ ଥିଲେ । ବିଜ୍ଞାନର ଛାତ୍ର ଓ ଇତିହାସର ଗବେଷକ ପରମାନନ୍ଦ ପ୍ରକୃତରେ ୧୯୨୪ରୁ ୧୯୨୯ ମସିହା ମଧ୍ୟରେ ମାତ୍ର ପାଞ୍ଚ ବର୍ଷ ଓଡ଼ିଆ

ସାହିତ୍ୟକୁ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ସେତିକିରେ ସେ ରାଧାନାଥଙ୍କ ସୃଷ୍ଟିକୁ ନବମୂଲ୍ୟାୟନ କରିପାରିଲେ । ପରମାନନ୍ଦ ମୟୂରଭଞ୍ଜ ପ୍ରତ୍ନତତ୍ତ୍ୱ ବିଭାଗରେ ୧୯୨୪ ମସିହାରୁ ୧୯୪୯ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ମୟୂରଭଞ୍ଜ ଗଡ଼ଜାତ ଓଡ଼ିଶା ସହ ମିଶ୍ରଣ ହେବାପରେ ୧୯୪୯ ରେ ସେ ଓଡ଼ିଶା ମିଉଜିୟମର ମୁଖ୍ୟ ପଦାଧିକାରୀ ଭାବେ କାର୍ଯ୍ୟ କରିଥିଲେ । ଏହା ସହ ପରମାନନ୍ଦଙ୍କ ସୃଜନ ମଧ୍ୟରେ କବିତା, ଗଳ୍ପ, ପ୍ରବନ୍ଧ, ଅନୁବାଦ ଅନ୍ତର୍ଭୁକ୍ତ ।

ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ସ୍ୱାଧୀନତା ଉତ୍ତରକାଳକୁ କିମ୍ବଦନ୍ତୀ, ଇତିହାସ ଓ ପ୍ରତ୍ନତତ୍ତ୍ୱକୁ ନେଇ କେତେକ ଉପାଦେୟ ପ୍ରବନ୍ଧ ରଚନା କରିଥିଲେ । ପ୍ରବନ୍ଧଗୁଡ଼ିକ ମୋଟ ଉପରେ ବସ୍ତୁନିଷ୍ଠ ବା ତଥ୍ୟମୂଳକ (Informative) ଓ ଯୁକ୍ତିମୂଳକ (Argumentive) । ଏ ସମସ୍ତ ପ୍ରବନ୍ଧ ନାନା ବିଷୟକେନ୍ଦ୍ରିକ ହେବା ସହ ଓଡ଼ିଶାର ପୁରାତତ୍ତ୍ୱକୁ ପ୍ରଥମ କରି ସର୍ବଭାରତୀୟ ସ୍ତରରେ ପରିଚିତ କରିବାରେ ସହାୟକ ହୋଇଥିଲା । ତାଙ୍କର ପ୍ରକାଶନ ଶୈଳୀରେ ଅନୁସନ୍ଧିତ୍ସା ମନୋବୃତ୍ତି ସହିତ କଳାପାଟବର ଅଦ୍ଭୁତ ସମନ୍ୱୟ ଦେଖିବାକୁ ମିଳେ । ତାଙ୍କରି ବିଷୟରେ କନିଷ୍ଠ ପ୍ରତ୍ନତତ୍ତ୍ୱବିତ୍ ପଦ୍ମଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହନ୍ତି, "ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟ ଓଡ଼ିଶାର ପ୍ରଥମ ପ୍ରତ୍ନତତ୍ତ୍ୱବିତ୍ ଥିଲେ । ଯେତେବେଳେ ଓଡ଼ିଶାରେ ଶିକ୍ଷିତ ସଂଖ୍ୟା ମୁଷ୍ଟିମେୟ ଥିଲେ, ସେତେବେଳେ ସେ ବି.ଏସ୍.ସି. ପାଶ୍ କରିଥିବାରୁ ତାଙ୍କୁ ଗୋଟିଏ ଭଲ ଚାକିରି ମିଳିବାର ପଥ ସୁଗମ ଥିଲା । ମାତ୍ର ସେ ଅର୍ଥର ସୁଗମ ପଥ ଛାଡ଼ି ପାଣ୍ଡିତ୍ୟର ଦୁର୍ଗମ ପଥକୁ ବରଣ କରିଥିଲେ । ଅର୍ଦ୍ଧଶତାବ୍ଦୀ ବ୍ୟାପୀ ତାଙ୍କର ସାଧନା ଫଳରେ ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱର ପ୍ରଭୂତ ବିକାଶ ଘଟିଥିଲା । ତାଙ୍କରି ପ୍ରଚେଷ୍ଟାରେ ଓଡ଼ିଶା ମିଉଜିୟମ୍‌ରେ ରିସର୍ଚ୍ଚ ସେକ୍‌ସନ ବା ଗବେଷଣା ଶାଖା ସଂସ୍ଥାପିତ କରାଯାଇଥିଲା । ଏଥି ସହ ମିଉଜିୟମର ଗ୍ରନ୍ଥାଗାରର ପ୍ରଭୂତ ଉନ୍ନତି ଘଟିଥିଲା ଏବଂ ଗୋଟିଏ ତ୍ରୈମାସିକ ଇଂରାଜୀ ଗବେଷଣା ପତ୍ରିକା ପ୍ରକାଶ ପାଇଥିଲା । ସେ ଓଡ଼ିଆ ଓ ଇଂରାଜୀରେ ବହୁ ପ୍ରବନ୍ଧ ଲେଖି ଓଡ଼ିଶାର ଐତିହାସିକ ସାହିତ୍ୟକୁ ସମୃଦ୍ଧ କରିଥିଲେ । ମାତ୍ର ତାଙ୍କର ଚାକିରି କାର୍ଯ୍ୟକାଳ ମଧ୍ୟରେ ସେ ଦ୍ୱିତୀୟ ଶ୍ରେଣୀରୁ ପ୍ରଥମ ଶ୍ରେଣୀକୁ ଉନ୍ନୀତ ହୋଇ ନଥିଲେ । ତାଙ୍କର ବହୁ ସହକର୍ମୀ, ସହପାଠୀ ଓ ବନ୍ଧୁ ତାଙ୍କ କାର୍ଯ୍ୟକାଳ ମଧ୍ୟରେ କ୍ଷମତାସୀନ ଥିଲେ । କିନ୍ତୁ କେହି ସୁଦ୍ଧା ତାଙ୍କ ଆସନକୁ ଟିକିଏ ଟେକି ଦେଇ ନ ଥିଲେ ।" (ମୋ ସମୟର ଓଡ଼ିଶା, କିତାବମହଲ, ୧୯୭୮, ପୃ. ୧୩୪)

'ସତ୍ୟସନ୍ଧ ପରମାନନ୍ଦ ଆଚାର୍ଯ୍ୟ' ଶିରୋନାମାରେ ସମାଲୋଚକ ଗଗନେନ୍ଦ୍ରନାଥ ଦାସ ପରମାନନ୍ଦଙ୍କ ନିମନ୍ତେ ଏକ ଉତ୍କୃଷ୍ଟ ବିଶେଷଣକୁ ଯୋଗ କରିଥିବାର ଦୃଷ୍ଟିପଥାରୂଢ଼

ହୁଏ । ପ୍ରବନ୍ଧଟି ଓଡ଼ିଶାର ଗବେଷଣା ପତ୍ରିକା 'ଏଷଣା' (୩୯ଖଣ୍ଡ)ରେ ପ୍ରକାଶିତ । ସମାଲୋଚକ ଶ୍ରୀ ଦାସଙ୍କୁ ଯେଉଁମାନେ ଜାଣିଥିବେ, ସେ ସୁଧୀପାଠକମାନେ ନିଶ୍ଚିତ ଅବଗତ ହୋଇପାରିବେ ତାଙ୍କ ଆଲୋଚନାର ଗୁରୁତ୍ୱ ସଂପର୍କରେ । ଶ୍ରୀ ପରମାନନ୍ଦଙ୍କ ପ୍ରବନ୍ଧଗୁଡ଼ିକର ସେ ସତ୍ୟାସତ୍ୟର ଉପାଦାନ ପାଇଛନ୍ତି, ଯାହା ପୂର୍ବରୁ ଅନେକ ଧୂମାୟିତ ଧାରଣାକୁ ସ୍ୱଚ୍ଛ କରିଛି । ପ୍ରକୃତରେ ଓଡ଼ିଆରେ ଓଡ଼ିଶା ଇତିହାସକୁ ବୈଜ୍ଞାନିକ ପଦ୍ଧତିରେ ଚର୍ଚ୍ଚା କରିବାର ପ୍ରଥମ ସାର୍ଥକ ପଥପ୍ରଦର୍ଶକ ଭାବେ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଅବଦାନ ସ୍ୱୀକାର୍ଯ୍ୟ । ପୁଣି ସାହିତ୍ୟ, କଳା, ସ୍ଥାପତ୍ୟ, ଜ୍ୟୋତିଷଶାସ୍ତ୍ର, ମୁଦ୍ରାତତ୍ତ୍ୱ ବିଷୟକ ନାନା ଲୁକ୍‌କାୟିତ ଉପାଦାନକୁ ସେ ଖୋଜି ବାହାର କରିଛନ୍ତି । ସେଥିନିମନ୍ତେ ତାଙ୍କ ଅଧ୍ୟୟନ କୁଶଳତା, କଠୋର ପରିଶ୍ରମ ଓ ସ୍ୱଦୃଷ୍ଟିଭଙ୍ଗୀ ପ୍ରତ୍ୟକ୍ଷ କାର୍ଯ୍ୟ କରିଛି । ପରମାନନ୍ଦଙ୍କ ଅନେକ ପ୍ରବନ୍ଧ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସଂକଳିତ । ତେବେ ବିକ୍ଷିପ୍ତଭାବେ ଓଡ଼ିଆ ପତ୍ରିକାରେ ପ୍ରକାଶିତ ଆଉ କେତେକ ପ୍ରବନ୍ଧ ମୋ ଦୃଷ୍ଟିକୁ ଆସିଛି । ସେଥିମଧ୍ୟରୁ କେତୋଟି ତାଙ୍କ ମୃତ୍ୟୁପୂର୍ବରୁ ପ୍ରକାଶିତ ଓ କେତୋଟି ମୃତ୍ୟୁପରେ ପ୍ରକାଶିତ । ସମ୍ଭବତଃ ମୁଁ ଅସଙ୍କଳିତ ପ୍ରବନ୍ଧଗୁଡ଼ିକ ଉପରେ କୌତୂହଳୀ ହୋଇ ପରମାନନ୍ଦଙ୍କ ଉପରେ କିଛି କାର୍ଯ୍ୟ ଓ ସଂଗ୍ରହ କରିବାରେ ଆଗ୍ରହୀ ହେଲି ।

ଜଣେ ବ୍ୟକ୍ତି, ଯେ କି ମୟୂରଭଞ୍ଜ ଗଡ଼ଜାତ ରାଜାଙ୍କ ଆର୍ଥିକ ସହାୟତାରେ ଅଧ୍ୟୟନ କରି ନିଜର ଅଧ୍ୟବସାୟ ଓ ଗୁଣ ବଳରେ ସାରା ଭାରତରେ ନାଁ କମାଇବାର ସୁଯୋଗ ପାଇଥିଲେ, ତାଙ୍କ କର୍ମରେ ସନ୍ତୁଷ୍ଟ ହୋଇ ଭାରତ ସରକାର ତାଙ୍କୁ ୨୬.୧.୧୯୬୪ ମସିହାରେ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କଲେ । ତା' ସହ ସେ (Archaeological Survey of India-1961, The 149th Indian Science Congress-1962) (କଟକରେ ଅନୁଷ୍ଠିତ ହୋଇଥିଲା), International Conference ଆଦି ଦ୍ୱାରା ସମ୍ମାନିତ ତଥା ସମ୍ବର୍ଦ୍ଧିତ ହୋଇଛନ୍ତି । ବୃତ୍ତିରେ ପ୍ରତ୍ନତତ୍ତ୍ୱବିତ୍ ହୋଇ ରମାପ୍ରସାଦ ଚନ୍ଦ, ମଦନମୋହନ ଗାଙ୍ଗୁଲି, ନଗେନ୍ଦ୍ରନାଥ ବସୁ, ଭାନ୍‌ଜୋହନ ମେନନ ଆଦି ବିଖ୍ୟାତ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ସହ କାର୍ଯ୍ୟ କରିଛନ୍ତି । ସେ ମୌଳିକ ଭାବେ ଗଳ୍ପ, ପ୍ରବନ୍ଧ ଲେଖିଛନ୍ତି ଓ କେତେକ ଇଂରାଜୀ ଓ ବଙ୍ଗଳାରୁ ଅନୁବାଦ କରିଛନ୍ତି । ତାଙ୍କର ମୋଟ ଦୁଇଟି ଗଳ୍ପ କଟା ଘା'ରେ ଚୂନ (୧୮/୫, ଉତ୍କଳ ସାହିତ୍ୟ), ପୂଜା (୧୮/୯, ଉତ୍କଳ ସାହିତ୍ୟ) ପ୍ରକାଶ ପାଇଛି । ଅନୁବାଦଗୁଡ଼ିକ ହେଲା ମାଥ୍ୟୁ ଆରନଲ୍ଡଙ୍କ Shorab and Rustam, ଓଡ଼ିଶାରେ ଅନୁସନ୍ଧାନ (Exploration in Orissa,

by Rama Prasad Chand ), ସମ୍ବଲପୁର ଯାତ୍ରା (Mr. T.Motte), ପୂର୍ବଭାରତରେ ଅଥର୍ବବେଦର ଚର୍ଚ୍ଚା (ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟ) । ଉଭୟ ଇଂରାଜୀ ଓ ଓଡ଼ିଆ ପ୍ରବନ୍ଧଗୁଡ଼ିକ ସଂକଳନ ରୂପରେ ପ୍ରକାଶିତ । ସେଗୁଡ଼ିକ ହେଲା, (Studies in Orissan History, Archaeology and Archives (1969) ରାଧାନାଥଙ୍କ ଅନନ୍ୟ ପ୍ରତିଭା (୧୯୬୪), ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ (୧୯୬୯) । ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ-୨ୟ ଭାଗ (୧୯୭୨) । ଏଥିରେ ମୋଟ (୬୪+୪+୨୬+୨୪) ୧୧୮ଟି ପ୍ରବନ୍ଧ ସଂକଳିତ ।

ପରମାନନ୍ଦ ଆଚାର୍ଯ୍ୟ ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ପ୍ରତ୍ନତତ୍ତ୍ୱକୁ ବୃତ୍ତି କରିବା ସହ ସ୍ୱଆଗ୍ରହରୁ ସାହିତ୍ୟ ଚର୍ଚ୍ଚା କରିଛନ୍ତି । ସେ ଯେଉଁ ଦୁଇଟି ଗଳ୍ପ ରଚନା କରିଛନ୍ତି, ସେଥିରେ ତାଙ୍କର ଐତିହାସିକ ଦୃଷ୍ଟିଭଙ୍ଗୀଟି ତୀବ୍ର ଭାବରେ କାର୍ଯ୍ୟ କରିଛି । କଟା ଘା'ରେ ଚୂନ ବା ଭଞ୍ଜ ରାଜଧାନୀ ହରିହରପୁର ଗଡ଼ର ଦୁର୍ଗତି (୧୯୧୪) ଗଳ୍ପଟି ନଗେନ୍ଦ୍ରନାଥ ବସୁଙ୍କ ଐତିହାସିକ ବିବରଣ Archaeology Survey of Mayurbhanj (୧୯୧୨) ଅବଲମ୍ବନରେ ଲିଖିତ । ମୟୂରଭଞ୍ଜ ଗଡ଼ଜାତର ପୂର୍ବତନ ରାଜଧାନୀ ହରିହରପୁର ଗଡ଼ କିପରି ପ୍ରଥମେ ନବାବ ଆଲିବର୍ଦ୍ଦି ଖାଁ ଓ ପରବର୍ତ୍ତୀକାଳରେ ମରହଟ୍ଟାଙ୍କ ଆକ୍ରମଣରେ ଧ୍ୱସ୍ତବିଧ୍ୱସ୍ତ ହୋଇଥିଲା, ତାହା ଗଳ୍ପାକାରରେ ତଥା ନାଟକୀୟ ଭଙ୍ଗୀରେ ଉପସ୍ଥାପିତ । ତେବେ ଛାତ୍ର-ଗାଳ୍ପିକ (ବୟସ ୨୧ ବା ୨୨) ଙ୍କ ଯଦିଓ କେତେକ ଐତିହାସିକ ଭ୍ରମ ରହିଯିବାର ଲକ୍ଷ୍ୟ କରାଯାଏ । ଗଳ୍ପଟିର ପୃଷ୍ଠଭୂମିରେ ଯେଉଁ ଘଟଣାଟି ଘଟିଥିଲା, ସେଥିରୁ ଜଣାଯାଏ ବଙ୍ଗ ନବାବ ଆଲିବର୍ଦ୍ଦି ଖାଁଙ୍କୁ ସାହାଯ୍ୟ ପରିବର୍ତ୍ତେ ଯୁଦ୍ଧ ଆହ୍ୱାନର ପତ୍ର ପ୍ରେରଣ କରିଥିଲେ ତତ୍‌କାଳୀନ ଭଞ୍ଜବଂଶର ମହାରାଜା ଚକ୍ରଧର ଭଞ୍ଜ । ଫଳରେ ନବାବଙ୍କ ଆକ୍ରମଣରେ ରାଜଧାନୀ ହରିହରପୁର ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ପରବର୍ତ୍ତୀ କାଳରେ ମରହଟ୍ଟାମାନେ ମଧ୍ୟ ବାରମ୍ବାର ରାଜ୍ୟକୁ ଆକ୍ରମଣ କରିଥିଲେ । ରାଜା ଆଉ ହରିହରପୁର ଗଡ଼କୁ ନ ଫେରି ବ୍ରାହ୍ମଣଘାଟୀର ରାଜଧାନୀ ରାଇରଙ୍ଗପୁରରେ ବାସ କଲେ । ହରିହରପୁର ରାଜପ୍ରାସାଦ ଭାଙ୍ଗି ଧୂଳିସାତ୍ ହେଲା । ସଂପ୍ରତି ସେଠାରେ ଗୋଟେ ଗ୍ରାମ ଗଢ଼ି ଉଠିଛି । ଏଥିରେ ମୟୂରଭଞ୍ଜ ଗଡ଼ଜାତର ଅତୀତ ଦୀପ୍ତିମନ୍ତ ହୋଇଛି ମାତ୍ର । ପରମାନନ୍ଦଙ୍କ ଦ୍ୱିତୀୟ ଗଳ୍ପ 'ପୂଜା'ର ବିଷୟବସ୍ତୁ ଅତି ସଂକ୍ଷିପ୍ତ । ଗୋଟେ ପରିତ୍ୟକ୍ତ ମନ୍ଦିରରେ ଜଣେ ସନ୍ନ୍ୟାସୀ ଗୋପୀଭାବ ଓ ଗାନରେ ମଜ୍ଜିଯାଇ ଠାକୁର ସେବା ମଧ୍ୟ ଭୁଲି ଯାଇଛନ୍ତି । ପରେ ଠାକୁର ପୂଜାରେ ଅବହେଳାଜନିତ ପଶ୍ଚାତ୍ତାପରେ ସେ ମନ୍ଦିର

ଛାଡ଼ି ଅନ୍ୟଥା ସ୍ରୁଲିଯାଇଛନ୍ତି । ମନ୍ଦିରଟି ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଛି । କଥାଟି ବ୍ୟତୀତ ଗଳ୍ପକଳା ସୃଷ୍ଟିଟି ମଧ୍ୟରେ ପ୍ରାୟ ନାହିଁ । ପୂର୍ବରୁ କହିଛି ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଏକାଧିକ ପ୍ରବନ୍ଧ ମୋ ହସ୍ତଗତ ହୋଇଛି । ସେଗୁଡ଼ିକ ବିଷୟ-ବିଭାଗ ଦୃଷ୍ଟିରୁ ମଧ୍ୟ ଇତିହାସ, ସ୍ଥାପତ୍ୟ, ଜ୍ୟୋତିଷବିଦ୍ୟା, ଧର୍ମ ଓ ସାହିତ୍ୟ ଅନ୍ତର୍ଗତ । ସାହିତ୍ୟବିଷୟକ ପ୍ରବନ୍ଧ ମଧ୍ୟରେ ମାଦଳାପାଞ୍ଜି ପାଣ୍ଡୁଲିପିର ଗବେଷଣା, ଐତିହାସିକ ପ୍ରତି ଔପନ୍ୟାସିକଙ୍କ ଆକ୍ଷେପ, କିମ୍ବଦନ୍ତୀ ଓ ମେହେର ସାହିତ୍ୟ, ଏକାବଳୀ ଓ ସାହିତ୍ୟ ଦର୍ପଣର ସମୟ ନିରୂପଣ ଇତ୍ୟାଦି ମୁଖ୍ୟ ।

'କିମ୍ବଦନ୍ତୀ ଓ ମେହେର ସାହିତ୍ୟ' ପ୍ରବନ୍ଧରେ ଶ୍ରୀ ଆଚାର୍ଯ୍ୟ ଉତ୍କଳର କିମ୍ବଦନ୍ତୀ ଆଧାରିତ ଗଙ୍ଗାଧର ମେହେରଙ୍କ କୃତିଗୁଡ଼ିକ ଉପରେ ଆଲୋକପାତ କରିଛନ୍ତି । ମେହେର ତାଙ୍କ ସାହିତ୍ୟରେ ପୁରୀ ମନ୍ଦିର, କୋଣାର୍କ ମନ୍ଦିର ଓ ଲିଙ୍ଗରାଜ ମନ୍ଦିରର ନିର୍ମାଣକର୍ତ୍ତାଙ୍କ ପ୍ରସଙ୍ଗ କଥା କହିଛନ୍ତି । ପୁଣି ଚୌହାନବଂଶୀୟ ରାଜା ରମାଇଦେବ ଓ ବଳରାମଦେବଙ୍କ ବିଷୟ କାବ୍ୟରେ ବର୍ଣ୍ଣିତ ଅଛି । ପରମାନନ୍ଦ ନିଜର ଐତିହାସିକ ଦୃଷ୍ଟିକୋଣରୁ ସେ ସବୁକୁ ଉକ୍ତ ପ୍ରବନ୍ଧରେ ଆଲୋଚନା କରିବା ସହ ସୀତାନାଥ ରାୟ, ପ୍ୟାରିମୋହନ ଆଚାର୍ଯ୍ୟ, ରାଧାନାଥ ରାୟ, ରାଜେନ୍ଦ୍ରଲାଲ ମିତ୍ର ଓ ଏଣ୍ଟିକ୍ୱିଟିଜ୍ ଅଫ୍ ଓଡ଼ିଶା ଆଦି ସ୍ରଷ୍ଟା ଓ ସୃଷ୍ଟିରେ ଯେଉଁ ଇତିହାସ କିମ୍ବଦନ୍ତୀ ରହିଛି, ତାହାକୁ ମଧ୍ୟ ଉକ୍ତ ପ୍ରବନ୍ଧରେ ଯତ୍‌ସାମାନ୍ୟ ପ୍ରକାଶ କରିଛନ୍ତି । 'ଐତିହାସିକ ପ୍ରତି ଔପନ୍ୟାସିକଙ୍କ ଆକ୍ଷେପ' ପ୍ରବନ୍ଧ ପ୍ରକୃତରେ ଇତିହାସ-ସତ୍ୟ ଓ ସାହିତ୍ୟ-ସତ୍ୟର କନ୍ଦଳରୁ ସୃଷ୍ଟ । କାରଣ ଓଡ଼ିଶାର ଲବ୍‌ଧପ୍ରତିଷ୍ଠ ଔପନ୍ୟାସିକ ଶ୍ରୀ ସୁରେନ୍ଦ୍ର ମହାନ୍ତି ନିଜର ଐତିହାସିକ ଉପନ୍ୟାସ 'ନୀଳଶୈଳ'ରେ କେତେକ ଐତିହାସିକ ତଥ୍ୟକୁ ପ୍ରମାଦ ଭାବେ ବର୍ଣ୍ଣନା କରିଛନ୍ତି । ସେହି ଭ୍ରମସମୂହକୁ ଇତିହାସର ସତ୍ୟରେ ପରିଣତ କରିବାର ଚେଷ୍ଟା କରିଛନ୍ତି ଶ୍ରୀଯୁକ୍ତ ଆଚାର୍ଯ୍ୟ । ତାଙ୍କ ମତରେ "ଶ୍ରୀ ସୁରେନ୍ଦ୍ର ମହାନ୍ତି ମୁକୁନ୍ଦଦେବଙ୍କ ପୁଅମାନଙ୍କୁ ଖୋର୍ଦ୍ଧା ରାଜ୍ୟର ଅଂଶୀଦାର ଥିବାର କିପରି ଯୁକ୍ତି ବାହାର କରିଛନ୍ତି, ତାହାର ପ୍ରମାଣ ତାଙ୍କ ପାଖରେ ଥାଇପାରେ, କିନ୍ତୁ ପ୍ରାଚୀନ ବା ଆଧୁନିକ ଐତିହାସିକଙ୍କ ପାଖରେ ନାହିଁ ।" (ଝଙ୍କାର, ୨୩/୨, ପୃ.୨୦୨) ପରମାନନ୍ଦ ପୁଣି ନୀଳଶୈଳ ଉପନ୍ୟାସର ସମାପ୍ତିରେ ଓଡ଼ିଶାର ଠାକୁର ଜଗନ୍ନାଥଙ୍କୁ ଚିଲିକାକୂଳରେ ପଡ଼ି ରହିବାକୁ ଗ୍ରହଣ କରିପାରିନାହାନ୍ତି । କାରଣ ମହମ୍ମଦ ତକୀ ଖାଁଙ୍କର ମୃତ୍ୟୁ ପରେ ମୁର୍ଶିଦ କୁଲି ଖାଁ ଦ୍ୱିତୀୟ ଓଡ଼ିଶାର ନାଏବ ନଜିମ୍ ନିଯୁକ୍ତ ହେଲେ । ସେ ସୁଶାସକ ଥିବାରୁ ପୁରୀରେ ଯାତ୍ରୀକରର ପୁନଃଉଦ୍ଧାର ପାଇଁ ଖୋର୍ଦ୍ଧା ରାଜାଙ୍କୁ ସନ୍ତୁଷ୍ଟ କରି ଜଗନ୍ନାଥ ମୂର୍ତ୍ତିକୁ ପୁରୀ

ଫେରାଇ ଆଣିବାର ଯତ୍ନ କରିଥିଲେ । ସୁରେନ୍ଦ୍ରଙ୍କ ଐତିହାସିକ ପ୍ରମାଦକୁ ଯୁକ୍ତିର ସହ ପ୍ରମାଣ ନିମନ୍ତେ ପରମାନନ୍ଦ ଆକବରନାମା, ମଘଦାନ-ଇ-ଆଫଗାନ, ମାଦଳାପାଞ୍ଜି ଓ କେତେକ ତମ୍ବାପଟା ସନନ୍ଦ ସହ (History of Bengal-Vol. II, states as follows on Murshid Quli Khan, p.428)ର ସହାୟତା ନେଇଛନ୍ତି । 'ଏକାବଳୀ' ଓ 'ସାହିତ୍ୟଦର୍ପଣ' ଗ୍ରନ୍ଥ ଦୁଇଟି ଓଡ଼ିଶାର ଗଙ୍ଗବଂଶୀ ରାଜାମାନଙ୍କ ରାଜତ୍ୱକାଳ ୧୩୩୦ ଖ୍ରୀ:ଠାରୁ ୧୪୩୦ ଖ୍ରୀ: ମଧ୍ୟରେ ରଚିତ ହୋଇଥିଲା । ତେଣୁ ସଠିକ୍ ସମୟ ନିର୍ଣ୍ଣୟ ପାଇଁ ଷ୍ଟାର୍ଲିଂ, ହଣ୍ଟର, Journal of the Asiatic Society of Bengal, History of Sanskrit Poetics କୁ ସମ୍ମୁଖରେ ରଖି ପରମାନନ୍ଦ ଏକାବଳୀ ଓ ସାହିତ୍ୟଦର୍ପଣର ସମୟ ନିରୂପଣ ପ୍ରବନ୍ଧରେ କୃତି ଦୁଇଟିର ସମୟ ନିରୂପଣ କରିଛନ୍ତି । ନରସିଂହଦେବ ୩ୟ (୧୩୨୭-୧୩୫୨) ଙ୍କ ସମୟରେ ବିଦ୍ୟାଧର କୃତ 'ଏକାବଳୀ' ଓ ବିଶ୍ୱନାଥ କବିରାଜ କୃତ 'ସାହିତ୍ୟଦର୍ପଣ' ୧୫ଶ ଶତକରେ ପ୍ରଥମ ପାଦରେ ରଚିତ ହୋଇଥିବାର ପ୍ରମାଣ ସେ କରିଛନ୍ତି ।

ସେହିପରି ଶ୍ରୀଧର ସ୍ୱାମୀ ଓ ବଳଦେବ ବିଦ୍ୟାଭୂଷଣ ଭାରତବିଦିତ ଦୁଇଜଣ ଓଡ଼ିଆ ବୈଷ୍ଣବ ଭାଷ୍ୟକାର । ଯଥାକ୍ରମେ ଭାଗବତ ଭାବାର୍ଥ ଦୀପିକା ଓ ଗୋବିନ୍ଦ ଭାଷ୍ୟର ସେ ଦୁହେଁ ଲେଖକ । ଶ୍ରୀଧର ସ୍ୱାମୀ ବାଲେଶ୍ୱର ଜିଲ୍ଲାର ମରାଇ ଗାଁଠାରେ ଓ ବଳଦେବ ବିଦ୍ୟାଭୂଷଣ ରେମୁଣାରେ ଜନ୍ମଗ୍ରହଣ କରିଥିଲେ । ମରାଇ ଗ୍ରାମର ଅଦୂରବର୍ତ୍ତୀ ଗ୍ରାମଗୁଡ଼ିକରେ ବହୁ ଅଥର୍ବବେଦୀୟ ବ୍ରାହ୍ମଣମାନଙ୍କ ବସତି ରହିଛି । ଏସବୁ ବ୍ରାହ୍ମଣ କେବଳ ଅଥର୍ବବେଦୀୟ ପୈପଲାଦ ଶାଖାଭୁକ୍ତ । ପୈପଲାଦ ଶାଖାରୁ ଗୋପାଳତାପିନୀ, ଶ୍ରୀକୃଷ୍ଣ ତାପିନୀ ସବୁ ଲିଖିତ । ଓଡ଼ିଶାର ସମସ୍ତ ବେଦର ବ୍ରାହ୍ମଣମାନେ ବିବାହ ଓ ବ୍ରତସଭାରେ ଯେଉଁସବୁ ବେଦମନ୍ତ୍ର ପାଠ କରନ୍ତି, ସେ ସବୁ ତାପିନୀ ଅନ୍ତର୍ଭୁକ୍ତ ବୋଲି ପରମାନନ୍ଦ ଯୁକ୍ତି ବାଢ଼ନ୍ତି । ସେହିପରି ବଳଦେବ ବିଦ୍ୟାଭୂଷଣ ୨୪ଟି ଗ୍ରନ୍ଥର ଟୀକା କରିଅଛନ୍ତି । ସେ ସମସ୍ତ ଗ୍ରନ୍ଥ ବୈଷ୍ଣବ ସଂପ୍ରଦାୟର ଉପାଦେୟ ଗ୍ରନ୍ଥ । ଏହିପରି ଦୁଇ ଜଣ ଓଡ଼ିଶୀ ଭାଷ୍ୟକାରଙ୍କ କୃତିତ୍ୱକୁ ପରମାନନ୍ଦ ଉକ୍ତ ପ୍ରବନ୍ଧରେ ଆଲୋଚନା କରିଛନ୍ତି । ଏ ଅବସରରେ ସେ କିନ୍ତୁ, J.N.Farquharଙ୍କ Outline of the Religious Literature of India, ସୁନିଲ କୁମାର ଦେ'ଙ୍କ Early History of the Vaisnava faith and movement in Bengal, ବଙ୍ଗଳା ବିଶ୍ୱକୋଷ (ସଂପାଦକ- ନଗେନ୍ଦ୍ରନାଥ ବସୁ) ଓ ସୁନ୍ଦରାନନ୍ଦ ବିଦ୍ୟାଭୂଷଣଙ୍କ ଶ୍ରୀକ୍ଷେତ୍ର ଆଦି ପୁସ୍ତକ ଅଧ୍ୟୟନ କରି ଆଲୋଚ୍ୟ ଦୁଇ ଭାଷ୍ୟକାରଙ୍କ ଜୀବନୀସଂପର୍କିତ ତଥ୍ୟ ପାଇଥିବାର ସ୍ୱୀକାରୋକ୍ତି ବାଢ଼ିଛନ୍ତି ।

'ଓଡ଼ିଶାରେ ଇତିହାସ ଚର୍ଚ୍ଚାର ଅଗ୍ରଗତି' ପ୍ରବନ୍ଧରେ ପରମାନନ୍ଦ ଇତିହାସ ଚର୍ଚ୍ଚାର ଏକ ଧାରାବିବରଣୀ ଦେଇଛନ୍ତି । ଏଥିରେ ଷ୍ଟାର୍ଲିଂଙ୍କଠାରୁ ନବୀନ କୁମାର ସାହୁଙ୍କ ପର୍ଯ୍ୟନ୍ତ ଐତିହାସିକଙ୍କ ଇତିହାସ ଦୃଷ୍ଟିକୋଣକୁ ସଂକ୍ଷିପ୍ତରେ ଆଲୋଚନା କରାଯାଇଛି । ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ବ୍ରିଟିଶ୍ ରାଜତ୍ୱ ପ୍ରତିଷ୍ଠା ପାଇବା ପରେ ଓଡ଼ିଶାରେ ଇତିହାସ ସଂପର୍କରେ ଷ୍ଟାର୍ଲିଂ ସାହେବ ୧୮୨୨ରେ ପ୍ରଥମେ ଯେଉଁ ପୁସ୍ତକ ପ୍ରଣୟନ କରିଥିଲେ, ତାହା କିମ୍ବଦନ୍ତୀ ଓ ମାଦଳାପାଞ୍ଜି ସମ୍ବଳିତ । ମାତ୍ର ସର୍ବପ୍ରଥମ କରି କୌଣସି ପ୍ରତ୍ନତାତ୍ତ୍ୱିକ ଉପାଦାନକୁ ସମ୍ବଳ କରି କିଟୋ ସାହେବ ୧୯୩୮ ରେ ଏସିଆଟିକ୍ ସୋସାଇଟି ପତ୍ରିକାରେ କେତେକ ଐତିହାସିକ ପ୍ରବନ୍ଧ ପ୍ରକାଶ କରିଥିଲେ । ଏହିପରି ରାଜେନ୍ଦ୍ରଲାଲ ମିତ୍ରଙ୍କ 'ଏଣ୍ଟିକ୍ୱିଟିଜ୍ ଅଫ୍ ଓରିଶା', ହଣ୍ଟର ସାହେବଙ୍କ ଓଡ଼ିଶା ଇତିହାସ (୧ମ, ୨ୟ), ପ୍ୟାରିମୋହନଙ୍କ ଓଡ଼ିଶାର ଇତିହାସ, ମନମୋହନ ଚକ୍ରବର୍ତ୍ତୀ, ରାଖାଲ ଦାସ ବନ୍ଦୋପାଧ୍ୟାୟ, ହରେକୃଷ୍ଣ ମହତାବ, ପ୍ରଭାତ ମୁଖାର୍ଜୀ ଆଦିଙ୍କ ଇତିହାସକୁ ପ୍ରସଙ୍ଗକ୍ରମେ ଶ୍ରୀ ଆଚାର୍ଯ୍ୟ ସମୀକ୍ଷା କରିଛନ୍ତି । ସେ ପରିପ୍ରେକ୍ଷୀରେ ଉକ୍ତ ଐତିହାସିକଙ୍କ ଆଲୋଚନାଧାରା, ଉପାଦାନ ସଂଗ୍ରହ ଓ ଯୁକ୍ତିପଟୁତା ଉପରେ ଯତ୍‌ସାମାନ୍ୟ ଦୃଷ୍ଟି ଦେଇଛନ୍ତି । ମାତ୍ର ସମସ୍ତ ଐତିହାସିକ ଓଡ଼ିଶାର ଗଡ଼ଜାତଗୁଡ଼ିକୁ ଗୁରୁତ୍ୱ ନ ଦେବାର ସେ ଯୁକ୍ତି ଦିଅନ୍ତି । ତେଣୁ ସେ ଓଡ଼ିଶାର ଗଡ଼ଜାତଗୁଡ଼ିକର ଇତିହାସ ସଂପର୍କରେ ଆଲୋଚନା କରିବାରେ ଆଗ୍ରହୀ । ତାଙ୍କ ମତରେ, 'ଏ ପର୍ଯ୍ୟନ୍ତ ଓଡ଼ିଶାର ଇତିହାସଗୁଡ଼ିକରେ ଓଡ଼ିଶାର ଗଡ଼ଜାତ ଇତିହାସ ଭଲଭାବରେ ସ୍ଥାନ ପାଇନାହିଁ କହିଲେ ଚଳେ । ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ପ୍ରାଚୀନ ହେଲେ ମଧ୍ୟ ସେଗୁଡ଼ିକର ତଥ୍ୟ ଭଲଭାବରେ ସଂଗୃହୀତ ହୋଇନାହିଁ ।'' (ସମାଜ, ୩୯ତମ ଗୋପବନ୍ଧୁ ବାର୍ଷିକ ଦିବସ, ୧୯୬୭, ପୃ. ୨୦) ପ୍ରସଙ୍ଗତଃ ପରମାନନ୍ଦ ମୟୂରଭଞ୍ଜର ଭଞ୍ଜବଂଶ, ଢେଙ୍କାନାଳର ସ୍ତମ୍ଭବଂଶ ଓ ତିଗିରିଆର ତୁଙ୍ଗବଂଶ ଉପରେ ଆଲୋକପାତ କରିଛନ୍ତି । ଭାରତୀୟ ବିଦ୍ୟାଭବନ (ବୋମ୍ବାଇ) ଓ ଢେଙ୍କାନାଳ, ତିଗିରିଆର ପ୍ରତ୍ନ ଉପାଦାନ, ତମ୍ବାପଟାରୁ ସେଠାକାର ଇତିହାସ ରଚନାର ଉପାଦାନ ଆବିଷ୍କାରର ସମ୍ଭାବନା କରିଛନ୍ତି । ତା' ସହ ଓଡ଼ିଶାରେ ସାଂସ୍କୃତିକ ଇତିହାସର ଅନେକ ଉପାଦାନ ରହିବାର ପ୍ରମାଣ ସେ ପାଇଛନ୍ତି । ତାଙ୍କ ମତରେ ଓଡ଼ିଶାରେ ଇତିହାସ ଚର୍ଚ୍ଚାର ଭବିଷ୍ୟତ ଅତି ଉଜ୍ଜ୍ୱଳ ।

ପରମାନନ୍ଦ ଆଚାର୍ଯ୍ୟ ଯେ କେବଳ ପ୍ରବନ୍ଧ ରଚନାରେ ସିଦ୍ଧହସ୍ତ ଥିଲେ, ତାହା ନୁହେଁ, ସେ ଗୁରୁତ୍ୱ ଅନୁକ୍ରମେ କେତେକ ଅନୁବାଦ କର୍ମ କରିବାର ସୂଚନା ପୂର୍ବରୁ ଦିଆଯାଇଛି । ବଙ୍ଗଳାର ପଣ୍ଡିତ ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟ, 'ପୂର୍ବ ଭାରତରେ ଅଥର୍ବବେଦର

ଚର୍ଚ୍ଚା' ଶିରୋନାମାରେ ଏକ ପ୍ରବନ୍ଧ ଲେଖି ୧୩୬୭ ସାଲ (୧୯୬୧) ରେ ବଙ୍ଗଳା 'ସ୍ୱାଧୀନତା' ପତ୍ରିକାର ଶାରଦୀୟ ସଂଖ୍ୟାରେ ପ୍ରକାଶ କରିଥିଲେ । ଅନୁବାଦକ ପରମାନନ୍ଦ ମତ ଦିଅନ୍ତି -- ପ୍ରବନ୍ଧଟି 'ପୂର୍ବଭାରତର ଅଥର୍ବବେଦର ଚର୍ଚ୍ଚା' ଶିରୋନାମା ଥିଲେ ମଧ୍ୟ ଉତ୍କଳରେ ଅଥର୍ବବେଦର ଚର୍ଚ୍ଚାର ସଂପୂର୍ଣ୍ଣ ପ୍ରସଙ୍ଗ ରହିଛି । ତେଣୁ ସେ ଉତ୍କଳାନୁବାଦ ନିମନ୍ତେ ଆଗ୍ରହୀ ହୋଇଥିଲେ । ପ୍ରକାଶ ଥାଉ କି ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟ ବାଲେଶ୍ୱର ଜିଲ୍ଲାରୁ ୧୯୫୯ରେ କେତେଖଣ୍ଡ (ଅଥର୍ବବେଦୀୟ ପୈପଲାଦ ଶାଖାର) ପୋଥି ସଂଗ୍ରହ କରିଥିଲେ । ଏଥିରେ ଅଥର୍ବବେଦୀୟ ପୈପଲାଦ ଶାଖାର ମନ୍ତ୍ର ସବୁ ରହିଛି । ଦୁର୍ଗାମୋହନଙ୍କ ପୂର୍ବରୁ ଓଡ଼ିଶାରେ ପୈପଲାଦ ଶାଖାର ଅଥର୍ବବେଦୀୟ ମନ୍ତ୍ରପୋଥି ଥିବାର କାହାରିକୁ ଜଣା ନଥିଲା । ପରମାନନ୍ଦ ଆଚାର୍ଯ୍ୟ ଏସବୁ ଗୁରୁତ୍ୱକୁ ସମ୍ମୁଖରେ ରଖି କେବଳ ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟଙ୍କ ପ୍ରବନ୍ଧ କାହିଁକି ଟି.ମୋଟେ ସାହେବଙ୍କ ସମ୍ବଲପୁର ଯାତ୍ରା, ରମା ପ୍ରସାଦ ଚନ୍ଦଙ୍କ Exploration in Orissaକୁ ସେ ଓଡ଼ିଆରେ ଅନୁବାଦ କରିଥିଲେ ।

ଏହିପରି ପରମାନନ୍ଦ ଆଚାର୍ଯ୍ୟ ନିଜର ପରିଚୟ ନିର୍ମାଣ କରିବା ସହ ସ୍ୱ-ଅନ୍ତରର ଅଭିଳାଷଟିକୁ କିଞ୍ଚିତ୍ ତୃପ୍ତି ଦେଇଛନ୍ତି ତାହା, ପୁଣି ନିଜ ଗବେଷଣା ଓ ଲେଖା ମାଧ୍ୟମରେ ।

ସଂକଳକ

ଡଃ ଗଣେଶ ପ୍ରସାଦ ସାହୁ

# ସୂଚୀପତ୍ର





# କିମ୍ବଦନ୍ତୀ ଓ ଇତିହାସ -- କେଶରୀବଂଶ

ମାଦାଳପାଞ୍ଜିର ଅବଲମ୍ବନର ଲିଖିତ ଓଡ଼ିଶାର ଇତିହାସରେ କେଶରୀ ବଂଶର ରାଜତ୍ୱକାଳ ସାଢ଼େ ଛଅ ଶତ ବର୍ଷରୁ ଅଧିକ ଖ୍ରୀ:ଅ. ୪୭୪ - ଖ୍ରୀ.ଅ. ୧୧୩୨) । ଏହି ବଂଶରେ ଯଯାତି କେଶରୀଠାରୁ ସୁବର୍ଣ୍ଣକେଶରୀ ପର୍ଯ୍ୟନ୍ତ ୪୪ ଜଣ ନୃପତିଙ୍କ ନାମ ଅଛି (୧) । ପକ୍ଷାନ୍ତରେ ତାମ୍ରଫଳକାଦି ସମସାମୟିକ ବିବରଣରୁ ମାତ୍ର ତିନି ଜଣ କେଶରୀ ଉପାଧିଧାରୀ ନୃପତିଙ୍କ ନାମ ମିଳୁଅଛି । ଏହି ତିନିଜଣଙ୍କ ମଧ୍ୟରୁ ଶୁଭକର କେଶରୀ (୨) ୮ମ ଶତାବ୍ଦୀରେ ରାଜା ଥିଲେ । ଉଦ୍ୟୋତ କେଶରୀ (୩) ଓ କର୍ଣ୍ଣକେଶରୀଙ୍କର (୪) ସମୟ ଏକାଦଶ ଶତାବ୍ଦୀରେ ପଡ଼େ । ଶୁଭକର ଦେବ ଉତ୍ତର ତୋଷଳ ରାଜ୍ୟରେ ଭୂମିଦାନ କରିଥିଲେ । ଉଦ୍ୟୋତ କେଶରୀଙ୍କର ଚକ୍ରବର୍ତ୍ତୀସୂଚକ ବିରୁଦାବଳି ସହିତ 'ତ୍ରିକଳିଙ୍ଗାଧିପତି' ଉପାଧି ଥିଲା । କର୍ଣ୍ଣ କେଶରୀଙ୍କର କେବଳ 'ଉତ୍କଳେଶ' ଉପାଧି ଥିଲା । କେଶରୀ ବଂଶର ବଂଶାବଳୀରେ ଏହି ତିନିଜଣଙ୍କ ନାମ ମିଳେ ନାହିଁ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ, ମାଦଳାପାଞ୍ଜିର ଲିଖିତ ବିବରଣ ସତ୍ୟାଶ୍ରିତ ହେଲେ ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ ନୁହେଁ । ମାଦଳାପାଞ୍ଜିରେ ଥିବା ଗଙ୍ଗବଂଶର ବଂଶାବଳୀ (୫) ସହିତ ତାମ୍ରଫଳକାଦି ସମସାମୟିକ ଲିପିରୁ ସଂଗୃହୀତ ବଂଶାବଳୀର (୬) ବିଶେଷ ତାରତମ୍ୟ ଥିବାର ପ୍ରମାଣ ମିଳୁଥିବା ସ୍ଥଳେ ଗଙ୍ଗପୂର୍ବ କେଶରୀ ବଂଶର ବଂଶାବଳୀରେ ଓ ରାଜତ୍ୱକାଳରେ ଯେ ଅଧିକ ଭ୍ରମ ପ୍ରମାଦ ଥାଇପାରେ, ଏହା ସହଜରେ ଅନୁମେୟ ।

ମାଦଳାପାଞ୍ଜି ଅନୁସାରେ ଖ୍ରୀ. ୪୭୪-୬୨୩ ସମୟ ମଧ୍ୟରେ ଯଯାତିକେଶରୀ, ସୂର୍ଯ୍ୟକେଶରୀ ଓ ଅନନ୍ତକେଶରୀ ଓଡ଼ିଶାରେ ରାଜପଣ କରିଥିଲେ । ଉତ୍କଳଭାଷା ଅଞ୍ଚଳରୁ

---

(୧) Hunter's Orissa; pp 185-187 ଓ ପ୍ୟାରୀମୋହନ ଆଚାର୍ଯ୍ୟ - ଓଡ଼ିଶା ଇତିହାସ, (୧୯୨୫) ପରିଶିଷ୍ଟ ।

(୨) Epigraphia Indica - Vol. XV, pp. 1-8 and p. 363

(୩) Journal of the Asiatic Society of Bengal, June 1838, pp.557-562

(୪) ରାମଚରିତ-- Memories of the Asiatic Society of Bengal Vol. III, p. 30

(୫) Hunters Orissa, pp 187-189, ପ୍ୟାରୀମୋହନ ପରିଶିଷ୍ଟ -ଚ. 0/- -/2

(୬) Journal of the Asiatic Society of Bengal 1903, pp 97-147.

ଆବିଷ୍କୃତ ତାମ୍ରଶାସନଗୁଡ଼ିକ ମଧ୍ୟରୁ କେବଳ ଦିଓଟିର ସମୟ ୬୨୩ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ଅଟେ । ପ୍ରଥମଟି କଟକ ଜିଲ୍ଲାର ପଟିଆ କିଲାରୁ (୭) ଓ ଦ୍ୱିତୀୟଟି ଗଞ୍ଜାମ ଜିଲ୍ଲାରୁ (୮) ମିଳିଥିଲା । ମାଦଳାପାଞ୍ଜିର ପ୍ରମାଣ ଅନୁସାରେ କେଶରୀ ରାଜାମାନେ ରାଜ ଚକ୍ରବର୍ତ୍ତୀ ଥିବାରୁ ଏହି ଦିଓଟି ତମ୍ବାପଟାରେ ସେମାନଙ୍କ ନାମ ରହିବାର କଥା । ମାତ୍ର କୌଣସିଟିରେ କୌଣସି କେଶରୀ ରାଜାଙ୍କର ନାମ ନାହିଁ । ସାମନ୍ତାଧିପତି ମହରାଜା ଶିବରାଜଙ୍କର ପଟିଆ କିଲାରୁ ପ୍ରାପ୍ତ ୨୮୩ ଗୁପ୍ତାବ୍ଦର (ଖ୍ରୀ. ୬୦୨-୬୦୩) ତାମ୍ର ଶାସନରେ ଦେଖାଯାଏ ଯେ, ସେ 'ମାନ'ବଂଶୀୟ (କ) ଏକ ରାଜଚକ୍ରବର୍ତ୍ତୀଙ୍କର ସାମନ୍ତ ଥିଲେ ଓ 'ଦକ୍ଷିଣ ତୋଷଳ'ରେ ଭୂମିଦାନ କରିଥିଲେ । ତତ୍‌ପରେ ଗୁପ୍ତାବ୍ଦ ୩୦୦ର (ଖ୍ରୀ. ୬୧୯/୬୨୦) ଗଞ୍ଜାମର ତମ୍ବାପଟାରୁ ଦେଖାଯାଏ ଯେ, ଶୈଳୋଦ୍ଭବବଂଶୀୟ କୋଙ୍ଗୋଦମଣ୍ଡଳର ସାମନ୍ତରାଜ ମାଧବରାଜଦେବ କର୍ଣ୍ଣସୁବର୍ଣ୍ଣ ରାଜଚକ୍ରବର୍ତ୍ତୀ ଶଶାଙ୍କଙ୍କର ଅଧୀନ ଥିଲେ । କୋଙ୍ଗଦମଣ୍ଡଳ (ଆଧୁନିକ ପୁରୀ ଜିଲ୍ଲାର ଦକ୍ଷିଣାଂଶ ଘେନି ଗଞ୍ଜାମ ଅଞ୍ଚଳ) ଦକ୍ଷିଣ ତୋଷଳାନ୍ତର୍ଗତ ଥିଲା । ଏଣୁ ୭ମ ଶତାବ୍ଦୀର ପ୍ରଥମ ପାଦ ଓ ତତ୍‌ପୂର୍ବେ ଓଡ଼ିଶାରେ ଅନନ୍ତ କେଶରୀ ନାମରେ କେହି ରାଜଚକ୍ରବର୍ତ୍ତୀ ଥିବାର ବିଶ୍ୱାସ ହେଉନାହିଁ ।

ପୁଣି ଦେଖାଯାଏ ଯେ, ଇଉୟାନଚୋୟାଁ ଖ୍ରୀ. ୬୩୬-୬୩୯ ମଧ୍ୟରେ କର୍ଣ୍ଣସୁବର୍ଣ୍ଣ, ଉଡ୍ର କୋଙ୍ଗୋଦ ଓ କୋଶଳ ପ୍ରଭୃତି ଦେଶ ଭ୍ରମଣ କରିଥିଲେ । ଯେତେବେଳେ ସେ ଏହି ଦେଶଗୁଡ଼ିକର ରାଜାମାନଙ୍କର ନାମୋଲ୍ଲେଖ କରିନାହାନ୍ତି, ଏଥିରୁ ପ୍ରତିପନ୍ନ ହେଉଅଛି, ସେତେବେଳେ ହର୍ଷବର୍ଦ୍ଧନଙ୍କର ପ୍ରାଧାନ୍ୟ ଏହି ଦେଶଗୁଡ଼ିକରେ ସ୍ଥାପିତ ହୋଇଥିଲା । ଏହି ସମୟରେ ମଧ୍ୟ ଚ୍ଲୁଲୁକ୍ୟରାଜ ଦ୍ୱିତୀୟ ପୁଲକେଶୀଙ୍କ ସହିତ ହର୍ଷବର୍ଦ୍ଧନଙ୍କର ଏହି ଦେଶଗୁଡ଼ିକରେ ଯୁଦ୍ଧାଭିଯାନ ଘଟିଥିଲା । (୯) ଏହିସବୁ ପ୍ରମାଣ ଥାଉଁ ଥାଉଁ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ କେଶରୀ ବଂଶର ଅସ୍ତିତ୍ୱ ଅନ୍ୟ ନୂତନ ବିଶ୍ୱାସଯୋଗ୍ୟ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ସ୍ୱୀକାର କରି ହେଉନାହିଁ । ଏଣୁ ଏହା କହିଲେ ଅତ୍ୟୁକ୍ତି ହେବନାହିଁ ଯେ,

---

(୭) Epigraphia Indica Vol. IX, p.285-287.

(୮) Ibid Vol IX p.

(କ) ଏପିଗ୍ରାଫିଆ ଇଣ୍ଡିକାରେ ଦେଖାଯାଏ ଯେ 'ପ୍ରବର୍ତ୍ତମାନ-ମାନ-ବଂଶ-ରାଜ୍ୟକାଳେ' ପାଠ ଅଛି । ମାତ୍ର ପ୍ରବର୍ତ୍ତମାନୋନ୍ନ ବଂଶ ରାଜ୍ୟକାଳେ ପାଠ ସମ୍ଭବ ହେଲେ ଏହାର ଏକ ନୂତନ ଐତିହାସିକ ଅର୍ଥ ହୁଏ । କାରଣ କରବଂଶୀୟ ତମ୍ବାପଟାରେ 'ଉନ୍ମଟ' ବଂଶର ନାମୋଲ୍ଲେଖ ଅଛି ।

(୯) E.L.Vol. VI. p. 1-6

ଅଷ୍ଟମ ଶତାବ୍ଦୀର ପୂର୍ବେ ଉତ୍କଳଭୂମିରେ କେଶରୀ ବଂଶର ବିପୁଳ ରାଜତ୍ୱ ସ୍ଥାପିତ ହୋଇ ନଥିଲା । କେଶରୀବଂଶର କେହି ସାମନ୍ତରାଜ ଥାଇପାରନ୍ତି, ମାତ୍ର ସମ୍ରାଟ ନଥିଲେ ।

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗରେ କାମରୂପରାଜ ହର୍ଷଦେବ "ଗୌଡ଼ୋଡ୍ରାଦି କଳିଙ୍ଗ କୋଶଳପତି" ଥିଲେ ବୋଲି ଜୟଦେବଙ୍କର ଲିପିରେ (୧୦) ଉଲ୍ଲେଖ ଅଛି । ଏହି ସମୟର ପୂର୍ବରୁ ଓଡ଼ିଶାରେ ସାମନ୍ତରାଜ ଥିବାର ପ୍ରମାଣ ଶିବରାଜ ବା ମାଧବରାଜଙ୍କର ତମ୍ବାପଟାରୁ ମିଳୁଅଛି । ଏହା ବ୍ୟତୀତ ତିବ୍ବତଦେଶୀୟ ଲାମା ତାରନାଥଙ୍କ ବୌଦ୍ଧଧର୍ମର ଇତିହାସରେ ଦେଖାଯାଏ ଯେ, ସେହି ସମୟରେ ଓଡ଼ିଶା, ବଙ୍ଗ ଓ ପୂର୍ବ ଦେଶର ଅପରାପର ୫ଗୋଟି ରାଜ୍ୟରେ ପ୍ରତ୍ୟେକ କ୍ଷତ୍ରିୟ ବ୍ରାହ୍ମଣ ଓ ବୈଶ୍ୟ ନିଜ ନିଜର ଅଧିକାର ବଳରେ ରାଜା ହୋଇ ଉଠିଥିଲେ, କିନ୍ତୁ ସମଗ୍ର ଦେଶରେ କେହି ରାଜା ନଥିଲେ । (୧୧) ଓଡ଼ିଶାରେ ଏହି ସମୟର ସମସାମୟିକ ଓ ପରବର୍ତ୍ତୀ ଭଞ୍ଜ, ଶୁମ୍ଭ, ତୁଙ୍ଗ, କର ପ୍ରଭୃତି ବଂଶୀୟ ରାଜାମାନଙ୍କର ତାମ୍ରଫଳକାଦିରୁ ପୂର୍ବୋକ୍ତ ବିବରଣ ସତ୍ୟ ବୋଲି ଅନୁମିତ ହେଉଅଛି ।

ଉତ୍କଳର ପ୍ରାଚୀନ କୀର୍ତ୍ତି ମଧ୍ୟରେ କଟକ ଜିଲ୍ଲାର ଲଳିତଗିରି, ଉଦୟଗିରି ଓ ରତ୍ନଗିରିର ଶ୍ରେଷ୍ଠତା ଏ ପର୍ଯ୍ୟନ୍ତ ଆଲୋଚିତ ହୋଇନାହିଁ । ଏହି ସ୍ଥାନଗୁଡ଼ିକର ମୂର୍ତ୍ତି ସହିତ ଯାଜପୁରର ଅତିକାୟ (ପ୍ରାୟ ୨୧ ଫୁଟ) ଶାନ୍ତମାଧବ (ବୋଧିସତ୍ୱ) ମୂର୍ତ୍ତିର ଖୁବ୍ ସୌସାଦୃଶ୍ୟ ଅଛି । ଏହି କୀର୍ତ୍ତିର ସମୟ ଅବାଧରେ ୭ମ-୮ମ ଶତାବ୍ଦୀ ବୋଲି ବୋଲାଯାଇପାରେ ।

ଏହିସବୁ କୀର୍ତ୍ତି ଦେଖିଲେ ସେତେବେଳେ ଏ ଦେଶରେ ବୌଦ୍ଧଧର୍ମର ବହୁଳ ପ୍ରଗ୍ରର ଥିବାର ଅନୁମିତ ହୁଏ । କାରଣ ସର୍ବତ୍ର ବୌଦ୍ଧମୂର୍ତ୍ତି ଦେଖାଯାଏ । ଶିଳ୍ପର ପରାକାଷ୍ଠାରୁ ଲୋକମାନଙ୍କର ସଭ୍ୟତା ମଧ୍ୟ ଜଣାଯାଉଅଛି । ସୁଦୂର ଚୀନ୍ ଦେଶ ସହିତ ସେତେବେଳେ ଓଡ଼ିଆମାନଙ୍କର ସମ୍ବନ୍ଧ ଥିଲା । ଫରାସୀ ପ୍ରତ୍ନତତ୍ତ୍ୱବିତ୍ ଡାକ୍ତର ସିଲଭାନ ଲେଭି ମହୋଦୟ ଲେଖିଅଛନ୍ତି ଯେ, ଖ୍ରୀ. ୭୯୭ ଅବ୍ଦରେ ଉତ୍କଳର ଜଣେ (the fortunate, monarch, who does what is pure, lion)- ଶ୍ରୀ ରାଜା ଶୁଭକର କେଶରୀ ବା ସିଂହ - ଚୀନ୍ ସମ୍ରାଟଙ୍କ ନିକଟକୁ ଉପଢ଼ୌକନାଦି ସହ ପ୍ରତିନିଧି ପ୍ରେରଣ କରିଥିଲେ । (୧୨) କରବଂଶୀୟା

(୧୦) Indian Antiquary, Vol. IX, p. 178.

(୧୧) Orissa - Vol. IV. p. 365-366.

(୧୨) E.I.Vol XV.p.363-364

ତ୍ରିଭୁବନ ମହାଦେବୀଙ୍କ ତାମ୍ରଶାସନରେ (୧୩) (ସମ୍ବତ୍ ୧୬୦) ଦେଖାଯାଏ ଯେ, ତାଙ୍କ ପୂର୍ବରୁ ଉନ୍ମତ, କେଶରୀ ଗୟାଡ଼ାଦି ରାଜା ଥିଲେ ଓ ଦଣ୍ଡୀ ମହାଦେବୀଙ୍କର ତାମ୍ରଶାସନରେ (୧୪), (ସମ୍ବତ ୧୮୦ ଓ ୧୮୭) ଦେଖାଯାଏ ଯେ ତାଙ୍କ ପୂର୍ବରୁ ଉନ୍ମତ, ସିଂହ ଗୟାଡାଦି ରାଜା ଥିଲେ । ଏହା ଉପାଧି ବା ନାମ ଯାହାହେଉ, ଏଥିରେ କେଶରୀ ବା ସିଂହର ଉଲ୍ଲେଖ ଅଛି । ତମ୍ୱପଟାର ସଂବତକୁ ହର୍ଷାବ୍ଦ ଧରିଲେ ଲିପିତତ୍ତ୍ୱର ବିରୁଦ୍ଧରେ ସମୟ ନିରୂପିତ ହେଉଥିବାରୁ ଉକ୍ତ ସଂବତକୁ ଗଙ୍ଗାବ୍ଦ ନେବା ସଙ୍ଗତ । ଗଙ୍ଗାବ୍ଦ ମତରେ ଏହି ଶାସକଗୁଡ଼ିକର ସମୟ ଦଶମ ଶତାବ୍ଦୀ ବୋଲି ନିର୍ଦ୍ଦେଶ କରାଯାଇପାରେ ଏବଂ ଏହା ମଧ୍ୟ ସଙ୍ଗତ ହେବ ।

କର ବଂଶର ତମ୍ୱପଟାରୁ ପ୍ରାପ୍ତ 'କେଶରୀ ବା ସିଂହ' କଥା ଉପରେ ନିର୍ଭର କରି ଚୀନ ଇତିହାସରୁ ପ୍ରାପ୍ତ (lion) (କେଶରୀ ବା ସିଂହ) ପଦବୀଯୁକ୍ତ ରାଜାମାନଙ୍କୁ କରବଂଶୀୟ ବୋଲି ଧରାଯାଇପାରେ । କଟକ ଜିଲ୍ଲାର ନେଉଳପୁରରୁ ପ୍ରାପ୍ତ ଶୁଭକରଦେବଙ୍କର ତାମ୍ରଶାସନରେ (୧୫) ଓ ପୁରୀ ଜିଲ୍ଲାର ଚୌରାଶିରୁ ପ୍ରାପ୍ତ ଶିବକର ଦେବଙ୍କର ତାମ୍ରଶାସନରେ (୧୬) ଦେଖାଯାଏ ଯେ, ଦାତା ଓ ତାଙ୍କର ପୂର୍ବପୁରୁଷମାନଙ୍କର ପରମସୌଗତ ପରମତଥାଗତ ପ୍ରଭୃତି ବୌଦ୍ଧଧର୍ମ ଦୀକ୍ଷାସୂଚକ ବିରୁଦ ଥିଲା ଓ ଏଥିରୁ ଅନୁମାନ କରାଯାଇପାରେ ଯେ, ସେମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ତାମ୍ରଫଳକଗୁଡ଼ିକ ମଧ୍ୟ ଅଷ୍ଟମ ଶତାବ୍ଦୀର ଅଟେ । ଏହି ଶୁଭକର ଦେବ ଓ ଚୀନ୍ ଇତିହାସର ଶୁଭକର କେଶରୀ ଯେ ଏକ ବ୍ୟକ୍ତି, ଏକଥା ଡାକ୍ତର ସିଲଭାନ ଲେଭି ଗ୍ରହଣ କରିଅଛନ୍ତି । (୧୭) ଅଧ୍ୟାପକ ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟଙ୍କର ମଧ୍ୟ ଏହି ମତ । (୧୮)

ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କରବଂଶୀୟ ନୃପତିମାନେ ତୋଷଳ ରାଜ୍ୟର ରାଜଚକ୍ରବର୍ତ୍ତୀ ଥିଲେ । ଏହି ରାଜ୍ୟ ଦକ୍ଷିଣ ଓ ଉତ୍ତର ଭେଦରେ ଦୁଇଭାଗରେ ବିଭକ୍ତ ଥିଲା । ଦକ୍ଷିଣ ତୋଷଳରେ କଙ୍ଗୋଦ ମଣ୍ଡଳ ବର୍ତ୍ତମାନ ଥିବାରୁ ଏହା ପୁରୀ ଓ ଗଞ୍ଜାମ ଜିଲ୍ଲା ଅଞ୍ଚଳରେ

---

(୧୩) Journal of the Bihar & Orissa Research Society, Vol.II.pp. 419-427
(୧୪) Epigraphia Indica Vol. VI pp. 133-140, J.B.and O.R.S. Vol. V.pp. 564-581.
(୧୫) E.I..Vol. XV. p.1-8.
(୧୬) I.B.& O.R.S. Vol XIV p. 292-360
(୧୭) E.I.Vol. XV p. 363-364.
(୧୮) Modern Review, December 1928.

ନିର୍ଦ୍ଦେଶ କରାଯାଇପାରେ । ପଣ୍ଡିତ ବିନାୟକ ମିଶ୍ର କହନ୍ତି ଯେ, ଆଧୁନିକ ଗଞ୍ଜାମ କୋଙ୍ଗଦ ଶବ୍ଦରୁ ଅପଭ୍ରଷ୍ଟ । ଉତ୍ତର ତୋଷଳକୁ କଟକ ଜିଲ୍ଲାରେ ନିର୍ଦ୍ଦେଶ କରାଯାଇପାରେ ।

ଓଡ଼ିଶାର ଇତିହାସରେ ତୋଷଳ ରାଜ୍ୟର ନାମ ଲୋପ ପାଇଅଛି । ମାଦଳାପାଞ୍ଜି ମଧ୍ୟ ନୀରବ । ମାତ୍ର ତୋଷଳର ନାମ ବହୁ ପ୍ରାଚୀନ । ଅଶୋକଙ୍କର ଧଉଳିର ଅନୁଶାସନରେ ତୋଷଳି ବା ତୋଷଳର ଉଲ୍ଲେଖ ଅଛି । ଭରତଙ୍କ ନାଟ୍ୟଶାସ୍ତ୍ରରେ 'କୋଶଳାସ୍ତୋଷଳାଶ୍ଚୈବ କଳିଙ୍ଗା ଏବଂ ମୋଷଳା' (ଶ୍ଳୋ ୨୭, ଅ. ୧୩) ଥିବାର ଦେଖାଯାଏ । ତତ୍‌ପରେ ଟଲେମିର ଭୂଗୋଳରେ 'ତୋଷଳି' ଶବ୍ଦ ଅଛି । (୧୯) ଷଷ୍ଠ (୨୦) ଓ ଅଷ୍ଟମ (୨୧) ଶତାବ୍ଦୀର ତାମ୍ରଶାସନରେ 'ଦକ୍ଷିଣ ତୋଷଳ' ଓ 'ଉତ୍ତର ତୋଷଳ'ର ଉଲ୍ଲେଖ ଥିବାର ଦେଖାଯାଏ । ରାଜଶେଖର ଖ୍ରୀଷ୍ଟାବ୍ଦ ୮୮୦-୯୨୦ ପର୍ଯ୍ୟନ୍ତ ଜୀବିତ ଥିଲେ । ତାଙ୍କର କାବ୍ୟ ମୀମାଂସା (୨୨) ପୁସ୍ତକରେ ନିମ୍ନଲିଖିତ ବର୍ଣ୍ଣନା ଦେଖାଯାଏ :—

"ତନ୍ତ୍ର ବାରାଣସ୍ୟାଃ ପୁରତଃ ପୂର୍ବଦେଶଃ । ଯତ୍ରାଙ୍ଗ କଳିଙ୍ଗ କୋଶଳୋତ୍କଳ ମଗଧମୁଦ୍ଗର ବିଦେହ ନେପାଳ ପୁଣ୍ଡ୍ର ପ୍ରାଗ୍‌ଜ୍ୟୋତିଷ ତାମ୍ରଲିପ୍ତକ ମଲଦ ମଧ୍ୟ ମଲ୍ଲବର୍ତ୍ତକସୁହ୍ମବ୍ରହୋତ୍ତର ପ୍ରଭୃତୟୋ ଜନପଦାଃ ।"

ଏଠାରେ କୋଶଳ, ତୋଷଳ, ଉତ୍କଳ ଓ କଳିଙ୍ଗ ଏହି ଚାରୋଟି ଜନପଦର ପରସ୍ପର ଭୌଗୋଳିକ ନିକଟ ସମ୍ବନ୍ଧ ଥିବାର ଅନୁମାନ କରାଯାଏ । କଳିଙ୍ଗ ଗଞ୍ଜାମ ଜିଲ୍ଲା ଅଞ୍ଚଳରେ ଥିଲା, ତୋଷଳ ଓ କୋଶଳ ଲଗାଲଗି ହୋଇ ପୂର୍ବ ପଶ୍ଚିମ ବିସ୍ତୃତ ଥିଲା ବା ମଝିରେ ଖିଞ୍ଜାଳି ମଣ୍ଡଳ ଥାଇ ଉଭୟ ରାଜ୍ୟକୁ ପୃଥକ୍ ରଖିଥିଲା । କୋଙ୍ଗଦ ସଦୃଶ ଖିଞ୍ଜାଳି ତୋଷଳ ବା କୋଶଳ ଅନ୍ତର୍ଗତ ଥିଲା ବୋଲି କୌଣସି ପ୍ରମାଣ ମିଳିନାହିଁ । ତୋଷଳ-କୋଶଳର ଉତ୍ତରବର୍ତ୍ତୀ ଭୂଭାଗ ଉତ୍କଳ ନାମରେ ପରିଚିତ ଥିଲା । ବୋଧହୁଏ ତୋଷଳ ରାଜ୍ୟ ଉପକୂଳବର୍ତ୍ତୀ ସମତଳ ଭୂମିରେ ଓ କୋଶଳ ଗିରିମାଳାମଣ୍ଡିତ ସମ୍ବଲପୁର ଅଞ୍ଚଳରେ ବିସ୍ତୃତ ଥିଲା ।

ତମ୍ବପଟାର ପାଠରେ ଭୁଲ୍ ଥିବାରୁ ତୋଷଳ ଓ କୋଶଳ ଘେନି ଅନେକ ଭ୍ରମପୂର୍ଣ୍ଣ ଆଲୋଚନା ହୋଇଅଛି । ଦଣ୍ଡୀ ମହାଦେବୀଙ୍କର ଖଣ୍ଡିଏ ତମ୍ବପଟାର (୨୩) ପାଠରୁ

---

(୧୯) Ptolemy, Calcutta 1927, p. 230.
(୨୦) E.I.Vol IX. p. 287.
(୨୧) E.I.Vol. XV. p.3.
(୨୨) Gaikward Oriental Series No. 1. p. 93.
(୨୩) E.I.Vol VI, p. 141.

ଦେଖାଯାଏ ଯେ, ସେ 'ଦକ୍ଷିଣ କୋଶଳ' ରେ ଭୂମିଦାନ କରିଥିଲେ । ମାତ୍ର ତମ୍ବପଟାର ଗ୍ରୁପ ମିଳାଇ ଦେଖିବାରେ ଦେଖାଯାଇଅଛି ଯେ, ଅଧ୍ୟାପକ କିଲହର୍ଣ୍ଣଙ୍କ (Keelhorn) ପାଠରେ ପ୍ରକୃତ ଭ୍ରମ ଅଛି । ସେହିପରି ମହାଶିବ ଗୁପ୍ତ ଯଯାତିଙ୍କର ଖଣ୍ଡିଏ ତମ୍ବପଟାରେ (୨୪) ଦେଖାଯାଏ, ସେ ଦକ୍ଷିଣ ତୋଷଳରେ ଭୂମିଦାନ କରିଥିଲେ । ଏହିଠାରେ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ 'ଦକ୍ଷିଣ କୋଶଳ' ପାଠ କରିଥିଲେ । ତାମ୍ରଶାସନଟି ବିନୀତପୁର ଠାରୁ (ଆଧୁନିକ ବିନକା -- ସୋନପୁର ଷ୍ଟେଟ୍) ଦତ୍ତ ହୋଇଲା ଓ ଗ୍ରାମଗୁଡ଼ିକ ପାଟଣା ଓ ସୋନପୁର ରାଜ୍ୟରେ ଥିବାର କଥା ରାୟବାହାଦୂର ହୀରାଲାଲ କହିଅଛନ୍ତି (୨୫) । ଶ୍ରୀଯୁକ୍ତ ବିରୂପାକ୍ଷ କର ମହାଶୟ ଗ୍ରାମଗୁଡ଼ିକ କଟକ ଜିଲ୍ଲାରେ ଥିବାର କହିଅଛନ୍ତି (୨୬) । କରଙ୍କର ନିର୍ଦ୍ଦେଶ ଅପେକ୍ଷା ହୀରାଲାଲଙ୍କ ନିର୍ଦ୍ଦେଶ ଅଧିକ ବିଶ୍ୱାସଯୋଗ୍ୟ ବୋଲି ଜଣାଯାଏ ।

କରବଂଶ କିପରି ଓ କେବେ ଲୋପ ପାଇଥିଲା, ତାହା ସ୍ଥିର କରିବାର ଉପାୟ ନାହିଁ । କେଶରୀବଂଶ ଯେ କରବଂଶର ଶାଖା ନ ଥିଲା, ତାହା ମଧ୍ୟ କହି ହେଉନାହିଁ । ଦଶମ ଓ ଏକାଦଶ ଶତାବ୍ଦୀରେ କଳିଙ୍ଗ ତୋଷଳ କୋଶଳ ଉତ୍କଳର ଭୌଗୋଳିକ ପରିବର୍ତ୍ତନ କିପରି ଘଟିଥିଲା, ତାହା ମଧ୍ୟ ସ୍ପଷ୍ଟଭାବରେ ବୁଝିହୁଏ ନାହିଁ । ଏହି ସମୟରେ କେବଳ ଏହି ଅଞ୍ଚଳର ତିନୋଟି ରାଜବଂଶ ପ୍ରବଳ ଥିବାର ଦେଖାଯାଏ । କାହାର କିପରି ପ୍ରାଧାନ୍ୟ ଥିଲା, ତାହା ଜାଣି ହେଉନାହିଁ । କେବଳ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକର ରାଜଚକ୍ରବର୍ତ୍ତୀ ଜ୍ଞାପକ ବିରୁଦ ସହିତ "ତ୍ରିକଳିଙ୍ଗାଧିପତି" ବିରୁଦ ଦେଖାଯାଏ ।

୧ମ । କଳିଙ୍ଗ ନଗରର ଗଙ୍ଗବଂଶୀ ରାଜାମାନେ । ଏହି ବଂଶରେ 'ତ୍ରିକଳିଙ୍ଗାଧିପତି' ବିରୁଦ ବହୁବାର ପର୍ଯ୍ୟନ୍ତ ଚଳି ଆସିଥିଲା (୨୭) । ପରେ 'ତ୍ରିକଳିଙ୍ଗନାଥ' ଶବ୍ଦ ବ୍ୟବହୃତ ହୋଇଥିଲା (୨୮) ।

୨ୟ । ଯଯାତିନଗର ବା ବିନୀତପୁରର (ବିନକା) କୋମଳେଶ୍ୱର ସୋମବଂଶୀ ନୃପତିମାନେ । ଚେଦିରାଜ କର୍ଣ୍ଣଦେବ ମଧ୍ୟ 'ତ୍ରିକଳିଙ୍ଗାଧିପତି' ଉପାଧିରେ ଭୂଷିତ ଥିଲେ (୨୯) ।

---

(୨୪) Ibid Vol III, p.352.
(୨୫) Ibid Vol XI p. 198-201.
(୨୬) ଉତ୍କଳ ସାହିତ୍ୟ ୨୯ ଭାଗ, ପୃ.୪୯୧
(୨୭) E.I. Vol VI, p. 201
(୨୮) ସାହିତ୍ୟ ଦର୍ପଣ ୪ର୍ଥ ।
(୨୯) E.I.Vol, II, p. 298.

୩୨ । ଉଦ୍ୟୋତ କେଶରୀ । ଏ ମଧ୍ୟ ଚନ୍ଦ୍ରବଂଶାନ୍ତର୍ଗତ ଥିଲେ ।

"ତ୍ରିକଳିଙ୍ଗାଟବୀ" ବେଙ୍ଗୀ ଦେଶକୁ ଲାଗିଥିବା କଥା ଖଣ୍ଡିଏ ଶିଳାରୁ ମିଳେ (୩୦) ।

ଏହାହିଁ ତ୍ରିକଳିଙ୍ଗ ରାଜ୍ୟର ଭୌଗୋଳିକ ସତ୍ତାର ଏକମାତ୍ର ପ୍ରମାଣ । ଗୌଡ଼ରାଜ ଦେବପାଳ ଉତ୍କଳ ଅଧିକାର କରିଥିବା କଥା ବାଦଲ ସ୍ତମ୍ଭ ଲିପିରୁ (୩୧) ମିଳେ; ମାତ୍ର ସେ ତ୍ରିକଳିଙ୍ଗାଧିପତି, ବୋଲାଇ ନଥିଲେ । ଏଥିରୁ ଅନୁମାନ କରାଯାଏ ଯେ ଉତ୍କଳ ରାଜ୍ୟ ତ୍ରିକଳିଙ୍ଗ ରାଜ୍ୟରୁ ପୃଥକ୍ ଥିଲା । ଚାଳୁକ୍ୟରାଜ ରାଜେନ୍ଦ୍ର ଚୋଳଉଡ୍ର ଓ କୋଶଳ ଜୟ କରିଥିଲେ; ମାତ୍ର ସେ ନିଜକୁ ତ୍ରିକଳିଙ୍ଗାଧିପତି ବୋଲାଇ ନଥିଲେ । ଏଣୁ ଅନୁମିତ ହୁଏ ଯେ, କୋଶଳରୁ ତ୍ରିକଳିଙ୍ଗ ପୃଥକ୍ ଥିଲା । ବର୍ତ୍ତମାନ ତ୍ରିକଳିଙ୍ଗ ରାଜ୍ୟର ସୀମା ନିର୍ଦ୍ଦେଶସ୍ୱରୂପ କୁହାଯାଇପାରେ ଯେ, ଏହାର ଦକ୍ଷିଣରେ ବେଙ୍ଗୀ (କୃଷ୍ଣା ଓ ଗୋଦାବରୀ ମଧ୍ୟବର୍ତ୍ତୀ ପ୍ରଦେଶ) ଓ ଉତ୍ତରରେ କୋଶଳ ଓ ଉତ୍କଳ ବା ଉଡ୍ର ରାଜ୍ୟ ଥିଲା । ପଶ୍ଚିମରେ ଏହି ରାଜ୍ୟ କେତେ ଦୂର ବିସ୍ତୃତ ଥିଲା, ତାହା ଜଣାନାହିଁ । ଜଜ୍ଜାଲଦେବଙ୍କର ରତନପୁର (ଖ୍ରୀ.୧୧୧୪) ଶିଳାଲେଖରୁ ଦେଖାଯାଏ, ସେ କୋଶଳ ଓ ଖିମିଡ଼ି ତ୍ରିକଳିଙ୍ଗାନ୍ତର୍ଗତ ଥିଲା କି ନାହିଁ, ତାହା ସେଥିରୁ ବୁଝାଯାଉନାହିଁ । ଏହିସବୁ କାରଣରୁ ଏହା ମନେ କରାଯାଇପାରେ, ତ୍ରିକଳିଙ୍ଗ ରାଜ୍ୟ କେବଳ କଳିଙ୍ଗ ରାଜ୍ୟର ଅପର ନାମ ଥିଲା ଅଥବା କଳିଙ୍ଗ ନଗରର ଗଙ୍ଗବଂଶୀ ରାଜାମାନେ 'ତ୍ରିକଳିଙ୍ଗାଧିପତି' ବିରୁଦ ବ୍ୟବହାର କରିବାର ଦେଖି ବେଙ୍ଗୀରାଜ ତାଙ୍କର ରାଜ୍ୟକୁ ତ୍ରିକଳିଙ୍ଗ ବୋଲି କହିଥିଲେ, ଅଥବା ଏହା ଏକ 'ଆସମୁଦ୍ରକ୍ଷିତୀଶାନାଂ' ସଦୃଶ କବି କଳ୍ପନାପ୍ରସୂତ ସମ୍ମାନସୂଚକ ବିରୁଦବିଶେଷ । ସ୍ୱର୍ଗୀୟ ମନୋମୋହନ ଚକ୍ରବର୍ତ୍ତୀ ମହାଶୟ ମଧ୍ୟ ଶେଷୋକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ନିମ୍ନଲିଖିତ ବିବରଣୀଟି ମଧ୍ୟ ଶେଷୋକ୍ତ ମତର ପୃଷ୍ଠପୋଷକତା କରୁଅଛି, ମାତ୍ର ତାହା କେତେ ଦୂର ସତ୍ୟାଶ୍ରିତ, ଏହା କହିବା କଠିନ ।

"ଭାରତର ବେଳାଭୂମି ବା କଳିଙ୍ଗ ତିନି ଭାଗରେ ବିଭକ୍ତ; ଏଣୁ ତ୍ରିକଳିଙ୍ଗ ନାମରେ କଥିତ । ପ୍ରଥମ କଳିଙ୍ଗ ସିନ୍ଧୁ ସାଗରର ସଙ୍ଗମ ସ୍ଥଳ ନିକଟବର୍ତ୍ତୀ ଭୂଭାଗ, ଦ୍ୱିତୀୟ କଳିଙ୍ଗ ଭାରତ ଉପଦ୍ୱୀପାନ୍ତର୍ଗତ ଭୂଭାଗ ଓ ତୃତୀୟ କଳିଙ୍ଗ କଟକଠାରୁ ଘଟଗାଁ ପର୍ଯ୍ୟନ୍ତ

(୩୦) E.I.Vol, V. p.133
(୩୧) ଗୌଡ଼ଲେଖମାଳା. ପୃ. ୨୭ ।

ଏହିଠୁ ଗଙ୍ଗାସାଗର ଉପକୂଳବର୍ତ୍ତୀ । ଭାରତର କୌଣସି ନୃପତି ତ୍ରିକଳିଙ୍ଗାଧିପତି ବିରୁଦ ବ୍ୟତୀତ ରାଜଚକ୍ରବର୍ତ୍ତୀ ବୋଲି ପରିଚିତ ହେଉ ନଥିଲେ ।'' (୩୨)

ସମସ୍ତ ଶିଳାଲିପି ଓ ତାମ୍ରଶାସନ ଲିପିରୁ ପ୍ରମାଣିତ ହେଉଅଛି ଯେ, ଚୋଡ଼ଗଙ୍ଗ ଦେବ ଉତ୍କଳ ରାଜାଙ୍କୁ ପରାଜିତ କରିଥିଲେ । କୌଣସି ଲିପିରୁ ସୁବର୍ଣ୍ଣକେଶରୀଙ୍କର ନାମ ମିଳିନାହିଁ । କେଉଁ ଅବ୍ଦରେ ଏ ଘଟଣା ଘଟିଥିଲା, ତାହାର ସ୍ଥିରତା ନାହିଁ । ମାତ୍ର ଗଙ୍ଗ ଅଧିକାର ପୂର୍ବରୁ ଉତ୍କଳରେ କେଶରୀ ଉପାଧିଧାରୀ ରାଜା ଥିଲେ ।

ବ୍ରହ୍ମେଶ୍ୱର ଶିଳାଲିପିରୁ ଜଣାଯାଏ ଯେ, ଉଦ୍ୟୋତ କେଶରୀଙ୍କର ପୂର୍ବପୁରୁଷ ଜନ୍ମେଜୟ ତ୍ରିଲିଙ୍ଗ ଦେଶରୁ ଆସି ଉଡ୍ର ରାଜାଙ୍କୁ ନିହତ କରି ଉଡ୍ର ସିଂହାସନ ଅଧିକାର କରିଥିଲେ । ତତପୁତ୍ର ଦୀର୍ଘରବ ଓ ଦୀର୍ଘରବଙ୍କ ପୁତ୍ର ଅପବର ରାଜା ହୋଇଥିଲେ । ଅପବର ଅପୁତ୍ରିକ ଥିବାରୁ ଜନ୍ମେଜୟବଂଶଜ ବିଚିତ୍ରବୀର ଦେଶାନ୍ତରରୁ ଆସି ରାଜା ହେଲେ । ତତ୍‌ପରେ ତାଙ୍କ ପୁତ୍ର ଅଭିମନ୍ୟୁ ଓ ନାତି ଚଣ୍ଡୀହର ରାଜତ୍ୱ କରିବା ପରେ ଉଦ୍ୟୋତ କେଶରୀ ରାଜା ହେଲେ । ସେ ସକଳ ଉଡ୍ର ଓ ଗୌଡ଼ ଜୟ କରିଥିଲେ । ଗୌଡ଼ କଥାରୁ ଏହା ପ୍ରତିପନ୍ନ ହେଉଅଛି ଯେ, ପାଲିମାନଙ୍କ ସହିତ ଉଦ୍ୟୋତ କେଶରୀଙ୍କର ସଂଘର୍ଷଣ ହୋଇଥିଲା । ଏହି ଶିଳାଲେଖରୁ ଜଣାପାଏ ଯେ, ଉଦ୍ୟୋତ କେଶରୀ ଚନ୍ଦ୍ରବଂଶୀ ଥିଲେ ।

'ରାମଚରିତ' ରୁ ଜଣାଯାଏ ଯେ, ଦଣ୍ଡଭୁକ୍ତିର ଅଧିପତି ଜୟସିଂହକର୍ତ୍ତୃକ 'ଉତ୍କଳେଶ କର୍ଣ୍ଣକେଶରୀ' ପରାଜିତ ହୋଇଥିଲେ । ଏହି ଘଟଣା ରାମପାଳଙ୍କ ରାଜ୍ୟଲାଭର ଅବ୍ୟବହିତ ପୂର୍ବେ ଘଟିଥିଲା । ରାମପାଳ ପ୍ରାୟ ୧୧ଶ ଶତାବ୍ଦୀର ମଧ୍ୟଭାଗରୁ ଶେଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏଥିରୁ ମନେହୁଏ ଯେ, କର୍ଣ୍ଣକେଶରୀ ଉଦ୍ୟୋତଙ୍କର ପରବର୍ତ୍ତୀ ଥିଲେ ।

'ରାମଚରିତ'ର ୩ୟ ଅଧ୍ୟାୟର ୪୫ ଶ୍ଳୋକରେ ଦେଖାଯାଏ ଯେ, ରାମପାଳ ଉତ୍କଳ ଓ କଳିଙ୍ଗ ଉଭୟ ଦେଶ ଜୟ କରିଥିଲେ ଏବଂ 'ଭବଭୂଷଣସନ୍ତତି' ବଂଶୀୟ ରାଜାଙ୍କୁ ଉତ୍କଳ ରାଜ୍ୟ ଫେରାଇ ଦେଇଥିଲେ । ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଓ ଅଧ୍ୟାପକ ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟ ଉଭୟେ 'ଭବଭୂଷଣ' ଶବ୍ଦର ଅର୍ଥରେ 'ନାଗ' ଗ୍ରହଣ କରିଅଛନ୍ତି ଓ ରାୟବାହାଦୁର ରମାପ୍ରସାଦ ଚନ୍ଦ ମହାଶୟ 'ଚନ୍ଦ୍ର' ଗ୍ରହଣ କରିଅଛନ୍ତି । ଓଡ଼ିଶାରେ ଏହି ସମୟରେ କୌଣସି ନାଗବଂଶୀୟ ରାଜା ପ୍ରବଳ ନ ଥିଲେ ।

---

(୩୨) Journal of the Asiatic Society of Bengal, Vol. XX. Notes from a comparative Essay on the ancient Geography of India by Col. Wilford

ଏଣୁ କେଶରୀବଂଶ ଚନ୍ଦ୍ରବଂଶୀ ଥିବାରୁ ଏହା ଅନୁମାନ କରାଯାଇପାରେ ଯେ, ରାମପାଳ କର୍ଣ୍ଣକେଶରୀଙ୍କର କୌଣସି ବଂଶଧରଙ୍କୁ ଉତ୍କଳ ରାଜ୍ୟ ଫେରାଇ ଦେଇଥିଲେ । ଉତ୍କଳ ରାଜା ଏପରି ଦୁର୍ବଳ ଥିଲେ ଯେ, ଅଳ୍ପକାଳ ପରେ ଚୋଡ଼ଗଙ୍ଗଙ୍କ ଦ୍ୱାରା ସହଜରେ ଆକ୍ରାନ୍ତ ଓ ପରାଜିତ ହୋଇଥିଲେ ।

ମହାଭବଗୁପ୍ତ ଜନମେଜୟ ଓ ମହାଶିବଗୁପ୍ତ ଯଯାତିଙ୍କର ପୂର୍ବପୁରୁଷମାନେ ଶିରପୁରରେ ପ୍ରାୟ ନବମ ଶତାବ୍ଦୀରେ ରାଜତ୍ୱ କରୁଥିଲେ । (୩୩) ତତ୍‌ପରେ ସେଠାରୁ ଶରଭପୁର ରାଜାମାନଙ୍କଦ୍ୱାରା ବିତାଡ଼ିତ ହୋଇ ପୂର୍ବାଞ୍ଚଳକୁ ଆସି ବିନୀତପୁର ବା ଯଯାତିନଗରଠାରେ (ସୋନପୁର ରାଜ୍ୟର ଆଧୁନିକ ବିନକା) ରାଜତ୍ୱ କଲେ । ଏମାନଙ୍କର ୫୫ ଖଣ୍ଡ ତମ୍ବାପଟା ମିଳିଅଛି । ସମସ୍ତ ତମ୍ବାପଟାର ଲିଖିତ ଗ୍ରାମଗୁଡ଼ିକ ପାଟଣା-ସୋନପୁର ରାଜ୍ୟରେ ଥିବାର ସ୍ଥିରୀକୃତ ହୋଇଅଛି । (୩୪) କଟକ ଅଞ୍ଚଳରେ ଏମାନଙ୍କର ରାଜଧାନୀ ବା ପ୍ରଦତ୍ତ ଗ୍ରାମ ଥିବାର ଦେଖାଯାଇନାହିଁ । ଏ କ୍ଷେତ୍ରରେ ବୋଲାଯାଇପାରେ ଯେ, ଉପକୂଳବର୍ତ୍ତୀ ଓଡ଼ିଶାରେ ଏମାନଙ୍କର ଆଦୌ ଅଧିକାର ନଥିଲା ।

ମାଦଳାପାଞ୍ଜି ବ୍ୟତୀତ ସମସାମୟିକ ଉପାଦାନ ଉପରେ ନିର୍ଭର କରି ଗଙ୍ଗବଂଶର ଅଭ୍ୟୁଦୟର ପୂର୍ବକାଳୀନ ଉତ୍କଳର ଇତିହାସ ସମ୍ବନ୍ଧରେ ଠିକ୍ ଠିକ୍ ଦୁଇ ଚାରି କଥା ଏଠାରେ ଉଲ୍ଲେଖ କରାଗଲା । ଏହି ସମସ୍ତ ବିଷୟକୁ ପୁଙ୍ଖାନୁପୁଙ୍ଖ ଆଲୋଚନା ନ କରି ଇତିହାସ ବୋଲି ଗ୍ରହଣ କରିବା ଅନୁଚିତ । କାରଣ ଏତେ ସଂକ୍ଷିପ୍ତ ଉପାଦାନ ଉପରେ ଏତେ ଦୀର୍ଘକାଳର ଇତିହାସ ଲିଖିତ ହେବା ଅସମ୍ଭବ ।

ମାଦଳାପାଞ୍ଜିର ଯଯାତି ଓ ଜନମେଜୟ କେଶରୀଙ୍କର ସମୟ ଓ ତାମ୍ରଶାସନର 'ମହାଭବଗୁପ୍ତ' ଜନମେଜୟ ଓ 'ମହାଶିବଗୁପ୍ତ' ଯଯାତିଙ୍କର ସମୟ ଉପରେ ଆଲୋଚିତ ହୋଇଅଛି । ମାଦଳାପାଞ୍ଜିର ସମୟ ଓ ତମ୍ବାପଟାର ସମୟ ମଧ୍ୟରେ ୫୦୦ବର୍ଷ ବ୍ୟବଧାନ ଥିବାର ଦେଖାଯାଉଅଛି । ଉଭୟର ସମତାର ସପକ୍ଷରେ ଏତେ ଅନ୍ତରାୟ ଥିବା ସତ୍ତ୍ୱେ ଶ୍ରୀଯୁକ୍ତ ବିରୂପାକ୍ଷ କର ମହାଶୟ ଯେ ଉଭୟର ସାମଞ୍ଜସ୍ୟ ଦେଖାଇ ଅଛନ୍ତି, (୩୫) ତାହା ସଙ୍ଗତ ହୋଇଅଛି କି ? ବିରୂପାକ୍ଷବାବୁ 'ଉତ୍କଳର ଜଳଯାତ୍ରା' ପୁସ୍ତିକାରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ଉପରୋକ୍ତ ପ୍ରବନ୍ଧରେ ସେହି ମତ ମଧ୍ୟ ପୋଷଣ

(୩୩) E.I.Vol XI p. 186

(୩୪) Ibid p. 198-201

(୩୫) ଉତ୍କଳ ସାହିତ୍ୟ - ୩୨ ଭାଗ, ପୃ. ୪୩୬ ।

କରିଅଛନ୍ତି । ତାଙ୍କ ମତ ସହିତ ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ରଙ୍କ ମତ ଏକ ଥିବାର ଦେଖାଯାଏ । (୩୬) ଏହା କରିବାରେ ବିରୂପାକ୍ଷବାବୁ ଲିପିତତ୍ତ୍ୱର ପ୍ରମାଣକୁ ଯେ ଏକାବେଳକେ ହତାଦର କରିଅଛନ୍ତି, କେବଳ ତାହା ନୁହେଁ; ଯାବତୀୟ ସହଜଲଭ୍ୟ ଉପାଦାନଗୁଡ଼ିକୁ ଏକାବେଳକେ ତାଙ୍କର ଆଲୋଚନାରେ ସ୍ଥାନ ଦେଇନାହାନ୍ତି । ଏହା ନ କରିଥିବାରୁ ସେ ଭ୍ରମରେ ପଡ଼ିଅଛନ୍ତି; ମାତ୍ର କେବଳ ଇତିହାସ କାହିଁକି, ଅନ୍ୟ ଯେକୌଣସି ଆଲୋଚନାରେ ଭ୍ରମ ପ୍ରମାଦ ରହିଥାଏ । ବିରୂପାକ୍ଷବାବୁ ଏ ଦିଗରେ ଯେପରି ଯତ୍ନ କରୁଅଛନ୍ତି, ସେଥିପାଇଁ ସେ ସମସ୍ତଙ୍କର ଧନ୍ୟବାଦାର୍ହ ।

ବିନା ପ୍ରମାଣରେ କିମ୍ବଦନ୍ତୀକୁ ଇତିହାସ ରୂପେ ସ୍ୱୀକାର କଲେ କିମ୍ବଦନ୍ତୀ ଓ ଇତିହାସ ଉଭୟର ଆଦର୍ଶ ନଷ୍ଟ ହୁଏ । ଘଟନା ପରମ୍ପରାରେ ମନୁଷ୍ୟର ଚିତ୍ତବୃତ୍ତି ମିଶ୍ରିତ ହୋଇ ଘଟନା ଆକାରାନ୍ତର ହୋଇ କିମ୍ବଦନ୍ତୀରେ ପରିଣତ ହୁଏ ଓ ତାହା ଲିଖିତ ଆକାର ଧାରଣ ନ କରିବା ଯାଏଁ ମୂଳ ଘଟନାରେ ନାନା କଥା ମିଶି ତାହାର ଅଙ୍ଗ ପୁଷ୍ଟି କରୁଥାଏ । ଓଡ଼ିଶାର ପ୍ରଚଳିତ ମାଦଳାପାଞ୍ଜି ଗୋଟିଏ ଏହି ପ୍ରକାର ଗ୍ରନ୍ଥ । ପୁରୀ ବ୍ୟତୀତ ଓଡ଼ିଶାର ପ୍ରତ୍ୟେକ ପ୍ରଧାନ ସ୍ଥାନର ନାହାକମାନଙ୍କ ପାଖରେ ମାଦଳାପାଞ୍ଜି ଅଛି । ମୁଁ ପୁରୀ, ଚଉଦୁଆର ଓ ଯାଜପୁରର ମାଦଳାପାଞ୍ଜିମାନଙ୍କରେ ସାମଞ୍ଜସ୍ୟ ଥିବାର ଦେଖିନାହିଁ । କୌଣସି ମାଦଳାପାଞ୍ଜିରେ ଅଶୋକ ବା ଖାରବେଳଙ୍କ ନାମ ଲିଖିତ ନାହିଁ । ଅଶୋକଙ୍କର ଧଉଳି ଓ ଜଉଗଡ଼ ଧର୍ମାନୁଶାସନ ଓ ଖାରବେଳଙ୍କର ହାତୀଗୁମ୍ଫା ଲିପି ଓଡ଼ିଶାରେ ଥାଉ ଥାଉ ମାଦଳାପାଞ୍ଜି ସେ ବିଷୟରେ ନୀରବ ରହିଅଛି । ଅଥଚ ଯୁଧିଷ୍ଠିରଙ୍କଠାରୁ ଆରମ୍ଭ କରି ଭୋଇବଂଶର ରାଜାମାନଙ୍କ ନାମ ଓ ରାଜତ୍ୱକାଳ ଠିକ୍ ଲିଖିତ ଅଛି ।

ଜଗନ୍ନାଥସ୍ଥାପୟିତା ଇନ୍ଦ୍ରଦ୍ୟୁମ୍ନ କିଏ, ତାହାର ସନ୍ଧାନ ଇତିହାସ ଦେଇପାରିନାହିଁ । ଜଗନ୍ନାଥଙ୍କର ପୁନଃପ୍ରତିଷ୍ଠାରେ ଯଯାତିକେଶରୀଙ୍କ ନାମ ସଂଶ୍ଳିଷ୍ଟ ଅଛି । ମାଦଳାପାଞ୍ଜିର ମତରେ ଯଯାତିକେଶରୀ ୫ମ-୬ଷ୍ଠ ଶତାବ୍ଦୀର ଲୋକ । ୫ମ ଶତାବ୍ଦୀରେ ଗୁପ୍ତ ସମ୍ରାଟଙ୍କର ପ୍ରାଧାନ୍ୟ ସଙ୍ଗେ ସଙ୍ଗେ ଦେଶରେ ଧର୍ମ ଓ ଶିଳ୍ପର ନବ ଅଭ୍ୟୁଦୟ ହୋଇଥିବ । ଯଯାତିକେଶରୀ ଜଗନ୍ନାଥ ମନ୍ଦିର ନିର୍ମାଣ ଓ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ଏଥିରୁ ଧରାଯାଇପାରେ ଯେ, ଦେଶରେ ଧର୍ମ ଓ ଶିଳ୍ପର ନବ ଅଭ୍ୟୁଦୟ ହୋଇଥିଲା । ଏହା ବୋଧହୁଏ ମାଦଳାପାଞ୍ଜିର ସାରସତ୍ୟ ।

---

(୩୬) ଉତ୍କଳ ଇତିହାସ - ୧୯୨୬-କେଶରୀବଂଶ ।

କିମ୍ବଦନ୍ତୀ ବା ଲୌକିକ ଇତିହାସ ସହିତ ପ୍ରକୃତ ଇତିହାସର ତାରତମ୍ୟ ଅନୁସନ୍ଧାନ କରିବାର ଶ୍ରେଷ୍ଠ କ୍ଷେତ୍ର ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର । ଏହି ମନ୍ଦିରର ଗାତ୍ରଲିପିରୁ ଜଣାଯାଏ ଯେ, ମନ୍ଦିରଟି ଉଦ୍ୟୋତକେଶରୀଙ୍କ ମାତା କୋଳାବତୀ ଦେବୀ ଗଢ଼ାଇଥିଲେ । ମାତ୍ର ଏକାମ୍ରପୁରାଣ ଓ ସ୍ୱର୍ଣ୍ଣାଦ୍ରି ମହୋଦୟ ପୁସ୍ତକଗୁଡ଼ିକରୁ ଦେଖାଯାଏ ଯେ, ମନ୍ଦିରଟି ମନୁଷ୍ୟ ହସ୍ତରେ ନିର୍ମିତ ନ ହୋଇ ଦେବତାମାନଙ୍କ ହସ୍ତରେ ହୋଇଥିଲା । ଏଠାରେ କିମ୍ବଦନ୍ତୀକୁ ବିଶ୍ୱାସ କରାଯିବ, ନା ଇତିହାସକୁ ବିଶ୍ୱାସ କରାଯିବ ?

ଆମ୍ଭେମାନେ ପିତୃଲୋକମାନଙ୍କୁ ଦେବଲୋକମାନଙ୍କ ସହିତ ଆସନ ଦେଉଁ । କାଳକ୍ରମେ ପିତୃଲୋକମାନଙ୍କର କାର୍ଯ୍ୟାବଳୀ ଦେବଲୋକଙ୍କର କାର୍ଯ୍ୟ ବୋଲି ପରିଗୃହୀତ ହୋଇଅଛି ଓ ଏହା ମଧ୍ୟରେ କିମ୍ବଦନ୍ତୀର ଯବନିକା ପଡ଼ିଅଛି । ଏଣୁ କିମ୍ବଦନ୍ତୀ ମନ୍ଥନ କରି ତହିଁରୁ ଐତିହାସିକ ସତ୍ୟ ନିର୍ଦ୍ଧାରଣ ନ କରିବାଯାଏ ଇତିହାସ ଓ କିମ୍ବଦନ୍ତୀକୁ ପୃଥକ୍ ପୃଥକ୍ ସ୍ଥାନ ଦେବା ସଙ୍ଗତ ମନେକରୁଅଛି ।



ପ୍ରଥମ ପ୍ରକାଶ- ଉତ୍କଳ ସାହିତ୍ୟ ୩୩/୫

# କେତୋଟି ଓଡ଼ିଆ ସାମନ୍ତ ପଦବୀ

ମଙ୍ଗରାଜ, ବୀରବର, ମର୍ଦ୍ଦରାଜ, ଜଗଦ୍ଦେବ, ଭ୍ରମରବର, ହରିଚନ୍ଦନ, ଶ୍ରୀଚନ୍ଦନ ପ୍ରଭୃତି ପଦୀବରେ ଓଡ଼ିଶାର ବହୁ ଆଧୁନିକ ରାଜା ଓ ଜମିଦାର ଭୂଷିତ ଥିବାର ଦେଖାଯାଏ । ଏହି ପଦବୀଗୁଡ଼ିକ ବହୁ ପ୍ରାଚୀନ, ମାତ୍ର ପୂର୍ବେ କି ଉଦ୍ଦେଶ୍ୟରେ କାହାକୁ ପ୍ରଦତ୍ତ ହୋଇଥିଲା, ତାହା ବର୍ତ୍ତମାନ ସ୍ଥିର କରି ହେଉନାହିଁ । ସ୍ୱାଧୀନ ଓଡ଼ିଶା ସାମ୍ରାଜ୍ୟରେ ଏହି ପଦବୀଗୁଡ଼ିକ କି ରାଜନୈତିକ ଅର୍ଥରେ ବ୍ୟବହୃତ ହେଉଥିଲା, ତାହା ଜାଣିବାପାଇଁ କୌଣସି ପୁସ୍ତକାଦି ମିଳିନାହିଁ । କେବଳ ଏହା ଦେଖାଯାଉଅଛି ଯେ, ଯେଉଁମାନେ ଓଡ଼ିଶାର ସ୍ୱାଧୀନ ରାଜାଙ୍କର ସାମନ୍ତ ଥିଲେ, ସେମାନଙ୍କର ଏବଂବିଧ ଉପାଧି ଥିଲା ଓ କୌଳିକ ପ୍ରଥା ଅନୁସାରେ ତାହା ଅଦ୍ୟାପି ରହିଅଛି । ଏଣୁ ବିଶ୍ୱାସ ହେଉଅଛି ଯେ ଏହି ଉପାଧିବାଚକ ଶବ୍ଦଗୁଡ଼ିକର ଶିଷ୍ଟ ଅର୍ଥ ଓ ପ୍ରୟୋଗ ଆଲୋଚିତ ହେଲେ ସ୍ୱାଧୀନ ଓଡ଼ିଶାର ସାମନ୍ତ-ଚକ୍ରର ଇତିହାସ କଥଞ୍ଚିତ୍ ପରିସ୍ଫୁଟ ହେବ ।

ଓଡ଼ିଶାର ଗଡ଼ଜାତ-ତନ୍ତ୍ର ଲୋପ ପାଇନାହିଁ । କପିଳେନ୍ଦ୍ର ଦେବଙ୍କ ସମୟରେ ଓଡ଼ିଶାର ଗଡ଼ଜାତରେ ସାମନ୍ତ ରାଜାମାନେ ଥିଲେ ବୋଲି ସମସାମୟିକ ଲିପିରୁ ଜଣାଯାଉଅଛି । କପିଳେନ୍ଦ୍ର ବା କପିଳେଶ୍ୱର ଦେବଙ୍କର 'ଭ୍ରମରବର' ଉପାଧି ଥିଲା । ଏଣୁ ସେ କୌଣସି ସାମନ୍ତ ରାଜବଂଶଜ ଥିବାର ଅନୁମିତ ହେଉଅଛି । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ତେଲଙ୍ଗା ମୁକୁନ୍ଦଦେବଙ୍କର 'ହରିଚନ୍ଦନ' ଉପାଧି ଥିବାରୁ ସେ ଜଣେ ତତ୍‌କାଳୀନ ଓଡ଼ିଶା ରାଜାଙ୍କର ଦକ୍ଷିଣ ପ୍ରଦେଶୀ ସାମନ୍ତାଧିପତି ଥିବାର ଅନୁମାନ କରିବା ଅସଙ୍ଗତ ନୁହେଁ ।

ମାନସିଂହଙ୍କର ବନ୍ଦୋବସ୍ତ କାଗଜପତ୍ରରୁ ଦେଖାଯାଏ ଯେ ଦକ୍ଷିଣ ଓଡ଼ିଶାର ତିନୋଟି ନୂତନ ରାଜବଂଶ (ଖୋର୍ଦ୍ଧା, ସାରଙ୍ଗଗଡ଼ ଓ ଆଳି) ପ୍ରଧାନ ଥିଲେ । ଏହି ତିନି ରାଜ୍ୟର ରାଜାମାନେ ମୋଗଲ ଦରବାରର ମନସବ୍‌ଦାର ହୋଇଥିଲେ । ମାତ୍ର ଜଗନ୍ନାଥ ଦେବଙ୍କୁ ସେବା ପୂଜାର ପୁନରୁତ୍‌ଥାନ କରିବା ଯୋଗୁଁ ଖୋର୍ଦ୍ଧାର ରାଜା ରାମଚନ୍ଦ୍ରଦେବଙ୍କର ପ୍ରାଧାନ୍ୟ ସର୍ବାପେକ୍ଷା ଅଧିକ ଥିଲା । ଖୋର୍ଦ୍ଧା, ଆଳି ଓ ସାରଙ୍ଗଗଡ଼ ରାଜାମାନଙ୍କ ଅଧୀନରେ ଅନେକ ସାମନ୍ତ ରାଜା (Dependant chiefs) ଥିଲେ ।

ମାନସିଂହଙ୍କ ବନ୍ଦୋବସ୍ତରେ ଦେଖାଯାଏ ଯେ ୧- ବାଙ୍କି, ୨- ଡୋମପଡ଼ା, ୩- ଅଗ୍ରୀ, ୪- କାଲୁପଡ଼ା, ୫- ବଡ଼ମ୍ବ, ୬- ତିଗିରିଆ, ୭- ନରସିଂହପୁର, ୮- ଅନୁଗୁଳ, ୯- ହିନ୍ଦୋଳ, ୧୦- ତାଳଚେର, ୧୧- ମୁଦ୍ରେଶ୍ୱର, ୧୨- ଆଠଗଡ଼, ୧୩- ଢେଙ୍କାନାଳ, ୧୪- ସାରଣ୍ଡା, ୧୫- ଅନ୍ଧାରି, ୧୬- ବଜ୍ରକୁଟ, ୧୭- ଅଚ୍ଳକୁଟ, ୧୮- ନୟାଗଡ଼, ୧୯- ଖଣ୍ଡପଡ଼ା, ୨୦- ରଣପୁର, ୨୧- ବାଣପୁର, ୨୨- ଦଶପଲ୍ଲା, ୨୩- ଘୁମସର, ୨୪- ଖଲ୍ଲିକୋଟ, ୨୫- ସେରଗଡ଼, ୨୬- ଟେକାଲି, ରଘୁନାଥପୁର ଓ ଅପରାପର ୫ଟି ଏ ରୂପ ୩୧ଟି ସାମନ୍ତରାଜ୍ୟ ଖୋର୍ଦ୍ଧା ରାଜାଙ୍କର ଅଧୀନ ଥିଲା । ଉକ୍ତ ତାଲିକାରୁ ଦେଖାଯାଏ ଯେ, ଗଞ୍ଜାମ ଜିଲ୍ଲାରେ କେତୋଟି ସାମନ୍ତ ରାଜ୍ୟ ଥିଲା, ମାତ୍ର ତାହା କେବେ ଖୋର୍ଦ୍ଧାରୁ ବିଚ୍ଛିନ୍ନ ହେଲା, ତାହାର ଠିକଣା ନାହିଁ । ୧୭୬୬ ଖ୍ରୀଷ୍ଟାବ୍ଦରେ ମଟି ସାହେବଙ୍କ (Mr. Motte) ଲିଖିତ ଭ୍ରମଣବୃତ୍ତାନ୍ତରୁ ଜଣାଯାଏ ଯେ, ପୁରୀ (ଖୋର୍ଦ୍ଧା) ରାଜାଙ୍କ ଅଧସ୍ତନ- ୧ - ଢେଙ୍କାନାଳ, ୨- ବାଙ୍କି, ୩- ନରସିଂହପୁର, ୪-ତିଗିରିଆ, ୫-ବଡ଼ମ୍ବ, ୬-ତାଳଚେର, ୭- ଖଣ୍ଡପଡ଼ା, ୮- ଦଶପଲ୍ଲା, ୯-ହିନ୍ଦୋଳ, ୧୦-ଅନୁଗୁଳ ଓ ୧୧- ବୌଦ ରାଜ୍ୟଗୁଡ଼ିକ ରଘୁଜି ଭୌଁସଲା ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଚକଲାରେ ବିଭକ୍ତ କରିଥିଲେ । ମରହଟ୍ଟାମାନଙ୍କ ଶାସନ ପ୍ରଣାଳୀରେ ଇଂରେଜମାନେ ହସ୍ତକ୍ଷେପ ନ କରି ଏହି ରାଜ୍ୟଗୁଡ଼ିକ ସହିତ ସ୍ୱତନ୍ତ୍ର ସମ୍ବନ୍ଧ ସ୍ଥାପନ କରିଥିଲେ ।

ଉପର୍ଯ୍ୟୁକ୍ତ ରାଜ୍ୟଗୁଡ଼ିକ ସମ୍ବନ୍ଧରେ ଲେଖିବାକୁ ଯାଇ କମିଶନର ମିଷ୍ଟର ଇବାର (Ewer) ୧୮୧୮ରେ ଲେଖିଥିଲେ,* "ମୋଗଲ ଅଧିକାରର ପୂର୍ବବର୍ତ୍ତୀ ଓଡ଼ିଶା ସାମ୍ରାଜ୍ୟର ଆଭ୍ୟନ୍ତରୀଣ ଚିତ୍ର କ୍ଷୁଦ୍ରାକାରରେ ଖୋର୍ଦ୍ଧା ରାଜ୍ୟରେ ପ୍ରତିଫଳିତ ଥିଲା । ଏ ଅବସ୍ଥା ବର୍ତ୍ତମାନ ହିନ୍ଦୁସ୍ଥାନ ଓ ଦାକ୍ଷିଣାତ୍ୟର ବହୁ ରାଜ୍ୟରେ ରହିଥିବାର ମୁଁ ଜାଣେ । ରାଜାଙ୍କର ଖାଲସା ଭୂମି ବ୍ୟତୀତ ରାଜ୍ୟର ଅଧିକାଂଶ ସ୍ୱତନ୍ତ୍ର ଉଦ୍ଦେଶ୍ୟରେ, ଯଥା - ମନ୍ତ୍ରୀ ଓ ଉଚ୍ଚପଦସ୍ଥ କର୍ମଗ୍ରରୀଙ୍କ ବୃତ୍ତି ଓ ରାଜାଙ୍କର ଆକସ୍ମିକ ବ୍ୟୟନିର୍ବାହ, ଜାୟଗିରିଦାରମାନଙ୍କର ଓ ନିଯୁକ୍ତ ପାଇକମାନଙ୍କର ପ୍ରତିପୋଷଣ ନିମିତ୍ତ ପ୍ରଦତ୍ତ ହୋଇଥିଲା । ପ୍ରଥମୋକ୍ତ ବ୍ୟୟ ନିର୍ବାହ ପାଇଁ ସର୍ବାପେକ୍ଷା ଉର୍ବର ଓ ମହାର୍ଘ ଭୂମି କେବଳ ମନୋନୀତ ହେଉଥିଲା । ଏଣୁ କୋଠଦେଶ, କୋଠରାହାଙ୍ଗ, କୋଠମୂଳ ପ୍ରଭୃତି ଅର୍ଥାତ୍ ରାଜାଙ୍କର କୋଠର ସାକ୍ଷାତରେ ପରିଗ୍ରଳିତ ଉତ୍କୃଷ୍ଟ ଓ ଉର୍ବର ରାଜ୍ୟାଂଶର ନାମକରଣ ହୋଇଥିବାର ପ୍ରମାଣ ମିଳୁଅଛି ।

---

* "Selection from the correspondence on the settlement of the Khurdha Estate in the District of Pooree" - Ewer's Report dated 13th May 1818 to the acting Secretary to the Govt.

ଉକ୍ତ ଅଭିପ୍ରାୟ ନିମିତ୍ତ ପୂର୍ବ ଓ ପଶ୍ଚିମ ପାର୍ଶ୍ୱବର୍ତ୍ତୀ ବନ୍ୟ ଓ ଅନୁର୍ବର ରାଜ୍ୟାଂଶମାନ ନିର୍ଦ୍ଦେଶିତ ହୋଇଥିଲା ଓ ସେହି ଜାୟଗିରିଗୁଡ଼ିକ ରାଜା, ମହାନାୟକ ବା ଖଣ୍ଡାୟତ ବାଚ୍ୟ ରଣସାମନ୍ତମାନଙ୍କ ମଧ୍ୟରେ ବିଭକ୍ତ ହୋଇଥିଲା । ପେଶବାଙ୍କର ଅଧୀନ ଜାୟଗିରିଦାର ବା ରାଜପୁତନାର ଠାକୁର ସାମନ୍ତମାନଙ୍କ ସଦୃଶ ଏମାନଙ୍କର ପ୍ରାୟ ରାଜଚକ୍ରବର୍ତ୍ତୀ ରାଜାଙ୍କ ସହିତ ସମାନ ସମ୍ବନ୍ଧ ଥିଲା । ସମସ୍ତେ କ୍ଷତ୍ରୀ ବୋଲାଉଥିଲେ । ଏହାର ଅପରାର୍ଥ ମଧ୍ୟ ଖଣ୍ଡାୟତ । ଖଣ୍ଡାୟତ ଶବ୍ଦ ଖଣ୍ଡାରୁ ନିଷ୍ପନ୍ନ । ତେଣୁ ଏମାନଙ୍କୁ ଯୋଦ୍ଧା ଜାତି କୁହାଯାଇପାରେ । ଏହି ସାମନ୍ତମାନେ ଗଜପତି ରାଜାଙ୍କଠାରୁ ବିଭିନ୍ନ ପଦବୀ ପାଇଥିଲେ । କେବଳ ଅତି ଅଳ୍ପସଂଖ୍ୟକ ପ୍ରଥମରୁ ରାଜା ଥିଲେ । ଯଥା - ଆଳି, କୁଜଙ୍ଗ, କେଉଁଝର, ମୟୂରଭଞ୍ଜ, ପଟିଆ ଓ ଦଶପଲ୍ଲା । ଅନ୍ୟାନ୍ୟମାନଙ୍କୁ ମହାନାୟକ ବୋଲାଯାଉଥିଲା । ଏହା ବ୍ୟତୀତ ଅନ୍ୟ ସମସ୍ତେ ଖଣ୍ଡାୟତ ନାମରେ ପରିଚିତ ଥିଲେ । ସମୁଦ୍ର ତୀରବର୍ତ୍ତୀ ଗୋପ, ହରିହରପୁର, ମରିଚ୍‌ପୁର, ବିଷ୍ଣୁପୁର ଆଦି କିଲାର ମାଲିକମାନଙ୍କର ରାଜଦତ୍ତ ଖଣ୍ଡାୟତୀ ପଦବୀ ଥିଲା, ମାତ୍ର ସେମାନଙ୍କର ପ୍ରଜାମାନେ ତାଙ୍କୁ 'ରାଜା' ବୋଲୁଥିଲେ । x x x ଗଜପତିଙ୍କ ନିକଟରେ ଥିଲାବେଳେ ସେମାନଙ୍କୁ ଦରବାରରେ ନିଜ ନିଜର ଖଟଣି କରିବାକୁ ପଡୁଥିଲା; କିଏ 'ମୟୂରଚୁଳ', କିଏ 'ପଙ୍ଖା', କିଏ 'ତରବାରି', କିଏ 'ନିଶାଣ' ଇତ୍ୟାଦି ଧରୁଥିଲେ । ଗଡ଼ଜାତ ବା ଖଣ୍ଡାୟତ ରାଜା ନାମରେ ପରିଚିତ ଜାୟଗିରିଦାରମାନେ ଖଟଣି କରୁଥିଲେ ଓ ରାଜ୍ୟର ସହାୟସ୍ୱରୂପ ରହିଥିଲେ । ମାତ୍ର ମରହଟ୍ଟା ଶାସନ ସମୟରେ ଜାୟଗିରିମୂଳକ ଶାସନତନ୍ତ୍ର ଭାଙ୍ଗି ଯାଇଥିଲା ଓ ସେମାନଙ୍କଠାରୁ ପେଶକସ ଆଦାୟ ବ୍ୟବସ୍ଥା ହୋଇଥିଲା ।

ଇବାର (Ewer)ସାହେବଙ୍କ ରିପୋର୍ଟରୁ ଦେଖାଯାଏ ଯେ, ଖୋର୍ଦ୍ଧା ବା ପୁରୀ ରାଜାଙ୍କଠାରୁ ତାଙ୍କର ସାମନ୍ତବୃନ୍ଦ ବିଭିନ୍ନ ପଦବୀ ଲାଭ କରିଥିଲେ । ସେହି ରିପୋର୍ଟରୁ ପୁଣି ଦେଖାଯାଏ ଯେ, ରାଜ୍ୟ ହରାଇ ମଧ୍ୟ ଖୋର୍ଦ୍ଧା ବା ପୁରୀ ରାଜାମାନେ ମୋଗଲବନ୍ଦୀ ଓ ଗଡ଼ଜାତରେ ପଦବୀ ଦାନ କରୁଥିଲେ । ମରହଟ୍ଟାମାନେ ସେଥିରେ ଆପତ୍ତି ଉଠାଉ ନଥିଲେ । ବରଂ ମରହଟ୍ଟାମାନେ ରାଜାଙ୍କ ଦତ୍ତ ଉପାଧି ଖୋର୍ଦ୍ଧା ରାଜାଙ୍କ ଦ୍ୱାରା ଅନୁମୋଦିତ ନହେଲେ ଓଡ଼ିଶାରେ ଚଳୁ ନଥିଲା । ଇଂରାଜ ରାଜତ୍ୱରେ ମଧ୍ୟ କେନ୍ଦ୍ରାପଡ଼ାର ଜମିଦାର ବଂଶ ପୁରୀ ରାଜାଙ୍କଠାରୁ 'ନରେନ୍ଦ୍ର', 'ଶ୍ରୀଚନ୍ଦନ' ଓ 'ଜଗଦେବ' ଉପାଧିମାନ ପାଇଥିଲେ ଓ ସେଗୁଡ଼ିକ ସର୍ବତ୍ର ଚଳିଥିଲା ।

ସାମନ୍ତ ପଦବୀରେ ଭୂଷିତ ନିମ୍ନୋକ୍ତ ଓଡ଼ିଆ ଫିଉଡେଟେରି ରାଜା ଏବଂ ଓଡ଼ିଶା ଓ ଗଞ୍ଜାମର ଜମିଦାରମାନଙ୍କଠାରେ ନିମ୍ନଲିଖିତ ପଦବୀଗୁଡ଼ିକ ଥିବାର ଦେଖାଯାଏ । ଏମାନେ ସମସ୍ତେ ଖୋର୍ଦ୍ଧା ରାଜାଙ୍କ ଅଧୀନସ୍ଥ ଥିବା କଥା ପୂର୍ବେ ବୋଲାଯାଇଅଛି ।

| (କ) ଫିଉଡେଟରି ରାଜା | | ପଦବୀ |
|---|---|---|
| ୧. | ବଡ଼ମ୍ବା | ବୀରବର ମର୍ଦ୍ଦରାଜ ମହାପାତ୍ର |
| ୨. | ଢେଙ୍କାନାଳ | ମହେନ୍ଦ୍ର ବାହାଦୁର |
| ୩. | ହିନ୍ଦୋଳ | ମର୍ଦ୍ଦରାଜ ଜଗଦ୍ଦେବ |
| ୪. | ଖଣ୍ଡପଡ଼ା | ମର୍ଦ୍ଦରାଜ, ଭ୍ରମରବର ରାୟ |
| ୫. | ନରସିଂହପୁର | ମାନସିଂହ, ହରିଚନ୍ଦନ ମହାପାତ୍ର |
| ୬. | ନୟାଗଡ଼ | ମାନଧାତା । |
| ୭. | ରଣପୁର | ବଜ୍ରଧର ନରେନ୍ଦ୍ର ମହାପାତ୍ର |
| ୮. | ତାଳଚେର | ବୀରବର ହରିଚନ୍ଦନ |
| ୯. | ତିଗିରିଆ | ବୀରବର ଚମ୍ପତିସିଂହ ମହାପାତ୍ର |

(ଖ) ମୋଗଲବନ୍ଦୀ ଜମିଦାର :

| | | |
|---|---|---|
| ୧. | ମଧୁପୁର | ଧୀର ନରେନ୍ଦ୍ର |
| ୨. | ସୁକିନ୍ଦା | ହରିଚନ୍ଦନ ମହାପାତ୍ର |
| ୩. | ଚନ୍ଦ୍ରା | ନରେନ୍ଦ୍ର |
| ୪. | ଡମପଡ଼ା .... | ଭ୍ରମରବର |
| ୫. | ବାଣପୁର (ଆଧୁନିକ ପାରିକୁଦ) | ହରିଚନ୍ଦନ, ମର୍ଦ୍ଦରାଜ, ଭ୍ରମରବର |
| ୬. | ବାଙ୍କି | ଶ୍ରୀଚନ୍ଦନ |

(ଗ) ଗଞ୍ଜାମର ଜମିଦାର :

| | | |
|---|---|---|
| ୧. | ତରଳା | ହରିଚନ୍ଦନ |
| ୨. | ସୁରଙ୍ଗୀ | ହରିଚନ୍ଦନ ଜଗଦ୍ଦେବ |
| ୩. | ଟିକାଲି | ହରିଚନ୍ଦନ ଜଗଦ୍ଦେବ । |
| ୪. | ଖଲ୍ଲିକୋଟ | ମର୍ଦ୍ଦରାଜ । |

ମାନସିଂହଙ୍କ ବନ୍ଦୋବସ୍ତ ତାଲିକାରୁ ଦେଖାଯାଏ ଯେ, ମୋଗଲ ରାଜତ୍ୱର ପ୍ରାରମ୍ଭରେ ଉତ୍ତର ଓଡ଼ିଶାରେ କେଉଁଝର, ମୟୂରଭଞ୍ଜ ଓ ବିଷ୍ଣୁପୁର ଏହି ତିନୋଟି ବଡ଼ ରାଜ୍ୟ ଥିଲା । କେନ୍ଦୁଝର ରାଜାଙ୍କ (ଜମିଦାର *) ଅଧୀନରେ ୧୪ ଜଣ ସାମନ୍ତାଧିପତି (Dependant chiefs) ଥିଲେ । ସେମାନଙ୍କର ପଦବୀ ସମ୍ବନ୍ଧରେ ଅପ୍ରକାଶିତ ପୋଥି ବା ପ୍ରକାଶିତ ପୁସ୍ତକ ଥିବାର ଜଣାନାହିଁ । ବିଷ୍ଣୁପୁରର ସାମନ୍ତ ରାଜାମାନଙ୍କର ପଦବୀ ସମ୍ବନ୍ଧରେ ବିଷ୍ଣୁପୁର ଇତିହାସରେ କିଛି ଉଲ୍ଲେଖ ନାହିଁ । ମୟୂରଭଞ୍ଜ ଅଧୀନରେ ୧୦ ଜଣ ସାମନ୍ତାଧିପତି ଥିଲେ ।ଯଥା - ୧. ନୀଳଗିରି, ୨. ସିଂହଭୂମ, ୩. ବର୍‌ହାଭୂମ୍, ୪. ପଥରାଇ, ୫. ନରିସିଂହପୁର, ୬. ଦେବାତ୍ରିଚନ୍ଦ (ଦୀପାକିଆରଚନ୍ଦ)(୧), ୭. ଯାମକୁଣ୍ଡା, ୮. ଚରଗଡ଼, ୯. ତାଳମୁଣ୍ଡା, ୧୦. ଜମିରାପାଳ । ଏମାନଙ୍କ ମଧ୍ୟରୁ କେବଳ ନୀଳଗିରି ବର୍ତ୍ତମାନ ସ୍ୱତନ୍ତ୍ର ଫିଉଡେଟରି ରାଜ୍ୟ ହୋଇଅଛି । ଅବଶିଷ୍ଟଗୁଡ଼ିକ ରାଜ୍ୟରୁ ବିଚ୍ଛିନ୍ନ ହୋଇ ମୋଗଲବନ୍ଦୀର ଜମିଦାରିରେ ପରିଣତ ହୋଇଅଛି । ଯଥା - ଜାମକୁଣ୍ଡା, ଧଳଭୂମି, ଇତ୍ୟାଦି । ମାନସିଂହଙ୍କ ତାଲିକା ମଧ୍ୟରୁ କେବଳ ନୀଳଗିରି, ଧଳଭୂମ ଓ ନରସିଂହପୁରର (ଆମର୍ଦା ନିକଟବର୍ତ୍ତୀ ଆଧୁନିକ କାହୁପୁର)(୨) ସାମନ୍ତପତିମାନେ ଖ୍ରୀ. ୧୬୬୦ ରେ ରାଜା କୃଷ୍ଣଭଞ୍ଜଙ୍କର ଅନୁଗାମୀ ହୋଇ ନବ ନିଯୁକ୍ତ ଓଡ଼ିଶାର ସୁବାଦାର ଖାଁ-ଇ-ଦୂରାନଙ୍କୁ ଜଳେଶ୍ୱରଠାରେ ଭେଟିଥିଲେ । 'ଭଞ୍ଜବଂଶ ମାଳିକା' ନାମରେ ଖଣ୍ଡିଏ ପୁରୁଣା ପୋଥିରେ ନିମ୍ନଲିଖିତ ଆଂଶିକ ବିବରଣ ମିଳିଅଛି । ଏଥିରୁ ମୟୂରଭଞ୍ଜର ଅଧୀନସ୍ଥ ଜମିଦାରମାନଙ୍କର କି କି ଉପାଧି ଥିଲା, ତାହାର ପ୍ରମାଣ ମିଳେ ।

"୧. ଧଳଭୂମିର ରଣ ସର୍ଦ୍ଦାର । ଏ ସଦାକାଳ ଶ୍ରୀ ମହାରାଜାଙ୍କ ନୂଆ ରାଯୁତି ସମଏକୁ ଟୀକା ଶାରନ୍ତି । ଜାନାନା ପୋଷାକରେ ଭେଟୀ ବକସିସ୍ ପାଏ ।

୨. ନୀଳଗିରି ନୟନ ଦାସ ମର୍ଦ୍ଦରାଜ ହରିଚନ୍ଦନ ଭୁୟାଁ ମାହାପାତ୍ରକୁ ଲେଖ । ଏ ଜମିଦାର ହାଲରେ ରାଜପଦ ପାଇଲା ।

---

* ଇଂରାଜୀ ରାଜତ୍ୱରେ 'ଜମିଦାର' ଶବ୍ଦର ଅର୍ଥରେ ବହୁ ପରିବର୍ତ୍ତନ ଘଟିଅଛି । ମାତ ମୋଗଲ ରାଜତ୍ୱରେ 'ଜମିଦାର' ଶବ୍ଦର ଅର୍ଥ ବଡ଼ ବ୍ୟାପକ ଥିଲା । ରାଜପୁତନାର ଜୟପୁର, ଉଦୟପୁର, ଯୋଧପୁର, ଭରଥପୁର ପ୍ରଭୃତି ରାଜାମାନେ ଜମିଦାର ନାମରେ କଥିତ ହେଉଥିଲେ ।

(୧) Stirling's Orissa printed in the Asiatic Researches, 1825, Vol. XV, p. 228.

(୨) Sutherland's sketches of the relations subsisting between the British Government in India and the different native states. 1837. p.15.

୩. କଇଁସାରି ଗୋପୀନାଥ ଦାସ ଜିଏ ଭୁଜଙ୍ଗ ମାନଧାତା ଭୂୟାଁ ମହାପାତ୍ରକୁ ଲେଖ । ଏ ପୁରାତ୍ବ ଜମିଦାର । ରଜା ପଦ ହାଲକୁ ଥାଇ ।

୪. କବତୀ ପଦୀ ନନ୍ଦକିସୋର ଦାସ ମହାପାତ୍ରକୁ ଲେଖ । ଏ ହାଲରେ ରଜା ପଦ ପାଇଲା ।

୫. ପୋଡ଼ାଡିହା ଯଗନ୍ନାଥ ଦାସ ମହାପାତ୍ରକୁ ଲେଖ ।

୬. ଗିଲା କଣ୍ଟିଆ ପରତାପ ଦାସ ଶିରିଚନ୍ଦନ ଭୂୟାଁ ମହାପାତ୍ରକୁ ଲେଖ ।

୭. ଉପର ଭାଗ ବୃନ୍ଦାବନ ଦାସ ରାଜକୁମାର ସମେତ ସର ବାହାଦୂର ବୀରବାହୁ ମର୍ଦ୍ଦରାଜ ଭୂୟାଁ ମହାପାତ୍ରକୁ ଲେଖ । ଏ ଯେହି ମଣିମା ମହାରାଜାଙ୍କଠାରୁ ରଜା ପଦ ପାଇଲା ।

ଏହି ରୂପ ବିସ୍ବରି ବାଇଶି ଜମିଦାରମାନଙ୍କ ପଦପଧେତ ହାଲ ସାବିକ ପାଇଲା କଥା ମାନ ବିସ୍ବରି ଆଜ୍ଞା ଲେଖିବ ।"

ଏହା ବ୍ୟତୀତ ବ୍ରାହ୍ମଣଘାଟୀ ଜମିଦାରଙ୍କର "ନରେନ୍ଦ୍ର ମହାପାତ୍ର" ଓ ଦାସପୁର ଜମିଦାରଙ୍କର "ବାହୁବଳେନ୍ଦ୍ର ଜଗଦେବ ଭୂୟାଁ ମହାପାତ୍ର" ଉପାଧି ଥିବା କଥା ଇଂରାଜୀ କାଗଜପତ୍ରରୁ ଜଣାଯାଏ ।

ଉପରେ ଉଦ୍ଧୃତ ଧଳଭୂମ ରାଜାଙ୍କର ଜମିଦାରୀ ଭୋଗାଧିକାର ସର୍ତ୍ତରେ ଯେଉଁ ବିଶେଷତ୍ୱ ଦେଖାଯାଏ, ତାହାର ପ୍ରମାଣ ମଧ୍ୟ ଅନ୍ୟତ୍ର ଅଛି । ସମ୍ବଲପୁରର ଅଧୀନ ଥିବାବେଳେ (ପାଲ) ଲହଡ଼ାର ଜମିଦାରଙ୍କୁ ଠିକ୍ ଏହିପ୍ରକାର କାର୍ଯ୍ୟ କରିବାକୁ ପଡୁଥିଲା । ପରେ ଯେତେବେଳେ ଲହଡ଼ା କେନ୍ଦୁଝରର ଅଧୀନରେ ରହିଲା, ସେତେବେଳେ କେନ୍ଦୁଝର ରାଜା ତାଙ୍କ ଠାରୁ ସେହି ସର୍ତ୍ତରେ ପେଶକସ ନେବାକୁ ତାଙ୍କୁ ବାଧ୍ୟ କରୁଥିଲେ, ମାତ୍ର ଲହଡ଼ାର ଜମିଦାର ସେଥିରେ ସମ୍ମତ ନ ହେବାରୁ ତାଙ୍କ ମଧ୍ୟରେ ଗୋଳମାଳ ଘଟିଥିଲା । ଏହି ପ୍ରସଙ୍ଗରେ ଲେଖିବାକୁ ଯାଇ ଲେଫଟ୍‌ନାଣ୍ଟ କିଟୋ ଲେଖିଅଛନ୍ତି -

"The estate of Lehra was formerly one of the eighteen dependencies of Sumbulpur, as I have before said; but some years ago, the uncle of the present Zemindar willed his estate to the Keunjur Raja, or rather gave it to him as a dowry on the marriage of his daughter (an only child). This questionable act has led, as may well be supposed, to continual feuds between the two powers, the Zemindar refusing to pay the homage

required by the Keunjur Raja, and the latter refusing to accept the tribute (which amounts to 250 Rupees per annum) unless the former consents to attend once a year at the Keunjur darbar, and there present a nuzzur together with his tribute, dressed in women's attire, i.e.a Sari and Churis (bangles) on his arms, and in this condition prostrate himself at the Raja's feet. This the Lehra chief has from the First refused to do." (Account of a journey from Sumbulpur to Mednipur, through the Forests of Orissa, published in the journal of the Asiatic Society of Bengal; 1839 p. 608.)

ସମ୍ବଲପୁର ରାଜାଙ୍କ ଅଧୀନସ୍ଥ ଜମିଦାରମାନଙ୍କ ମଧ୍ୟରୁ ରେଢ଼ାଖୋଲ ଜମିଦାରଙ୍କୁ ଆହୁରି ଏକ ଅଦ୍ଭୁତ ସର୍ତ୍ତ ମାନିବାକୁ ପଡୁଥିଲା । ସେ ସମ୍ବଲପୁର ରାଜାଙ୍କ ନିକଟକୁ ବାର୍ଷିକ କର ଦେବାକୁ ଆସିଲାବେଳେ ତାଙ୍କୁ ରାଜାଙ୍କ ଆଗରେ 'ମଗର ଲେଉଟ' କରିବାକୁ ପଡୁଥିଲା, ଅର୍ଥାତ୍ ଜମିଦାର ସର୍ବାଙ୍ଗରେ କାଦୁଅ ବୋଳି ହୋଇ ରାଜାଙ୍କଠାରୁ କିଛି ଦୂରରୁ ତଳେ ଶୋଇ ଲେଉଟି ଲେଉଟି ରାଜାଙ୍କ ଚରଣ ପର୍ଯ୍ୟନ୍ତ ଆସି ଅଭିବାଦନ କରି ନଜର ଦେଲାପରେ ଠିଆ ହେଉଥିଲେ । ଲହଡ଼ା ପ୍ରସଙ୍ଗ ଲେଖିସାରି ଲେଫଟ୍‌ନେଣ୍ଟ କିଟୋ ମହାଶୟ ଉପରୋକ୍ତ ପତ୍ରିକାରେ ଏହି କଥା ଲେଖିଅଛନ୍ତି ।

"Most of the minor 'gurhs were originally held on the like curious tenures and some even still more absurd, for instance the adjacent state of Rehrakol; the Zemindar used to perform (once a year) what was termed the 'Muggur loth' or allegator's roll, when attending with his tribute on his lord (Sumbulpur). The ceremony is thus described - the Zemindar besmeared himself with mud, and when arrived within a stipulated distance he had to lie down and roll along the ground in that condition to the Raja's feet, which he salupted, his nuzzur was then accepted and he was alllowed to rise." (J.A.S.B. 1836. p.608)

ବର୍ତ୍ତମାନ ଓଡ଼ିଆ ସାମନ୍ତ ପଦବୀ ଓ ଭୋଗାଧିକାର ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ଆଲୋଚନା କରାଗଲା । ଭବିଷ୍ୟତରେ ଏ ସମ୍ବନ୍ଧରେ ଆହୁରି କିଛି ଆଲୋଚନା କରିବାର ବାସନା ରଖିଅଛି ।



# ଓଡ଼ିଶାରେ ରାଜା କଲ୍ୟାଣ ମଲ୍ଲ

ପ୍ରଫେସର ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ 'ମାଦଳାପାଞ୍ଜି'ର ପୃ.୬୫ ଓ ୬୬ ଷ୍ଠାରେ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ ସମୟରେ ଲେଖାଅଛି ଯେ "ଅ୧୭ଙ୍କେ ରାଜା କଲ୍ୟାଣ ଅଇଲେ । x x x ଅ୧୮ଙ୍କେ ରାଜା କଲ୍ୟାଣକୁ ବେଢ଼ି ମାଇଲେ ।"

ପୁରୀ ଜିଲ୍ଲାର ଗେଜେଟିଅର୍‌ରେ ଲେଖାଅଛି ଯେ, 'In 1613-14 Raja Kalyan invaded the country. xxx the following year the Khurda chief met and killed Kalyan in battle (p.47). ଏହି ପୁସ୍ତକରେ ପୃ.୩୬ଷ୍ଠାରେ ଲେଖାଅଛି "Kalyan lived till when he was according to the chronicles of Jagannath killed by the Raja of Khurda."

'ମାଦଳାପାଞ୍ଜି' ଓ ପୁରୀ ଗେଜେଟିଅର୍ ମତରେ ରାଜା କଲ୍ୟାଣ ମଲ୍ଲ ବର୍ଷେ ମାତ୍ର ଓଡ଼ିଶାରେ ଥିଲେ । ବର୍ତ୍ତମାନ ଦେଖାଯାଉ ସମସାମୟିକ ଲେଖାରୁ ରାଜା କଲ୍ୟାଣ ମଲ୍ଲଙ୍କ ସମ୍ବନ୍ଧରେ କି ବିବରଣ ମିଳୁଅଛି ।

ତାଜୁକ-ଇ-ଜାହାଙ୍ଗୀର, ବହାରି ସ୍ଥାନ-ଇ-ଘୟବି ଓ କାଶିଆଡିର ଶିଳାଲିପିରୁ ରାଜା କଲ୍ୟାଣ ମଲ୍ଲଙ୍କ ସମ୍ବନ୍ଧେ ଯାହା ଦେଖାଯାଏ, ତାହାର ଆଲୋଚନା ତଳେ କରାଯାଇଛି । 'ତାଜୁକ-ଇ-ଜାହାଙ୍ଗୀର ଗ୍ରନ୍ଥଟି ମୋଗଲ ସମ୍ରାଟ ଜାହାଙ୍ଗୀରିଙ୍କର ସ୍ୱହସ୍ତ ଲିଖିତ ଜୀବନୀ । ବହାରି ସ୍ଥାନ-ଇ-ଘୟବି ଗ୍ରନ୍ଥଟିର ଲେଖକ ମିର୍ଜା ନାଥନ ଜାହାଙ୍ଗୀରଙ୍କ ସମସାମୟିକ ରାଜକର୍ମଚାରୀ ଥିଲେ ।

ମେଦିନୀପୁରରେ ଓକିଲ ଓ କାଶିଆଡିର ନିବାସୀ ସ୍ୱର୍ଗୀୟ ରାଧାନାଥ ପତି ମହାଶୟ ତାଙ୍କର କେଶିୟାଡ଼ି ନାମକ ପୁସ୍ତକରେ ସର୍ବମଙ୍ଗଳା ମନ୍ଦିରର ତିନୋଟିଯାକ ଓଡ଼ିଆ ଲିପିର ଚିତ୍ରଗୁଡ଼ିକ ୧୯୧୫ ଖ୍ରୀ.ରେ ଛପାଇଥିଲେ । ଏହି ଶିଳାଲିପିଗୁଡ଼ିକ ମଧ୍ୟରୁ ଦୁଇଟି ରାଜା ମାନସିଂହଙ୍କ ଅମଳର ଓ ତୃତୀୟଟି ରାଜା କଲ୍ୟାଣ ମଲ୍ଲଙ୍କ ଅମଳର ଲିପି ଅଟେ । ରାଜା କଲ୍ୟାଣ ମଲ୍ଲଙ୍କର ନାମଯୁକ୍ତ ଲିପିଟିକୁ ସ୍ୱର୍ଗୀୟ ପତି ମହାଶୟ ଭଲଭାବରେ

ପଢ଼ିପାରି ନଥିଲେ । ଏହି ଶିଳାଲିପିର ମାପ ଲମ୍ବରେ ୪୨ ଇଞ୍ଚ ଓ ଓସାରରେ ୧୪ ଇଞ୍ଚ ଓ ଲିପିଟିରେ ସାତ ଧାଡ଼ି ଲେଖା ଅଛି ।

ଲିପିର ପାଠ :

୧. ଶୁଭମସ୍ତୁ । ଶକାବ୍ଦ ୧୫୩୭ ସମସ୍ତ ୧୧ ଅଙ୍କ ଶ୍ରାହି କୁମ୍ଭ ୧୩ ଦିନେ ଶୁଦି ଶୁ

୨. କ୍ରବାରେ ଶ୍ରୀ ମଙ୍ଗଳା ଠାକୁରାଣୀଙ୍କର ନାଟମନ୍ଦିର ଶ୍ରୀ ସାହା ସାଲିମ ପତିସାଙ୍କ

୩. ର ଶୁଭରାଜ୍ୟେ ଶ୍ରୀ ରାଜା କଲ୍ୟାଣ ମଲ୍ଲଙ୍କର ଶୁଭା ସାହେବ ଶ୍ରୀ ସୁନ୍ଦର ଦା x x ର୍ଥେ ଦେବତା

୪. ଶ୍ରୀ କାଣିଆଡ଼ୀ ଗଡ଼ x x x ଆଦି ସ୍ଥାନେ ଏ ନାଟମନ୍ଦିର ଗଠନ ଶ୍ରୀଧର ମହାରଣା

୫. ଦନାଇ ମହାରଣା ବନମାଳି ଦାସ ଓ ଅରଜୁନ ମହାରଣା ଭେଦଭାନୁ ସଦା ବବ

୬. x x x ମାଧ ମିଶ୍ର ମକୁହୁମୀ ଓ ଗଜୁ x x ନାଇକ ଜଗବନ୍ଧୁ

୭. ଅ x ର ମୁରାରି ନାଏକ ତଲୁ ।

ଶିଳାଲିପିଟି ସ୍ଥାନେ ସ୍ଥାନେ ଅତି ଅସ୍ପଷ୍ଟ ହୋଇଥିବାରୁ ସବୁ ଲେଖାର ପାଠ ଉଦ୍ଧାର କରିବା ମୋ ପକ୍ଷରେ ସମ୍ଭବ ହୋଇନାହିଁ । ମାତ୍ର ଲିପିଟିରେ 'ସାହା ସାଲିମ୍ ପତିସା' ଓ ରାଜା କଲ୍ୟାଣ ମଲ୍ଲଙ୍କର ନାମ ସ୍ପଷ୍ଟ ଅଛି । ଲିପିରେ ଅକାବ୍ଦ ୧୫୩୭ ଥିବାରୁ ଲିପିର ସମୟ ଖ୍ରୀ. ୧୬୧୫ ହେଉଅଛି । ଏହି ସମୟରେ ଦିଲ୍ଲୀରେ ମୋଗଲ ସମ୍ରାଟ ଥିଲେ । ଜାହାଙ୍ଗୀର ଓ ଓଡ଼ିଶାରେ ମୋଗଲ ସୁବାଦାର ଥିଲେ ରାଜା କଲ୍ୟାଣ ମଲ୍ଲ । କାଣିଆଡ଼ି ଲିପିର ଏତିକି କଥା ନିରାଟ ସତ୍ୟ ।

ମିର୍ଜାନାଥଙ୍କ ଲିଖିତ 'ବହାରି ସ୍ଥାନ-ଇ-ଘୟବି ଗ୍ରନ୍ଥରୁ ଜଣାଯାଏ ଯେ, ରାଜା କଲ୍ୟାଣ ମଲ୍ଲ ରାଜା ତୋଦର ମଲ୍ଲଙ୍କର ପୁତ୍ର ଥିଲେ । ସେ ଓଡ଼ିଶାରେ ହାସିମ ଖାଁଙ୍କ ଅଧୀନରେ ଖ୍ରୀ.୧୬୦୬ ରେ କାର୍ଯ୍ୟ କରୁଥିଲେ । ସମସ୍ତ ବଙ୍ଗ, ବିହାର ଓ ଓଡ଼ିଶାରେ ସୁବାଦାର ଜାହାଙ୍ଗୀର ଖାଁଙ୍କର ମୃତ୍ୟୁ ପରେ ରାଜା କଲ୍ୟାଣ ମଲ୍ଲ ଅନ୍ୟାନ୍ୟ କେତେକ ମୋଗଲ କର୍ମଗ୍ରୀଙ୍କ ସହିତ ଓଡ଼ିଶାରୁ କାର୍ଯ୍ୟ ଛାଡ଼ି ରାଜମହଲ ଯାଇଥିଲେ । ଇସଲାମ୍ ଖାଁ ସେମାନଙ୍କୁ ନିଜ ନିଜ ସ୍ଥାନକୁ ଫେରିଯିବାକୁ କହିବାରୁ ଆଉ ସମସ୍ତେ ଫେରିଗଲେ, ମାତ୍ର ରାଜା କଲ୍ୟାଣ ମଲ୍ଲଙ୍କର ଫେରିବାରେ ବିଳମ୍ବ ହେଲା । ବାଟରେ ଆସୁଁ ଆସୁଁ ସେ ଦଳେ ଆଫଗାନମାନଙ୍କ ଦ୍ୱାରା ଆକ୍ରାନ୍ତ ହେଲେ; ମାତ୍ର ସେ ସାହସ ସହକାରେ ସେମାନଙ୍କୁ

ପରାଭୂତ କରି ସୁନାମ ଅର୍ଜନ କରି କଟକକୁ ଫେରି ହାସିମ ଖାଁଙ୍କ ସହିତ ଯୋଗ ଦେଇଥିଲେ । ଏଥିରେ ଇସଲାମ୍ ଖାଁ ସନ୍ତୁଷ୍ଟ ହୋଇ ଜାହାଙ୍ଗୀରଙ୍କୁ ଲେଖିବାରେ ତାଙ୍କର ପଦୋନ୍ନତି ହୋଇଥିଲା । ଓଡ଼ିଶାର ଗଭର୍ଣ୍ଣର ହାସିମ ଖାଁ କାଶ୍ମୀରର ଗଭର୍ଣ୍ଣର ନିଯୁକ୍ତ ହେବାରୁ ତାଙ୍କ ସ୍ଥାନରେ ରାଜା କଲ୍ୟାଣ ମଲ୍ଲ ସମ୍ରାଟ ଜାହାଙ୍ଗୀରଙ୍କ ଦ୍ୱାରା ଜୁଲାଇ ତାରିଖ ୬ ଖ୍ରୀ. ୧୬୧୧ରେ ନିଯୁକ୍ତ ହେଲେ । ସେ ସମ୍ରାଟଙ୍କଠାରୁ ସୁନାମ ଅର୍ଜନ ଓ ଓଡ଼ିଶାରେ ପ୍ରଭୁତ୍ୱ ସ୍ଥାପନ ପାଇଁ ମନସ୍ଥ କରି ଖୋରଧାର ରାଜା ପୁରୁଷୋତ୍ତମ ଦେବଙ୍କ ବିରୁଦ୍ଧରେ ସେହି ବର୍ଷ ଯୁଦ୍ଧ ଘୋଷଣା କଲେ । ରାଜା ପୁରୁଷୋତ୍ତମ ଦେବ ବଶ୍ୟତା ସ୍ୱୀକାର କରି ନିଜ କନ୍ୟାକୁ ସମ୍ରାଟଙ୍କ ପାଖକୁ ପଠାଇଲେ ଓ ତିନିଲକ୍ଷ ଟଙ୍କା ପେଶକିସ ଦେବାପାଇଁ ରାଜି ହେଲେ ଓ ଏଥିସହିତ ତାଙ୍କର ଅତ୍ୟୁତ୍କୃଷ୍ଟ ଶିସନାଗ ନାମକ ହାତୀ ଦେଇଥିଲେ । ରାଜା କଲ୍ୟାଣ ମଲ୍ଲ ରାଜକନ୍ୟା, ପେଶକସ ଓ ହାତୀ ଘେନି କଟକ ଫେରିଲେ ଓ ପରେ ସେ ସମସ୍ତ ସମ୍ରାଟଙ୍କ ପାଖକୁ ପଠାଇଦେଲେ (ପୃ. ୧୪୩-୪୫) । ତପରେ ଏହି ପୁସ୍ତକର ପୃ. ୧୬୦ର ବିବରଣୀରୁ ଜଣାଯାଏ ଯେ ''ଇସଲାମ୍ ଖାଁ ରାଜା କଲ୍ୟାଣ ମଲ୍ଲଙ୍କୁ ଓଡ଼ିଶାର ସୁବାଦାରିରୁ ଅନ୍ତର କରି ତାଙ୍କ ସ୍ଥାନରେ ସଜାଅତ୍ ଖାଁଙ୍କୁ ନିଯୁକ୍ତ କରିଥିଲେ ।'' ହେଲେ ପୃ ୨୧୯ରେ ମିର୍ଜା ନାଥନ ଲେଖିଛନ୍ତି ଯେ ''ଇସ୍‌ଲାମ୍ ଖାଁ ସମ୍ରାଟଙ୍କର ବିନା ଅନୁମୋଦନରେ ରାଜା କଲ୍ୟାଣ ମଲ୍ଲଙ୍କୁ ବହିଷ୍କୃତ କରିଥିବାରୁ ସେ ପୁନର୍ବାର ଓଡ଼ିଶାର ସୁବାଦାର ପଦରେ ନିଯୁକ୍ତ ହୋଇଥିଲେ ।''

'ଆକବରନାମା' ୩ୟ ଭାଗରେ ପୃ. ୮୧୨ ରେ ବର୍ଣ୍ଣିତ ଅଛି ଯେ ରାଜା ତୋଦର ମଲ୍ଲଙ୍କ ପୁତ୍ର କଲ୍ୟାଣ ଦାସ ଦାୟିତ୍ୱପୂର୍ଣ୍ଣ କାର୍ଯରେ ନିଯୁକ୍ତ ଥିଲେ ଓ ପୃ.୧୨୪୯ରେ ବର୍ଣ୍ଣିତ ଅଛି ଯେ ତୋଦରମଲ୍ଲଙ୍କ ପୁତ୍ର କଲ୍ୟାଣ ଦାସ ୧୦୦୦ ସୈନ୍ୟ ଓ ୫୦୦ ଘୋଡ଼ାର ମନସବ ପାଇ କାଳିଞ୍ଜର ଦୁର୍ଗର ଭାର ପାଇଥିଲେ ।

ତାଜୁକ-ଇ-ଜାହାଙ୍ଗୀରର ସମ୍ରାଟ ଜାହାଙ୍ଗିରଙ୍କ ଦବାର ତଳଲିଖିତ ବିବରଣଗୁଡ଼ିକ ଲିଖିତ ଅଛି ।

୧. ଖ୍ରୀ.୧୬୧୧ ମାର୍ଚ୍ଚ ୨୩ ତାରିଖରେ ରାଜା କଲ୍ୟାଣ ମଲ୍ଲଙ୍କ ଦ୍ୱାରା ବଙ୍ଗଦେଶରୁ ପ୍ରେରିତ ଉପଢୌକନଗୁଡ଼ିକ ସମ୍ରାଟଙ୍କ ଆଗରେ ରଖାଯାଇଥିଲା । (ପୃ.୧୯୨)

୨. ବଙ୍ଗ ସୁବାର ରାଜକର୍ମଚାରୀ ରାଜା କଲ୍ୟାଣ ମଲ୍ଲଙ୍କର ମନସବ ପଦବୀ ୧୦୦୦ ସୈନ୍ୟ ଓ ୫୦୦ଘୋଡ଼ାରୁ ୧୫୦୦ ସୈନ୍ୟ ଓ ୮୦୦ ଘୋଡ଼ାର ମନ୍‌ସବି ପଦବୀକୁ ଆମ୍ଭେ ବଢ଼ାଇ ଦେଇଥିଲୁଁ । (ପୃ.୧୯୯)

୩. ଇଲାମ ଖାଁଙ୍କ ସୁପାରିଶରେ ଆମ୍ଭେ ରାଜା କଲ୍ୟାଣ ମଲ୍ଲଙ୍କୁ ଓଡ଼ିଶା ସରକାର ଶାସକ ରୂପେ ନିଯୁକ୍ତ କଲୁଁ ଓ ତାଙ୍କର ମନସବିରେ ୨୦୦ ସୈନ୍ୟ ଓ ଘୋଡ଼ା ବଢ଼ାଇ ଦେଲୁଁ । (ପୃ.୨୦୨)

୪. ହିଃ. ୧୦୨୬ର ରମଜାନ ତା ୭ ରିଖ (ଖ୍ରୀ. ୧୬୧୭ ସେପ୍ଟେମ୍ବର ତା ୮ ରିଖ) ରେ ସମ୍ରାଟଙ୍କଠାରେ ଏହା ନିବେଦିତ ହୋଇଥିଲା ଯେ ରାଜା କଲ୍ୟାଣ ମଲ୍ଲ ସମ୍ରାଟଙ୍କୁ ଦେଖାକରିବା ପାଇଁ ଓଡ଼ିଶାରୁ ଆସିଅଛନ୍ତି । ମାତ୍ର ତାଙ୍କ ବିରୁଦ୍ଧରେ କେତେକ କଥା ସମ୍ରାଟଙ୍କର କର୍ଣ୍ଣଗୋଚର ହୋଇଥିବାରୁ ସେ ସବୁ ଅଭିଯୋଗର ସତ୍ୟାସତ୍ୟ ବୁଝିବା ପାଇଁ ସ୍ୱୟଂ ସମ୍ରାଟ ଆସଫ ଖାଁଙ୍କୁ ଆଦେଶ ଦେଲେ । (ପୃ.୩୮୯)

୫. ଆସଫ ଖାଁଙ୍କ ଅନୁସନ୍ଧାନରେ ରାଜା କଲ୍ୟାଣ ମଲ୍ଲ ନିର୍ଦ୍ଦୋଷ ଥିବାର ପ୍ରମାଣିତ ହେବାରୁ ସମ୍ରାଟଙ୍କୁ ସାକ୍ଷାତ କରି ୧୦୦ ମୋହର ଓ ୧୦୦୦ ଟଙ୍କା ଭେଟିଦେଲେ । ଏହାଛଡ଼ା ୮୦ଟି ମୁକ୍ତା ଓ ୨ଟି ମାଣିକ୍ୟ ଯୁକ୍ତ ଗୋଟିଏ ମୁକ୍ତାର ହାର, ମୁକ୍ତା ଓ ମାଣିକ୍ୟର ବାହୁଟି ଓ ରତ୍ନଖଚିତ ଗୋଟିଏ ସୁନାର ହାତୀ ଉପଢୌକନ ରୂପେ ସମ୍ରାଟଙ୍କ ଆଗରେ ଥୋଇଲେ । (ପୃ.୩୯୦)

୬. ତୋଦର ମଲ୍ଲ ପୁତ୍ର ରାଜା କଲ୍ୟାଣ ମଲ୍ଲ ଓଡ଼ିଶାରୁ ଆସିଥିଲେ । ତାଙ୍କର କେତେକ ଅନ୍ୟାୟ କାର୍ଯ୍ୟ ପାଇଁ ତାଙ୍କୁ କେତେକ ଦିନ ସାକ୍ଷାତ ପାଇବାର ସୁବିଧା ଦିଆଯାଇ ନଥିଲା । ବିଗ୍ଚରରେ ତାଙ୍କର ସାଧୁତା ପ୍ରମାଣିତ ହେବାରୁ ତାଙ୍କୁ ପୋଷାକ ଓ ଘୋଡ଼ା ଦେଇ ସମ୍ମାନ ଦେଖାଇଥିଲେ ଓ ମହବତ୍ ଖାଁଙ୍କ ସହିତ ବଙ୍ଗସ (କାବୁଲ)ରେ କାର୍ଯ୍ୟ କରିବା ପାଇଁ ନିଯୁକ୍ତ କରିଥିଲେ । (ପୃ. ୪୦୨)

'ବହାରି ସ୍ଥାନ-ଇ-ଘଯବି' ରୁ ମିଳୁଥିବା ଓଡିଶାରେ ତାଙ୍କ ପୁନର୍ନିଯୁକ୍ତି କଥା ତାଜୁକ-ଇ-ଜାହାଙ୍ଗୀରରେ ମିଳେ ନାହିଁ । ଯାହାହେଉ ୧୬୧୧ ଜୁଲାଇ ଠାରୁ ୧୬୧୭ ଜୁଲାଇ ଯାଏ ଯେ ସେ ଓଡ଼ିଶାର ସୁବାଦାର ଥିଲେ, ଏକଥା ଉକ୍ତ ଦୁଇଗୋଟି ଫରାସୀ ଗ୍ରନ୍ଥରୁ ପ୍ରମାଣିତ ହେଉଅଛି ।

ମାଦଳାପାଞ୍ଜିରେ ବର୍ଣ୍ଣିତ, "୧୮ ଅଙ୍କେ ରାଜା କଲ୍ୟାଣଙ୍କୁ ବେଢ଼ି ମାଇଲେ" କଥାରୁ ଅନୁମୋଦନ ସମସାମୟିକ ଗ୍ରନ୍ଥରୁ ପ୍ରମାଣିତ ହେଉନାହିଁ । ବୋଧହୁଏ ଇସଲାମ୍ ଖାଁଙ୍କର ଚକ୍ରାନ୍ତରେ ରାଜା କଲ୍ୟାଣ ମଲ୍ଲ ଓଡ଼ିଶା ଛାଡ଼ି ଦିଲ୍ଲୀ ଗ୍ଚଲିଯିବାରୁ ତାଙ୍କର ପଦତ୍ୟାଗକୁ ମୃତ୍ୟୁସଦୃଶ ମାଦଳାପାଞ୍ଜିର ଲେଖକ ବର୍ଣ୍ଣନା କରିଅଛନ୍ତି ।

ପୁରୀ ଗେଜେଟିଆର୍ ପୃ. ୩୬ରେ ଲେଖାଅଛି --

**Hasim Baig was succeeded in 1610 by Raja Kalyan of Jesalmir whose niece had been married to Jahangir before he became emperor.**

ଗେଜେଟିଆରର ଏହି ଲେଖାରୁ ମନେହୁଏ ଯେ ସେଥିରେ ରାଜା ତୋଦର ମଲ୍ଲଙ୍କ ପୁତ୍ର ରାଜା କଲ୍ୟାଣ ମଲ୍ଲଙ୍କୁ ଜୈସଲମିରର କଲ୍ୟାଣ ସିଂହଙ୍କ ସହିତ ଅଭିନ୍ନ ବ୍ୟକ୍ତିରୂପେ ଗୃହୀତ ହୋଇଛି । ଏହି ଭୁଲ ମଧ୍ୟ ତାଜୁକ-ଇ-ଜାହାଙ୍ଗିରରୁ ଅନୁବାଦକମାନେ ବିଷୟ ସୂଚୀ (Index)ରେ କରିଅଛନ୍ତି । 'ତାଜୁକ'ର ପୃ. ୩୨୫-୨୬ଷ୍ଠା (ଅନୁବାଦ)ରେ ଲେଖାଅଛି ଯେ ସମ୍ରାଟ ଜାହାଙ୍ଗୀର ଜୈସଲମିର କଲ୍ୟାଣଙ୍କୁ ରାଜଟୀକା ଓ ରାଉଳ ଉପାଧି ଦେଇଥିଲେ । ମାତ୍ର ରାଜା କଲ୍ୟାଣ ମଲ୍ଲଙ୍କର ବୃତ୍ତାନ୍ତ ଉକ୍ତ ପୁସ୍ତକର ୧୯୨-୧୯୯, ୨୦୨, ୩୮୯-୯୦ ଓ ୪୦୨ ପୃଷ୍ଠାରେ ବର୍ଣ୍ଣିତ ଅଛି । ଏଣୁ ପୁରୀ ଗେଜେଟିଅରର ଲେଖା ଭ୍ରମାତ୍ମକ । କେହି କେହି ଲେଖକ ରାଜା କଲ୍ୟାଣ ମଲ୍ଲଙ୍କୁ ରାଜା ମାନସିଂହଙ୍କର ପୁତ୍ର କଲ୍ୟାଣ ସିଂହ ସହିତ ଏକ ଥିବାର ଲେଖିଛନ୍ତି । ବାହାରି-ସ୍ଥାନ-ଇ ଘୟବି ଗ୍ରନ୍ଥରେ ରାଜା ମାନସିଂହଙ୍କର ପୁତ୍ର କଲ୍ୟାଣ ସିଂହର ବୃତ୍ତାନ୍ତ ମିଳେ । ସେଥିରେ ତାଙ୍କର ନାମ ପୂର୍ବେ ରାଜୋପାଧି ନାହିଁ । ବହାରି ସ୍ଥାନ-ଇ-ଘୟବି ଗ୍ରନ୍ଥରୁ ଦେଖାଯାଏ ଯେ ରାଜା ମାନସିଂହଙ୍କର ପ୍ରଧାନ ମହିଷୀ ଗୌରାରାଣୀ ରାଜା ମାନସିଂହଙ୍କ ପୁତ୍ର କଲ୍ୟାଣ ସିଂହଙ୍କ ସହିତ ରୋଟାସ ଦୁର୍ଗରୁ ଦିଲ୍ଲୀକୁ ଫେରିଥିଲେ । ଏହି ଗୌରା ରାଣୀଙ୍କର ନାମ ମାଦଳାପାଞ୍ଜିରେ ମଧ୍ୟ ଅଛି । ସମସାମୟିକ ଏହି ତିନିଜଣ କଲ୍ୟାଣ ନାମଧାରୀ ବ୍ୟକ୍ତିଙ୍କର ପରିଚୟ ଦେବାକୁ ଯାଇ ସମସ୍ତେ ଗୋଳମାଳରେ ପଡ଼ିଅଛନ୍ତି । କାରଣ ତୁଇଟିଯାକ ଗ୍ରନ୍ଥରେ ରାଜା କଲ୍ୟାଣଙ୍କର ନାମ ଶେଷରେ ମଲ୍ଲ ସଂଜ୍ଞା ଲିଖିତ ନାହିଁ । ସମସାମୟିକ ଲେଖାରୁ କେବଳ କାଣିଆଡ଼ ଲିପିରେ ମଲ୍ଲ ସଂଜ୍ଞା ଦେଖାଯାଏ ।



# ଓଡ଼ିଶାର କେଶରୀ ବଂଶ
# ବା
# କୋଶଳ ଓ ଉତ୍କଳର ସୋମକୁଳୀ ରାଜବଂଶ

(୧) ବଂଶାବଳୀ

ମହାଭବଗୁପ୍ତ ଉଦ୍ୟୋତ କେଶରୀଙ୍କ ରାଜତ୍ୱ ସମୟରେ ଲିଖିତ ବାଲିଝର ତାମ୍ରଶାସନର ଓ ଭୁବନେଶ୍ୱର ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପି ସାହାଯ୍ୟରେ ତଳୋକ୍ତ କୁଷିନାମା ମିଳେ ଓ ଏଥିସହିତ ସନ୍ଧ୍ୟାକର ନନ୍ଦୀକୃତ 'ରାମଚରିତଂ' ଗ୍ରନ୍ଥରୁ ମିଳୁଥିବା କର୍ଣ୍ଣକେଶରୀ ନାମ ଶେଷରେ ଦିଆଯାଇଛି ।

୧ -- ଶିବଗୁପ୍ତଙ୍କ ପୁତ୍ର ଜନମେଜୟ ମହାଭବଗୁପ୍ତ ୧ମ ।

| କୋଶଳ ଶାଖା (ବାଲିଝର ତାମ୍ର ଶାସନ) | ଉତ୍କଳ ଶାଖା ବ୍ରହ୍ମେଶ୍ୱର ଲିପି |
|---|---|
| ୨ । ଯଯାତି ମହାଶିବଗୁପ୍ତ ୨ୟ-- | ୨ । ବିଚିତ୍ର ବୀର |
| ୩ । ଭୀମରଥ ମହାଭବ ଗୁପ୍ତ ୨ୟ-- | ୩ । ଅଜ୍ଞାତ |
| ୪ । ଧର୍ମରଥ ମହାଶିବ ଗୁପ୍ତ ୩ୟ -- | ୪ । ଅଭିମନ୍ୟୁ |

କୋଶଳ ଓ ଉତ୍କଳ ରାଜଗଣ

୫ । ନଘୁଷ ମହାଭବ ଗୁପ୍ତ ୩ୟ--

୬ । ଚଣ୍ଡୀହର ବା ଯଯାତି ୨ୟ ମହାଶିବ ଗୁପ୍ତ ୪ର୍ଥ--

୭ । ଉଦ୍ୟୋତ କେଶରୀ ମହାଭବ ଗୁପ୍ତ ୪ର୍ଥ--

୮ । କର୍ଣ୍ଣ କେଶରୀ

ଏହି ବଂଶ ତାଲିକାଟି ଡାକ୍ତର ଭଣ୍ଡରକରଙ୍କ ତାଲିକା ଠାରୁ ପୃଥକ୍ । ସେ ଜଟେସିଙ୍ଗା ଡୁଙ୍ଗରିର ତାମ୍ରଶାସନୋକ୍ତ ଯଯାତି ୨ୟଙ୍କୁ ବଂଶର ସ୍ଥାପୟିତା ବୋଲି ଗ୍ରହଣ କରିଅଛନ୍ତି । (୧) (୨) ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟଙ୍କ ଲିଖିତ ଓଡ଼ିଶାର ଇତିହାସ ଗ୍ରନ୍ଥ ସମାଲୋଚନା କରିବାବେଳେ ସେ ଲେଖିଅଛନ୍ତି -

"ବନ୍ଦ୍ୟୋପାଧ୍ୟୟ ମହାଶୟ କିନ୍ତୁ ଜନମେଜୟଙ୍କ ପିତା ଶିବଗୁପ୍ତଙ୍କୁ ବଂଶର ପ୍ରଥମ ରାଜା ବୋଲି ନ ଧରି ଜନମେଜୟ ମହାଭବଗୁପ୍ତଙ୍କୁ ପ୍ରଥମ ରାଜା ବୋଲି ସ୍ୱୀକାର କରିଅଛନ୍ତି । ଏହି ସଂପର୍କରେ ଜଟେସିଙ୍ଗା ଡୁଙ୍ଗରି ତାମ୍ରଶାସନର ମହାଭବଗୁପ୍ତଙ୍କ ବଂଶଧର 'ମହାଶିବଗୁପ୍ତ ଯଯାତିଙ୍କର ଗୋଟିଏ ବିରୁଦ ପ୍ରତି ସେ ଆଦୌ ଦୃଷ୍ଟି ଦେଇନାହାନ୍ତି । ମହାଶିବଗୁପ୍ତ ଯଯାତି ଏଥିରେ ନିଜକୁ 'ସ୍ୱଭୁଜୋପାର୍ଜିତ-ତ୍ରିକଳିଙ୍ଗାଧିପତି' ଆଖ୍ୟାରେ ଭୂଷିତ କରିଚନ୍ତି । ଏଥିରୁ ସ୍ପଷ୍ଟ ଜଣାଯାଉଚି ଯେ ସେ ତ୍ରିକଳିଙ୍ଗର ପ୍ରଥମ ରାଜା ଥିଲେ । ଏଣୁ ତାଙ୍କୁ ମହାଭବଗୁପ୍ତଙ୍କର ପିତା ବୋଲି ସ୍ଥିର କରିବା ପରିବର୍ତ୍ତେ ପୁତ୍ର ବୋଲି ଧରି ସେ ଭ୍ରମରେ ପଡ଼ିଅଛନ୍ତି । ଏ କଥା ମଧ୍ୟ ଠିକ୍ ଯେ ପିତା ମହାଭବଗୁପ୍ତ ଓ ପୁତ୍ର ମହାଶିବଗୁପ୍ତ ଉଭୟଙ୍କର ରାଜଚକ୍ରବର୍ତ୍ତୀ ଉପାଧି ଏହି ତାମ୍ର ଶାସନରୁ ମିଳେ । ମହାଶିବଗୁପ୍ତ ଯଯାତି ତ୍ରିକଳିଙ୍ଗ ରାଜବଂଶର ସ୍ଥାପୟିତା । ତାଙ୍କ ପିତା ମଧ୍ୟ ଅନ୍ୟତ୍ର ଏକ ରାଜାଧିରାଜ ଥିଲେ । 'ସ୍ୱଭୁଜୋପାର୍ଜିତ ତ୍ରିକଳିଙ୍ଗାଧିପତି'ର ଶେଷରେ କର୍ତ୍ତୃବାଚକ ସମାପ୍ତି ଅଛି । ଏହି ବିଶେଷତ୍ୱ ପ୍ରତି କେହି ଦୃଷ୍ଟି ଦେଇନାହାନ୍ତି, ମାତ୍ର ଏଥିରୁ ଜଣାଯାଉଅଛି ଯେ ଏହା ମହାଶିବଗୁପ୍ତଙ୍କର ବିଶେଷଣ ବିଶେଷ । ପ୍ରବନ୍ଧଲେଖକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମୁଜମଦାରଙ୍କ ପାଠ ସହିତ ପ୍ରବନ୍ଧରେ ମୁଦ୍ରିତ ତାମ୍ରଶାସନର ଅନୁଲିପି ଏକ ଥିବାର ମଧ୍ୟ ଦେଖାଯାଉଅଛି ।"

ପକ୍ଷାନ୍ତରେ, ଦେଖାଯାଏ ଯେ ଯଯାତିଙ୍କ ୨୪ ଓ ୨୮ ସଂବତ୍‌ର ଭୀମରଥଙ୍କ ୩ ସଂବତ୍‌ର ଓ ଉଦ୍ୟୋତକେଶରୀଙ୍କ ୪ ଓ ୧୮ ସଂବତ୍‌ର ଲିପିସମୂହରେ ବର୍ଣ୍ଣିତ ଅଛି ଯେ ଜନମେଜୟ ରାଜବଂଶର ସ୍ଥାପୟିତା ଥିଲେ । ଡାକ୍ତର ଭଣ୍ଡରକର ଏହି ବିଷୟ ପ୍ରତି ଦୃଷ୍ଟି ଦେଇନାହାନ୍ତି । ରାଜବଂଶର ତତ୍‌କାଳୀନ ବଂଶଧରମାନଙ୍କର ଲିପିରେ ଜନମେଜୟ ମହାଭବଗୁପ୍ତ ବଂଶସ୍ଥାପୟିତା ବୋଲି ବର୍ଣ୍ଣିତ ଥିବାରୁ ମୋର ମନେହୁଏ ଯେ ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟ ଜନମେଜୟଙ୍କୁ ବଂଶର ଆଦି ପୁରୁଷ ରୂପେ ଗ୍ରହଣ କରି ଠିକ୍ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ମାତ୍ର ଭଣ୍ଡରକର 'ସ୍ୱଭୁଜୋପାର୍ଜିତ ତ୍ରିକଳିଙ୍ଗାଧିପତି'

(୧) List of Inscription of Northern India. p. 403.

(୨) Indian Antiquary, 1932. p.241.

ବିରୁଦ ଉପରେ ଯେଉଁ ଯୁକ୍ତି କରିଚନ୍ତି, ତାହା ତଳୋକ୍ତ ବିଗ୍ଚରରୁ ଅଗ୍ରାହ୍ୟ ବୋଲି ପ୍ରମାଣିତ ହେଉଅଛି ।

ଆଜିଯାଏ ପ୍ରକାଶିତ ସୋମକୁଳୀ ରାଜାମାନଙ୍କ ତମ୍ବପଟା ଓ ଶିଳାଲିପିର ସଂଖ୍ୟା ୨୪ । ବାଲିଝରି ଓ ବ୍ରହ୍ମେଶ୍ୱର ଶିଳାଲିପି ବଂଶତାଲିକା ଅନୁସାରେ ଏଗୁଡ଼ିକ ତଳେ ପର୍ଯ୍ୟାୟକ୍ରମେ ଦିଆଗଲା । ପ୍ରତ୍ୟେକ ରାଜାଙ୍କ ନାମ ସହିତ ଲିପିର ସଂବତ୍ ଶିଳ୍ଟି କେଉଁ ସ୍ଥାନରୁ ପ୍ରଦତ୍ତ ହୋଇଥିଲା ଓ ଲିପିରେ ମିଳୁଥିବା ସାନ୍ଧିବିଗ୍ରହୀଙ୍କର ନାମ ଦିଆଯାଇଅଛି । ସର୍ବତ୍ର ଦେଖାଯାଏ ଯେ, ପୂର୍ବକାଳରେ ସାନ୍ଧିବିଗ୍ରହୀ କର୍ମଟି ବଂଶାନୁଗତ । ଏହି ରାଜବଂଶର ଲିପିରୁ ମିଳୁଥିବା ସାନ୍ଧିବିଗ୍ରହୀ ନାମଗୁଡ଼ିକ ରାଜାମାନଙ୍କର ପୂର୍ବାପର ନାମ ସ୍ଥିର କରିବାରେ ବିଶେଷ ସାହାଯ୍ୟ କରୁଅଛି । ପଣ୍ଡିତ ବିନାୟକ ମିଶ୍ର ବାଲିଝର ତମ୍ବପଟାର ପ୍ରବନ୍ଧରେ ଓ ତାଙ୍କ 'ଓଡ଼ିଶାର ରାଜବଂଶ' (Dynastics of Medeaval Orissa) ପୁସ୍ତକରେ ଏ ବିଷୟରେ ଆଲୋଚନା କରିଅଛନ୍ତି । ପ୍ରତ୍ୟେକ ସାନ୍ଧିବିଗ୍ରହୀଙ୍କର ନାମ ମୁଁ ମୁଦ୍ରିତ ପ୍ରତିଲିପି ସହିତ ମିଳାଇ ଦେଖିଅଛି । ପୂର୍ବୋକ୍ତ ବଂଶ-ତାଲିକା ଏହି ସମସ୍ତ ଲିପିଗୁଡ଼ିକର କ୍ରମ ଉପରେ ଲିଖିତ ହୋଇଚି ।

ଜନମେଜୟଙ୍କ ତାମ୍ର ଶାସନଗୁଡ଼ିକର ସାନ୍ଧିବିଗ୍ରହୀ ଧାରଦତ୍ତ ସୁତ ମଲ୍ଲଦତ୍ତ । ତାଙ୍କ ୩୧ ସଂବତର ତାମ୍ରଶାସନରେ ମଲ୍ଲଦତ୍ତଙ୍କର ରାଣକ ଉପାଧି ଅଛି । ତଳୋକ୍ତ ୧୦,୧୧,୧୩ ଓ ୧୪ ଶାସନଗୁଡ଼ିକ ସାନ୍ଧିବିଗ୍ରହୀ ରାଣକ ଧାରଦତ୍ତଙ୍କ 'ଅଭିମତରେ' ପ୍ରଦତ୍ତ ହୋଇଥିଲା । ଯଯାତି ୧ମ ଅଙ୍କ ୨୮ ସଂବତ୍ ଲିପିରେ ସାନ୍ଧିବିଗ୍ରହୀ ସିଂହ ଦତ୍ତଙ୍କର ନାମ ମିଳେ; ସେ ମଧ୍ୟ ଭୀମରଥଙ୍କର ସାନ୍ଧିବିଗ୍ରହୀ ଥିଲେ । ଏଥିରୁ ମନେହୁଏ ଯେ, ମଲ୍ଲଦତ୍ତ ନିଜ ପିତା ଧାରଦତ୍ତଙ୍କ ଜୀବିତବସ୍ଥାରେ ପ୍ରାଣ ହରାଇଥିଲେ । ତେଣୁ ଯଯାତିଙ୍କ ଶାସନଗୁଡ଼ିକ ମହାକ୍ଷପଟଳିକଙ୍କ ଦ୍ୱାରା ସାନ୍ଧିବିଗ୍ରହୀଙ୍କ ଅଭିମତରେ ଲିଖିତ ହୋଇଥିଲା * । ଯଯାତି ୨ୟଙ୍କ ତାମ୍ରଶାସନରୁ ଦେଖାଯାଏ ଯେ, ସାନ୍ଧିବିଗ୍ରହୀ ରାଣକ ରୁଦ୍ରଦତ୍ତଙ୍କ ପିତାର ନାମ ଥିଲା ଦେବଦତ୍ତ । ଦେବଦତ୍ତଙ୍କ ପିତାର ନାମ ହର୍ଷଦତ୍ତ ଓ ଭାଇର ନାମ ସିଂହ ଦତ୍ତ । ଏହି ତାଲିକାରୁ ମନେହୁଏ ଯେ ଧାରଦତ୍ତ ବହୁକାଳ ବଞ୍ଚିଥିଲେ ଓ ତାଙ୍କର ଜୀବିତାବସ୍ଥାରେ ସେ ପୁଅ ଓ ନାତି ହରାଇଥିଲେ । ରୁଦ୍ରଦତ୍ତ, ହର୍ଷଦତ୍ତଙ୍କ ନାତି, ସିଂହଦତ୍ତଙ୍କ ପୁତୁରା ଓ ଦେବଦତ୍ତଙ୍କ ପୁତ୍ର ଥିଲେ । ସାନ୍ଧିବିଗ୍ରହୀମାନଙ୍କ ବଂଶ ତାଲିକା ତଳେ ଦିଆଗଲା ।

---

* ଡାକ୍ତର ଦୀନେଶ ଚନ୍ଦ୍ର ସରକାର ଲେଖିଅଛନ୍ତି (ଇଃହଃକ୍ୱା ଭା ୨୦ ପୃ. ୭୮-୭୯) ୧୦,୧୧,୧୩ ଓ ୧୪ ଲିପିର ସାନ୍ଧିବିଗ୍ରହୀ ଧାରଦତ୍ତ ୨ୟ, ଧାରଦତ୍ତ ୧ମଙ୍କର ନାତି ଥିଲେ । ମାତ୍ର ଏହି ଲିପିଗୁଡ଼ିକ ସାନ୍ଧିବିଗ୍ରହୀଙ୍କର ଅଭିମତରେ ଲିଖିତ ହୋଇଥିବାରୁ ମୁଁ ତାଙ୍କୁ ଧାରଦତ୍ତ ୧ମ ବୋଲି ଗ୍ରହଣ କରିଅଛି ।




ରୁଦ୍ର ଦତ୍ତ ନଘୁଷ ମହାଭବଗୁପ୍ତ ୩ୟ, ଯଯାତି ୨ୟ, ମହାଶିବଗୁପ୍ତ ୪ର୍ଥ ଓ ଉଦ୍ୟୋତ କେଶରୀ ମହାଭବଗୁପ୍ତ ୪ର୍ଥ, ଏହି ତିନି ଜଣ ରାଜାଙ୍କର କର୍ମଚାରୀ ଥିବାରୁ ମନେହୁଏ ଯେ, ସେ ଅଳ୍ପ ବୟସରେ ଚାକିରୀ ପାଇ ଧାରଦତ୍ତ ସଦୃଶ ଦୀର୍ଘଜୀବୀ ଥିଲେ ।

ଜନମେଜୟ ମହାଭବଗୁପ୍ତ ୧ମ, ଭୀମରଥ ମହାଭବଗୁପ୍ତ ୨ୟ ଓ ଯଯାତି ୩ୟ, ମହାଶିବ ଗୁପ୍ତ ୪ର୍ଥ, ଏହି ତିନିଜଣ ରାଜାଙ୍କର ତମ୍ରପଟାଗୁଡ଼ିକ ୩ୟ ସଂବତ୍‌ରେ ପ୍ରଦତ୍ତ ହୋଇଥିଲା । ଜନମେଜୟଙ୍କର ଏହି ୩ୟ ସଂବତ୍‌ର ତମ୍ରପଟାରେ ତ୍ରିକଳିଙ୍ଗାଧିପତି ବିରୁଦ ଅଛି । ମାତ୍ର ତାଙ୍କ ପିତା ଶିବଗୁପ୍ତଙ୍କର ତ୍ରିକଳିଙ୍ଗାଧିପତି ପଦବୀ ନଥିବାରୁ ମନେହୁଏ ଯେ, ଜନମେଜୟ ଏହି ପଦବୀ ବଂଶଧର ସୂତ୍ରରେ ନ ପାଇ ନିଜେ ଅର୍ଜନ କରିଥିଲେ । ଜନମେଜୟଙ୍କର ୮ମ ସଂବତ୍ ପୂର୍ବର ତମ୍ରପଟାଗୁଡ଼ିକରେ ତାଙ୍କ ପିତାଙ୍କର ବିରୁଦ କେବଳ ଶିବଗୁପ୍ତ ଥିବାର ଦେଖାଯାଏ । ମାତ୍ର ତଲୋକ୍ତ ଷଷ୍ଠଠାରୁ ଷୋଡ଼ଶ ଓ ବିଂଶସଂଖ୍ୟକ ଲିପିଗୁଡ଼ିକରେ ତ୍ରିକଳିଙ୍ଗାଧିପତି ବିରୁଦଟି ପ୍ରଥମେ ଦାତାଙ୍କ ବଂଶ ପରିଚୟରେ ଓ ପରେ ଦାତାଙ୍କର ରାଜତ୍ୱ ସଂବତ୍‌ରେ ଦୁଇଥର ଲିଖିତ ଅଛି । ଦ୍ୱାଦଶଠାରୁ ଷୋଡ଼ଶ ଲିପି ଗୁଡ଼ିକରେ ଏହି ବିରୁଦଟି ଦାତା ଓ ତାଙ୍କ ପିତାଙ୍କ ନାମ ପୂର୍ବେ ଲିଖିତ ଥିବାର ଦେଖାଯାଏ । ଅଷ୍ଟାଦଶ ସଂଖ୍ୟକ ଲିପିରେ କେବଳ ଦାତାଙ୍କ ନାମ ପୂର୍ବେ ଏହି ବିରୁଦ ଅଛି ଓ ଊନବିଂଶ ସଂଖ୍ୟକ ଲିପିରେ ତ୍ରିକଳିଙ୍ଗାଧିପତି ବିରୁଦଟିରେ 'ସ୍ୱଭୁଜୋପାର୍ଜିତ' ବିଶେଷଣଟି ଲିଖିତ ଅଛି । ଏଇ ଲିପିର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମସ୍ତ ଲିପିରେ ତ୍ରିକଳିଙ୍ଗାଧିପତି ବିରୁଦର କୌଣସି ବିଶେଷଣ ନ ଥିବାରୁ ଏଇ ଏକମାତ୍ର ଲିପିରେ ମଳୁଥିବା ଏଇ ବିଶେଷଣଟିର ପ୍ରକୃତ ଅର୍ଥ ସ୍ପଷ୍ଟ ବୁଝାଯାଉନାଇ । ଏଣୁ ଏଇପ୍ରକାର ଲିପି ଆହୁରି କେତୋଟି ନ ମିଳିବା ଯାଏ ଏଇ ବିଶେଷଣର ପ୍ରକୃତ ଅର୍ଥ କରାଯାଇ ନପାରେ ।

## ସୋମକୁଳୀ ବା କେଶରୀ ବଂଶ ରାଜାମାନଙ୍କ ପରିକ୍ରମା

| ରାଜାମାନଙ୍କର ନାମ | ଲିପି ସଂଖ୍ୟା | ଲିପିର ସଂବତ୍ | ସ୍ଥାନ | ସାନ୍ଧିବିଗ୍ରହୀର ନାମ | କେଉଁଠାରେ ମୁଦ୍ରିତ |
|---|---|---|---|---|---|
| ୧.ଶିବଗୁପ୍ତଦେବ | ୧ | ୩ | ସୁବର୍ଣ୍ଣପୁର | | ଏପିଗ୍ରାଫିଆଇଣ୍ଡିକା |
| ପାଦନୁଧ୍ୟାତ ତ୍ରିକଳିଙ୍ଗାଧିପତିମହା | | | | | ଭା୧୧ ପୃ ୯୪ |
| ଭବଗୁପ୍ତରାଜଦେବ | | | | | |
| ଶ୍ରୀ ଜନମେଜୟ ଦେବ | | | | ଧାରଦତ୍ତ ସୁତ | ଏସିଆଟିକ୍ ସୋସାଇଟି ପତ୍ରିକା, ଭା୧ |
| ୧.ଜନମେଜୟ | ୨ | ୬ | ମୁରସୀମ | ମଲ୍ଲ(ଦତ୍ତ) | (୧୯୦୫) ପୃ ୧୨ |
| (ଚାଲିଛି) | ୩ | ୬ | | | ଏ.ଇ.ଭା୩ ପୃ ୩୪୧ |
| | ୪ | ୬ | | ,, | ଇଣ୍ଡିଆନ୍ ହିଷ୍ଟୋରିକାଲ |
| | | | | କ୍ବାଟରର୍ଲି ଭା୨୦ | ପୃ.୨୪୧ |
| | ୫ | ୮ | ,, | | ଏ.ଇ.ଭା ୮ପୃ.୧୪୧ |
| | ୬ | ୧୭ | ଆରାମ | | |
| | ୭-୯ | ୩୧ | ବିଜୟ କଟକ | ,, | ଏ.ଇ.ଭା୩ପୃ.୩୧୭ |
| | ୧୦ | ୩୪ | ସୁବର୍ଣ୍ଣପୁର | ଧାରଦତ୍ତ | ଇ.ହି.କ୍ବା.ଭା୨୦.ପୃ.୨୪୭ |
| ୨.ମହାଭବଗୁପ୍ତରାଜ | ୧୧ | ୮ | ବିନୀତପୁର | ଧାରଦତ୍ତ | ଏ.ସୋ.ପ.ଭା୧.ପୃ.୧୪ |
| ଦେବପଦାନୁଧ୍ୟାୟୀ | ୧୨ | ୯ | | | ଏ.ଇ.ଭା ୩ ପୃ୩୫୧ |
| ମହାଶିବ ଗୁପ୍ତରାଜଦେବ | ୧୩ | ୧୫ | ,, | | ଏ.ଇ.ଭା୧୧ପୃ.୯୬ |
| ଯଯାତି | ୧୪ | ୨୪ | ଯଯାତି ନଗର | ,, | ଏ.ସୋ.ପ.ଭା୧ପୃ୧୬ |

| | | | | | |
|---|---|---|---|---|---|
| | ୧୫ | ୨୮ | | ସିଂହଦତ୍ତ | ଏ.ସୋ.ପ.ଭା୧ପୃ୧୯ |
| ୩- ମହାଶିବଗୁପ୍ତ ରାଜଦେବ | ୧୬ | ୩ | | | ଏ.ଇ.ଭା ୩ପୃ୩୫୬ |
| ପାଦାନୁଧ୍ୟାତ ମହାଭବ | ୧୭ | ୧୩ | | | ଏ.ଇ.ଭା ୪ପୃ୨୫୮ |
| ଗୁପ୍ତରାଜଦେବ ଭୀମରଥ | | | | | |
| ୪-ମହାଶିବଗୁପ୍ତ ୩ୟ ଧର୍ମରଥ | | | | | |
| ୫-ମାତା ପିତୃପାଦାନୁଧ୍ୟାତ | ୧୮ | ୧୧ | କେଶରକେଲ୍ଲା | ଦେବଦତ୍ତ ପୁତ୍ର | ଏ.ଇ.ଭା୨୨ ପୃ.୧୩୫ |
| ମହାର୍ଭବ ଗୁପ୍ତ ରାଜଦେବ | | | ବିଜୟ କଟକ | ରୁଦ୍ରଦତ୍ତ | |
| ୬- ମହାଭବ ଗୁପ୍ତ ପାଦାନୁଧ୍ୟାତ | ୧୯ | ୩ | ସୁବର୍ଣ୍ଣପୁର | ହର୍ଷଦତ୍ତର ନାତି | ବିହାର ଓ ଓଡ଼ିଶା |
| ମହାଶିବଗୁପ୍ତ ଯଯାତି - ଏହି | | | | ସିଂହଦତ୍ତର ପୁତ୍ରରା | ଅନୁସନ୍ଧାନ ସମିତିର ପତ୍ରିକା |
| ଶାସନରେ ସ୍ୱଭୂଜୋପାର୍ଜିତ | | | | ରୁଦ୍ରଦତ୍ତ | ଭା୨ |
| ତ୍ରିକଳିଙ୍ଗାଧିପତି ବିରୁଦ ଅଛି | | | | | |
| ୭- ମହାଶିବଗୁପ୍ତ ରାଜ | ୨୦ | ୪ | ଯଯାତିନଗର | ରୁଦ୍ରଦତ୍ତ | ଏକ୍ସଭା୧୭ ପୃ.୧୫ |
| ଦେବ ପାଦାନୁଧ୍ୟାତ | ୨୧ | -- | | -- | ଏକ୍ସ ଭା୧୫ ପୃ.୨୦୯ |
| ମହାଭବଗୁପ୍ତ ରାଜଦେବ | ୨୨ | ୫ | | | ଏ.ଇ.ଭା ୧୩ |
| ଉଦ୍ୟୋତକେଶରୀ | ୨୩ | ୧୮ | | -- | ଏ.ଇ.ଭା୧୩ |
| ରାଜଦେବ | ୨୪ | ୧୮ | | | ଏ.ସୋ.ପ.୧୮୩୮ ଭା ୭ ପୃ.୫୫୮ |
| | ୨୫ | | | | ଭକ୍ତି ଭାଗବତ ମହାକାବ୍ୟ |
| ୮- କର୍ଣ୍ଣକେଶରୀ | ୨୬ | | | | ରାମଚରିତଂ |

# ଓଡ଼ିଶାର ତିନୋଟି ପ୍ରସିଦ୍ଧ ମନ୍ଦିରର ନିର୍ମାଣକାଳ

ଓଡ଼ିଶାର ନାନା ସ୍ଥାନରେ ବହୁ ମନ୍ଦିର ଅଛି । ଏକା ଭୁବନେଶ୍ୱରରେ ଏତେ ମନ୍ଦିର ଏକତ୍ର ଅଛି ଯେ ସେଥିପାଇଁ ଭୁବନେଶ୍ୱରକୁ 'ମନ୍ଦିରାରଣ୍ୟ' ବା 'ମନ୍ଦିର ନଗର' ବୋଲି ଲୋକେ ଆଖ୍ୟା ଦେଇଛନ୍ତି । ଭୁବନେଶ୍ୱରର ଏହିସବୁ ମନ୍ଦିରଗୁଡ଼ିକ ମଧ୍ୟରୁ କେବଳ ବ୍ରହ୍ମେଶ୍ୱର, ମେଘେଶ୍ୱର ଓ ଅନନ୍ତ ବାସୁଦେବ ମନ୍ଦିର ତିନୋଟିରେ ଶିଳାଲିପି ଅଛି । ଏହି ମନ୍ଦିରଗୁଡ଼ିକ ରାଜବଂଶୀୟମାନଙ୍କ କୀର୍ତ୍ତି ବୋଲି ଶିଳାଲିପିରୁ ଜଣାଯାଏ ।

କିନ୍ତୁ ଭୁବନେଶ୍ୱରର ସର୍ବଶ୍ରେଷ୍ଠ ଲିଙ୍ଗରାଜ ମନ୍ଦିରରେ ପ୍ରତିଷ୍ଠାତାଙ୍କର କୌଣସି ଶିଳାଲିପି ଥିବାର ଏ ପର୍ଯ୍ୟନ୍ତ ଜଣାଯାଇନାହିଁ । ଖୁବ୍ ସମ୍ଭବ ଏଥିରେ ଶିଳାଲିପି ନଥିଲା । କେବଳ ଲିଙ୍ଗରାଜ ନୁହେଁ, ପୁରୀର ଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିରରେ ମଧ୍ୟ ଶିଳାଲିପି ଥିବାର ଜଣାଯାଇନାହିଁ । ଏଥିରୁ ମନେହେଉଛି ଯେ, ଏହିସବୁ ମନ୍ଦିର ସ୍ୱାଧୀନ ରାଜାମାନଙ୍କର କୀର୍ତ୍ତି । ରାଜାଙ୍କର ସ୍ୱକୀୟ ସମ୍ପତ୍ତି ନଥିଲା । ସେ ରାଜକୋଷରୁ ଅର୍ଥ ବ୍ୟୟ କରି ମନ୍ଦିର ଗଢ଼ାଇଥିଲେ । ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିର ସମ୍ବନ୍ଧରେ ସେପରି କିମ୍ବଦନ୍ତୀ ନଥିଲେ ମଧ୍ୟ କୋଣାର୍କର ସୂର୍ଯ୍ୟମନ୍ଦିର ସମ୍ବନ୍ଧରେ କିମ୍ବଦନ୍ତୀ ଅଛି ଯେ, ଏଠାରେ ଉତ୍କଳର ବାରବର୍ଷର ରାଜସ୍ୱ ବ୍ୟୟିତ ହୋଇଥିଲା ଓ ମନ୍ଦିରଟି ଗଢ଼ିବାକୁ ବାର ବର୍ଷ ସମୟ ଲାଗିଥିଲା । ରାଜକୋଷର ଅର୍ଥ ସାରା ଦେଶର ଅର୍ଥ ସମଷ୍ଟି ଥିବାରୁ; ପ୍ରକୃତରେ ଏହି ତିନୋଟି ମନ୍ଦିର ଶାସକଙ୍କ ଦ୍ୱାରା ଦେଶ ପାଇଁ ନିର୍ମିତ ହୋଇଥିବାରୁ ସେ ତାଙ୍କର ସ୍ୱକୀୟ କୀର୍ତ୍ତି ବୋଲି ଘୋଷଣା କରି ନଥିଲେ ।

ଦେଶଶାସକ ରାଜାମାନେ ସ୍ଥାପତ୍ୟ ଭାସ୍କର୍ଯ୍ୟର ଶ୍ରେଷ୍ଠ ନିଦର୍ଶନ-ସ୍ୱରୂପ ଏହି ଜାତୀୟ କୀର୍ତ୍ତି ଗଢ଼ିଥିବାରୁ ପ୍ରଜାସାଧାରଣ ସେମାନଙ୍କୁ ବିସ୍ମୃତିଗର୍ଭରେ ପକାଇ ନଦେଇ ସେମାନଙ୍କର କୀର୍ତ୍ତିଗାଥା ଜନଶ୍ରୁତିରେ ଅଦ୍ୟାପି ଭୁଲିନାହାନ୍ତି । ଏହିସବୁ ଜନଶ୍ରୁତିରୁ ମାଦଳାପାଞ୍ଜିର ଲିଖିତ ବିବରଣୀ ମଧ୍ୟ ପ୍ରସ୍ତୁତ ହୋଇଛି । ମାଦଳାପାଞ୍ଜିରୁ ଜଣାଯାଏ ଯେ, କେଶରୀବଂଶୀୟ ରାଜାମାନେ ଲିଙ୍ଗରାଜ ମନ୍ଦିର ଗଢ଼ିଥିଲେ ଓ ପୁରୀର ଜଗନ୍ନାଥ ଓ କୋଣାର୍କର ସୂର୍ଯ୍ୟମନ୍ଦିର ଗଙ୍ଗବଂଶୀୟ ରାଜାମାନେ ଗଢ଼ିଥିଲେ । ମାଦଳାପାଞ୍ଜିରୁ ଏହି

ତିନୋଟି ମନ୍ଦିରର ନିର୍ମାଣକାଳ ସଠିକ ଭାବରେ ଜଣାଯାଉ ନଥିଲେ ମଧ୍ୟ ତିନୋଟିଯାକ ମନ୍ଦିର ମଧ୍ୟରୁ କେଉଁଟି କାହା ପରେ ନିର୍ମିତ ହୋଇଥିଲା, ତାହା ବେଶ୍ ବୁଝାଯାଏ । ଏହି ପ୍ରବନ୍ଧରେ ଏହି ତିନୋଟି ମନ୍ଦିରର ନିର୍ମାଣ କାଳ ସମସାମୟିକ ଲେଖା ଉପରେ ନିର୍ଭର କରି ଯଥାସମ୍ଭବ ଆନୁମାନିକଭାବରେ ସ୍ଥିର କରିବା ପାଇଁ ମୁଁ ଚେଷ୍ଟା କରିଛି ।

## ୧) ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର

ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପିରୁ ଜଣାଯାଏ ଯେ, କେଶରୀବଂଶୀୟ ମହାରାଜାଧିରାଜ ଉଦ୍ୟୋତ କେଶରୀଙ୍କ ମାତା କୋଳାବତୀ ଦେବୀ ଏ ମନ୍ଦିର ନିର୍ମାଣ କରିଥିଲେ । (୧) ନରସିଂହପୁର ଅନ୍ତର୍ଗତ ବାଲିଝରିର (୨) ତମ୍ରପଟାର ଉଦ୍ୟୋତକେଶରୀ ଓ ବ୍ରହ୍ମେଶ୍ୱର ଶିଳାଲିପିର ଉଦ୍ୟୋତକେଶରୀ ଅଭିନ୍ନ ବ୍ୟକ୍ତି । କେଶରୀବଂଶୀୟ ମହାଶିବଗୁପ୍ତ ଧର୍ମରଥ ଖ୍ରୀ. ୧୦୨୪-୨୫ର ଦାକ୍ଷିଣାତ୍ୟର ଚ୍ଛୋଳବଂଶୀୟ ରାଜା ରାଜେନ୍ଦ୍ରଚ୍ଛୋଳଙ୍କ ଦ୍ୱାରା ନିହତ ହୋଇଥିଲେ । (୩) ବାଲିଝରର ତମ୍ରପଟା ଅନୁସାରେ ଉଦ୍ୟୋତକେଶରୀ ଧର୍ମରଥଙ୍କର ପରବର୍ତ୍ତୀ ରାଜା ଥିବାରୁ ତାଙ୍କର ସମୟ ନିଶ୍ଚୟ ୧୦୨୫ର ପରବର୍ତ୍ତୀ । ଉଦ୍ୟୋତକେଶରୀଙ୍କ ପୂର୍ବରୁ ନହୁଷ କେଶରୀ ଓ ଯଯାତିକେଶରୀ ୨ୟ ରାଜା ହୋଇଥିଲେ । ଏହି ଦୁଇଜଣଙ୍କର ୨୫ ବର୍ଷରୁ ୩୦ ବର୍ଷ ରାଜତ୍ୱ ଧରାଗଲେ ଉଦ୍ୟୋତ କେଶରୀଙ୍କର ସିଂହାସନାରୋହଣ ଖ୍ରୀ. ୧୦୫୦-୧୦୫୫ ମଧ୍ୟରେ ପଡୁଛି । ବ୍ରହ୍ମେଶ୍ୱର ମନ୍ଦିରଟି ଉଦ୍ୟୋତକେଶରୀଙ୍କ ରାଜତ୍ୱକାଳରେ ୧୮ଶ ବର୍ଷରେ ନିର୍ମିତ ହୋଇଥିଲା; ତେଣୁ ତାହାର ନିର୍ମାଣକାଳ ଖ୍ରୀ.ଅ. ୧୦୭୦ ଧରାଯାଇପାରେ ।

ସ୍ୱର୍ଗୀୟ ରାମପ୍ରସାଦ ଚନ୍ଦ 'ଭୁବନେଶ୍ୱର ଲିଙ୍ଗରାଜ' ପ୍ରବନ୍ଧରେ ଲେଖିଛନ୍ତି --

"ଲିଙ୍ଗରାଜ ଓ ବ୍ରହ୍ମେଶ୍ୱର ମନ୍ଦିରର ସାଜସଜାର ଗଠନରୀତି ମଧ୍ୟରେ ବହୁ ସାମଞ୍ଜସ୍ୟ ଅଛି । x x x ବ୍ରହ୍ମେଶ୍ୱର ଓ ଲିଙ୍ଗରାଜ ମନ୍ଦିର ମଧ୍ୟରେ ଶିଳ୍ପଚାତୁର୍ଯ୍ୟଧାରାର ଏକତା ଅକ୍ଷୁର୍ଣ୍ଣ ଥିବାର ଲକ୍ଷିତ ହୁଏ । ଏଣୁ ଲିଙ୍ଗରାଜ ମନ୍ଦିର ଖୁବ୍ ସମ୍ଭବ ଉଦ୍ୟୋତ କେଶରୀଙ୍କର କୌଣସି ପୂର୍ବପୁରୁଷଙ୍କ ଦ୍ୱାରା ପ୍ରାୟ ଖ୍ରୀ. ୧୦୩୦ରେ ନିର୍ମିତ ହୋଇ-ଥିଲା ।" (୪)

---

(୧) ବଙ୍ଗଳାର ଏସିଆଟିକ୍ ସୋସାଇଟି ପତ୍ରିକା, ଖ ୧୩, ୧୯୪୭ ମସିହା ପୃ ୭୩-୭୪ ।
(୨) ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତି ପତ୍ରିକା, ୧୯୩୧ ମସିହା ପୃ.୧-୨୪ ।
(୩) ମାନ୍ଦ୍ରାଜର ଭାରତ ଇତିହାସ ପତ୍ରିକା, ୧୯୪୧, ପୃ.୧-୧୧
(୪) ଭାରତର ପ୍ରତ୍ନତତ୍ତ୍ୱବିଭାଗର ବାର୍ଷିକ ବିବରଣୀ ୧୯୨୩-୨୪, ପୃ.୧୨୧-୨୨.

ସ୍ୱର୍ଗୀୟ ଚନ୍ଦଙ୍କର ଲେଖାର ୧୫ ବର୍ଷ ପରେ ସୋମକୁଳୀ କେଶରୀବଂଶୀୟ ରାଜାମାନଙ୍କର ରାଜତ୍ୱକାଳ ମୋ ଦ୍ୱାରା ନିର୍ଣ୍ଣିତ ହୋଇଥିବାରୁ ତାଙ୍କ ଦ୍ୱାରା ନିର୍ଦ୍ଧାରିତ ମନ୍ଦିର ନିର୍ମାଣକାଳର ଅନୁମାନ ସମସାମୟିକ ଲିପି ଦ୍ୱାରା ଭ୍ରାନ୍ତ ଥିବାର ପ୍ରମାଣିତ ହୁଏ ।

ଗଙ୍ଗବଂଶୀୟ ଲିପିରୁ ପ୍ରମାଣିତ ହୁଏ ଯେ, କଳିଙ୍ଗନଗରର ଗଙ୍ଗନୃପତି ରାଜରାଜ ୧ମ ଉତ୍କଳ ନୃପତିଙ୍କ ଖ୍ରୀ. ୧୦୭୫-୭୬ରେ ପରାଭୂତ କରିଥିଲେ । ଏଥିରୁ ଏତିକି ପ୍ରମାଣିତ ହୁଏ ଯେ, ଖ୍ରୀ.ଅ ୧୦୭୫ ବେଳକୁ କେଶରୀବଂଶ ଶକ୍ତିହୀନ ହୋଇଥିଲା । ପକ୍ଷାନ୍ତରରେ ସମସାମୟିକ ଲିପିରୁ ଜଣାଯାଏ ଯେ, ଯଯାତିକେଶରୀ ୨ୟ ଓ ଉଦ୍ୟୋତ କେଶରୀ ଉତ୍କଳରେ ପ୍ରବଳପ୍ରତାପୀ ରାଜା ଥିଲେ । କେଶରୀବଂଶର ଦୁର୍ବଳତା ତେଣୁ ଉଦ୍ୟୋତ କେଶରୀଙ୍କ ଶେଷ ସମୟ ବା ତାଙ୍କ ବଂଶଧରଙ୍କ ସମୟରେ ଆସିଥିବାର ଅନୁମାନ ସ୍ୱାଭାବିକ । ଏହି ସମୟ ଖ୍ରୀ.ଅ. ୧୦୭୫ର ପରବର୍ତ୍ତୀ ନୁହେଁ । ଏଣୁ ଖ୍ରୀ. ୧୦୨୫ ଠାରୁ ଖ୍ରୀ. ୧୦୭୫ ପର୍ଯ୍ୟନ୍ତ ଏହି ୫୦ ବର୍ଷ ମଧ୍ୟରେ କେଶରୀବଂଶର ତିନି ଜଣ ରାଜା ଯଥା-- ନହୁଷ, ଯଯାତି ୨ୟ ଓ ଉଦ୍ୟୋତ ରାଜତ୍ୱ କରିଥିଲେ । ବ୍ରହ୍ମେଶ୍ୱର ମନ୍ଦିରର ଉଦ୍ୟୋତଙ୍କର ୧୮ଶ ବର୍ଷ ରାଜତ୍ୱରେ ନିର୍ମିତ ହୋଇଥିବାରୁ ଆମ୍ଭେମାନେ ନିଃସନ୍ଦେହ ଭାବରେ ଅନୁମାନ କରିପାରୁ ଯେ, ଖ୍ରୀ.ଅ. ୧୦୫୦ରେ ସିଂହାସନରେ ବସିଥିଲେ । ଯଯାତି ୨ୟଙ୍କର ରାଜତ୍ୱକାଳ ଅନ୍ତତଃ ୨୦ ବର୍ଷ ଧରାଗଲେ ସେ ଖ୍ରୀ. ୧୦୩୦ରେ ରାଜା ହୋଇଥିବାର ଅନୁମାନ କରାଯାଇପାରେ ।

ପୁରୀର ହାତଲେଖା ମାଦଳାପାଞ୍ଜିର ସମୟ ସ୍ଥିରୀକୃତ ହୋଇନାହିଁ । ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଯେଉଁ ମାଦଳାପାଞ୍ଜି ପୁସ୍ତକ ମୁଦ୍ରିତ କରିଛନ୍ତି, ତହିଁରୁ ହସ୍ତଲିଖିତ ପୋଥିର ସମୟ ମଧ୍ୟ ମିଳେନାହିଁ । ଷ୍ଟର୍ଲିଂ ସାହେବ ୧୮୨୨ରେ ତାଙ୍କର ଗ୍ରନ୍ଥ ଛପାଇଥିଲେ । ଏଣୁ ଏଥିରେ ଲିଖିତ ବିବରଣୀ ଅନ୍ତତଃ ୧୨୫ ବର୍ଷର ପୂର୍ବବର୍ତ୍ତୀ । ସେ ଇଂରାଜୀରେ ଯାହା ଲେଖିଛନ୍ତି, ତାହାର ଓଡ଼ିଆ ଅନୁବାଦ ତଳେ ଦିଆଗଲା ।

"ତାଙ୍କର ରାଜତ୍ୱର ଶେଷଭାଗରେ ରାଜା ଯଯାତିକେଶରୀ ଭୁବନେଶ୍ୱରରେ ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ।"

"ଯଯାତିଙ୍କର ୨ୟ ବଂଶଧର ଅନନ୍ତ କେଶରୀ ଏକ ବଡ଼ ମନ୍ଦିର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ ।"

"ତାଙ୍କ ଅନ୍ତେ ଲଲାଟଇନ୍ଦ୍ର କେଶରୀ ରାଜା ହେଲେ । ଭୁବନେଶ୍ୱରର ସମସ୍ତ

କିମ୍ବଦନ୍ତୀ ତାଙ୍କର ସୁଖ୍ୟାତିରେ ପୂର୍ଣ୍ଣ । କାରଣ ସେ ଲିଙ୍ଗରାଜଙ୍କ ମନ୍ଦିରର ନିର୍ମାଣକାର୍ଯ୍ୟ ଶେଷ କରିଥିଲେ ।'' (୫)

ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଯେ ଦୁଇ ବା ତିନି ପୁରୁଷର କାର୍ଯ୍ୟ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ଖୁବ୍ ସମ୍ଭବ ମନ୍ଦିରର ନିର୍ମାଣକାର୍ଯ୍ୟ ଯଯାତି ୨ୟଙ୍କ ଦ୍ୱାରା ଆରବ୍ଧ ହୋଇଥିଲା ଓ ଉଦ୍ୟୋତକେଶରୀଙ୍କ ଦ୍ୱାରା ଖ୍ରୀ.ଅ. ୧୦୫୦ପରେ ଶେଷ ହୋଇଥିଲା । ମୋର ମନେହୁଏ ଯେ, 'ଲଲାଟେନ୍ଦୁ' ବା 'ଲଲାଟଇନ୍ଦ୍ର' ଉଦ୍ୟୋତଙ୍କର ଏକ ଉପାଧି ଓ ଜନଶ୍ରୁତିରେ ଉପାଧି ବଞ୍ଚି ରହିଲା ଏବଂ ନାମଟି ଲୋପ ପାଇଗଲା । ଏହି ଅନୁମାନ କାରଣ ଏହି ଯେ, ଖଣ୍ଡଗିରିରେ ଲଲାଟେନ୍ଦୁ କେଶରୀ ନାମରେ ଗୋଟିଏ ଗୁମ୍ଫା ଅଛି । ମାତ୍ର ଗୁମ୍ଫା ମଧ୍ୟରେ ଥିବା ଲିପିରେ ଉଦ୍ୟୋତ କେଶରୀଙ୍କର ନାମ ଅଛି । ଉଦ୍ୟୋତ କେଶରୀ ତାଙ୍କର କାର୍ଯ୍ୟକଳାପ ଓ ଲିଙ୍ଗରାଜ ମନ୍ଦିରର ନିର୍ମାଣକାର୍ଯ୍ୟ ଶେଷ କରିଥିବାରୁ ସୋମକୂଳୀ କେଶରୀ ବଂଶର 'ଲଲାଟେନ୍ଦୁ' ଥିଲେ ।

ରାମପ୍ରସାଦ ଚନ୍ଦଙ୍କର ମତ (ଅର୍ଥାତ୍ ଲିଙ୍ଗରାଜ ମନ୍ଦିରର ନିର୍ମାଣକାଳ ପ୍ରାୟ ଖ୍ରୀ.ଅ. ୧୦୦୦) ଡାକ୍ତର ଆନନ୍ଦକୁମାର କୁମାରସ୍ୱାମୀ (୬) ଓ ମିଷ୍ଟର ପାର୍ଶି ବ୍ରାଉନ (୭) ଗ୍ରହଣ କରିଛନ୍ତି । ଉପରଲିଖିତ ଆଲୋଚନାରୁ ଏହା ପ୍ରତିପନ୍ନ ହେଉଅଛି ଯେ, ଚନ୍ଦଙ୍କର ମତ ଠିକ୍ ନୁହେଁ। ଏଣୁ ଲିଙ୍ଗରାଜ ମନ୍ଦିରର ନିର୍ମାଣକାଳ ଆନୁମାନିକ ଖ୍ରୀ. ୧୧୦୦ ଶତାବ୍ଦୀର ମଧ୍ୟଭାଗ ବୋଲି ସମସାମୟିକ ଲିପିର ପ୍ରମାଣ ଉପରେ ସ୍ୱୀକୃତ ହୋଇପାରେ ।

## ୨) ପୁରୀର ଜଗନ୍ନାଥ ମନ୍ଦିର :

ଡାକ୍ତର ଆନନ୍ଦ କୁମାର କୁମାରସ୍ୱାମୀ (୮) ଅନୁମାନ କରନ୍ତି ଯେ, ପୁରୀର ଜଗନ୍ନାଥ ମନ୍ଦିର ପ୍ରାୟ ଖ୍ରୀ. ୧୧୫୦ରେ ନିର୍ମିତ ହୋଇଥିଲା; ମାତ୍ର ମିଷ୍ଟର ପାର୍ଶି ବ୍ରାଉନ୍ (୯) ଲେଖିଅଛନ୍ତି ଯେ, ଉକ୍ତ ମନ୍ଦିର ଖ୍ରୀ. ୧୧୦୦ରେ ନିର୍ମିତ ହୋଇଥିଲା ।

---

(୫) ଷ୍ଟର୍ଲିଂ (୧୯୦୪) ମୁଦ୍ରଣ ପୃ. ୭୦.
(୬) ଭାରତ ଓ ଭାରତୀୟ ପୂର୍ବଦ୍ୱୀପପୁଞ୍ଜର କଳା (୧୯୨୭), ପୃ. ୧୧୫ ।
(୭) ଭାରତୀୟ ସ୍ଥାପତ୍ୟ (୧୯୪୨) ପୃ. ୧୨୦ ।
(୮) ଭାରତ ଓ ଇଣ୍ଡୋନେସିଆର କଳା
(୯) ଭାରତର ସ୍ଥାପତ୍ୟ - ପୃ. ୧୨୦

ମନମୋହନ ଚକ୍ରବର୍ତ୍ତୀ ଆନୁମାନିକ ଭାବରେ ସ୍ଥିର କରିଥିଲେ, ଖ୍ରୀ.ଅ. ୧୧୯୩-୯୪ଠାରୁ ଖ୍ରୀ.ଅ. ୧୧୯୮-୯୯ ମଧ୍ୟରେ ଭୁବନେଶ୍ୱରସ୍ଥ ମାଘେଶ୍ୱର ମନ୍ଦିର ସ୍ୱପ୍ନେଶ୍ୱର ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା (୧୦) । ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣକାଳ ଖ୍ରୀ.ଅ. ୧୨୭୮ (୧୧) । ଏହି ଦୁଇଟି ଲିପିରେ ଗଙ୍ଗବଂଶୀୟ କାହାଦ୍ୱାରା (ଚୋଡ଼ଗଙ୍ଗ ବା ଅନଙ୍ଗଭୀମ) ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା, ତାହାର ଉଲ୍ଲେଖ ନାହିଁ । ମାତ୍ର ନରସିଂହ ଦେବ ୨ୟଙ୍କର ତମ୍ବାପଟାର (୧୨) । ୨୭ଶ୍ଳୋକରେ ବର୍ଣ୍ଣିତ ଅଛି ଯେ, ଚୋଡ଼ଗଙ୍ଗ ପୁରୁଷୋତ୍ତମଙ୍କ ନିମିତ୍ତ ଗୋଟିଏ ପ୍ରାସାଦ ନିର୍ମାଣ କରିଥିଲେ । ଏହି ଲେଖା ଉପରେ ନିର୍ଭର କରି ମନମୋହନ ଚକ୍ରବର୍ତ୍ତୀ ଲେଖିଅଛନ୍ତି ଯେ, ''ପୁରୀର ଜଗନ୍ନାଥ ମନ୍ଦିର ତାଙ୍କ ଆଦେଶରେ ନିର୍ମିତ ହୋଇଥିଲା'' (୧୩) । ୧୯୪୯ ମସିହାର ଅଗଷ୍ଟମାସ ଖ୍ରୀ.ଅ. ୧୨୩୦ରେ ପ୍ରଦତ୍ତ ଅନଙ୍ଗଭୀମ ୨ୟଙ୍କର ଖଣ୍ଡିଏ ତମ୍ବାପଟା କଟକ ଜିଲ୍ଲାର ସଦରଥାନା ଅନ୍ତର୍ଗତ ନଗରୀ ଗ୍ରାମରୁ ମିଳିଛି । ଏଥିରୁ ''ପୁରୁଷୋତ୍ତମ ଦେବଙ୍କର ପ୍ରତିଷ୍ଠା'' କଥାର ଉଲ୍ଲେଖ ଅଛି ଓ ପୂର୍ବୋକ୍ତ ଶ୍ଳୋକ ମଧ୍ୟ ଅଛି । ଚୋଡ଼ଗଙ୍ଗଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ନିର୍ମିତ ହେବାର କଥା । ଏହା ପୂର୍ବରୁ ବା ଖ୍ରୀ. ୧୨୩୦ ପୂର୍ବରୁ କୌଣସି ଲିପିରେ ମିଳେନାହିଁ । ଚୋଡ଼ଗଙ୍ଗ ଖ୍ରୀ. ୧୦୭୬ ଠାରୁ ଖ୍ରୀ.ଅ. ୧୧୪୭ ପର୍ଯ୍ୟନ୍ତ ରାଜତ୍ୱ କରିଥିବାର କଥା ପ୍ରଫେସର ସୁବାରାଓ ସ୍ଥିର କରିଛନ୍ତି (୧୪) ଓ ସେ ପୁଣି ଲେଖିଛନ୍ତି ଯେ, ଖ୍ରୀ. ୧୧୩୫ରେ ସେ କଟକକୁ ରାଜଧାନୀ ଉଠାଇ ଆଣିଥିଲେ । (୧୫); ଏଣୁ କୁମାରସ୍ୱାମୀଙ୍କ ଦ୍ୱାରା ସ୍ଥିରୀକୃତ ସମୟ ଚୋଡ଼ଗଙ୍ଗଙ୍କର ଶେଷ ରାଜତ୍ୱର ଅତି ନିକଟବର୍ତ୍ତୀ ହେଉଥିବାର ଦେଖାଯାଇଛି ।

ମନମୋହନ ଚକ୍ରବର୍ତ୍ତୀ ତାଙ୍କର ''ପୁରୀର ଜଗନ୍ନାଥ ମନ୍ଦିର'' ପ୍ରବନ୍ଧରେ ଲେଖିଛନ୍ତି-

୧) ପୁରୀରେ ଅବସ୍ଥିତ ଆଧୁନିକ ମନ୍ଦିର ଚୋଡ଼ଗଙ୍ଗଙ୍କ ଆଦେଶରେ ନିର୍ମିତ ହୋଇଥିଲା ।

୨) ସେଠାରେ ଗୋଟିଏ ମନ୍ଦିର ଖ୍ରୀ.ଅ. ୧୦୭୦ରେ ଥିଲା । ଖୁବ୍ ସମ୍ଭବ ଖ୍ରୀ.ଅ. ୧୦୮୫-୯୦ ମଧ୍ୟରେ ଏହା ନିର୍ମିତ ହୋଇଥିଲା ।

---

(୧୦) ବଙ୍ଗୀୟ ଏସିଆଟିକ୍ ସୋସାଇଟି ପତ୍ରିକା, ୧୯୦୩, ପୃ ୧୧.

(୧୧) ଏପିଗ୍ରାଫିଆ ଇଣ୍ଡିକା ଭା.୧୩, ପୃ.୧୫୧ ।

(୧୨) ବଙ୍ଗୀୟ ଏସିୟାଟିକ୍ ସୋସାଇଟି ପତ୍ରିକା, ପୃ ୨୪୦ ।

(୧୩) ବଙ୍ଗୀୟ ଏସିୟାଟିକ୍ ସୋସାଇଟ ପତ୍ରିକା - ୧୯୦୦ ପୃ. ୧୧୦

(୧୪) ଆନ୍ଧ୍ର ଅନୁସନ୍ଧାନ ସମିତି ପତ୍ରିକା ପୃ.୧୮୨ ।

(୧୫) ଆନ୍ଧ୍ର ଅନୁସନ୍ଧାନ ସମିତି ପତ୍ରିକା ପୃ.୫୮

୩) ଚୋଡ଼ଗଙ୍ଗ ପ୍ରଥମ ରାଜତ୍ୱରେ ଓଡ଼ିଶା ଅଧିକାର କରିଥିଲେ । (ଖୁବ୍ ସମ୍ଭବ ରାଜତ୍ୱର ପ୍ରଥମ ଦଶନ୍ଧି ଅର୍ଥାତ୍ ଖ୍ରୀ.ଅ. ୧୦୭୫-୧୦୮୫ ମଧ୍ୟରେ) ।

ଚକ୍ରବର୍ତ୍ତୀଙ୍କର ଉପରଲିଖିତ ମତ ଓ ପାର୍ଶି ବ୍ରାଉନଙ୍କର ମତ ସମସାମୟିକ ଲିପିରୁ ପ୍ରମାଣିତ ହୁଏନାହିଁ । ଓଡ଼ିଶାର ପୂର୍ଣ୍ଣ ଅଧିକାର ଚୋଡ଼ଗଙ୍ଗଙ୍କ ଦ୍ୱାରା ଖ୍ରୀ. ୧୧୧୮ ପୂର୍ବେ ହୋଇ ନଥିଲା ଓ ଓଡ଼ିଶାରେ ତାଙ୍କର ରାଜଧାନୀ ଖ୍ରୀ. ୧୧୩୫ରେ ସ୍ଥାପିତ ହୋଇନଥିଲା । ତେଣୁ ଜଗନ୍ନାଥ ମନ୍ଦିର ନିର୍ମାଣକାର୍ଯ୍ୟ ତାଙ୍କଦ୍ୱାରା ଖ୍ରୀ. ୧୧୩୫ ପରେ ଆରମ୍ଭ ହୋଇଥିଲା ଓ ଖ୍ରୀ. ୧୧୪୫ ପୂର୍ବରୁ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଏଣୁ ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ପୁରୀର ଜଗନ୍ନାଥ ମନ୍ଦିର ଖ୍ରୀଷ୍ଟିୟ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ହୋଇଥିଲା ।

୩) କୋଣାର୍କର ସୂର୍ଯ୍ୟମନ୍ଦିରଃ

କୋଣାର୍କର ସୂର୍ଯ୍ୟମନ୍ଦିର ନିର୍ମାଣ କାଳ ସମ୍ବନ୍ଧରେ ସମସାମୟିକ ଲିପି ଓ କିମ୍ବଦନ୍ତୀ ଉଭୟେ ଏକମତ । ନରସିଂହଦେବ ୨ୟଙ୍କ ଠାରୁ ନରସିଂହ ଦେବ ୪ର୍ଥ ପର୍ଯ୍ୟନ୍ତ ସମସ୍ତ ଗଙ୍ଗ ରାଜାମାନଙ୍କର ତମ୍ବାପଟାରେ ଲିଖିତ ଅଛି ଯେ, କୋଣାର୍କର ସୂର୍ଯ୍ୟମନ୍ଦିର ନରସିଂହଦେବ ପ୍ରଥମଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ମାଦଳାପାଞ୍ଜିରୁ ଜଣାଯାଏ ଯେ, ଲାଙ୍ଗୁଳା ନରସିଂହ ଦେବ ଏହି ମନ୍ଦିର ଗଡ଼ାଇଥିଲେ । ନରସିଂହ ଦେବ ୧ମ ଖ୍ରୀ. ୧୨୩୮ ଠାରୁ ଖ୍ରୀ. ୧୨୬୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମନ୍ଦିର ଗଢ଼ିବାରେ ବାରବର୍ଷ ସମୟ ଓ ଉତ୍କଳର ବାରବର୍ଷ ରାଜସ୍ୱ ବ୍ୟୟିତ ହୋଇଥିଲା । ଯଦି ଧରାଯାଏ ଯେ, ନରସିଂହ ଦେବ ରାଜା ହେବାମାତ୍ରେ ମନ୍ଦିର ଗଢ଼ାଇବାରେ ମନ ଦେଇଥିଲେ, ତେବେ କୋଣାର୍କର ସୂର୍ଯ୍ୟମନ୍ଦିରର ନିର୍ମାଣକାଳ ଖ୍ରୀ. ୧୨୫୦ ଅର୍ଥାତ୍ ଖ୍ରୀଷ୍ଟିୟ ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ପଡୁଛି ।

ଉପରଲିଖିତ ଆଲୋଚନାରୁ ଏତିକି ଜଣାଯାଉଛି ଯେ, ଓଡ଼ିଶାର ତିନୋଟି ଶ୍ରେଷ୍ଠ ମନ୍ଦିରର ନିର୍ମାଣକାଳ ମଧ୍ୟରେ ପ୍ରାୟ ଏକଶତ ବର୍ଷ ଲେଖାଏଁ ବ୍ୟବଧାନ ଥିଲା; ଅର୍ଥାତ୍, ଲିଙ୍ଗରାଜ ମନ୍ଦିର ପ୍ରାୟ ଖ୍ରୀ. ୧୦୫୦ ବା ଏକାଦଶ ଶତାବ୍ଦୀର ମଧ୍ୟଭାଗରେ, ପୁରୀର ଜଗନ୍ନାଥ ମନ୍ଦିର ଖ୍ରୀ. ୧୧୫୦ ବା ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଓ କୋଣାର୍କର ସୂର୍ଯ୍ୟମନ୍ଦିର ଖ୍ରୀ. ୧୨୫୦ ବା ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ନିର୍ମିତ ହୋଇଥିଲା ।



ସମାଜ, ୧୯୫୦, ଜୁନ୍

# ମୟୂରଭଞ୍ଜରେ ଉତ୍କଳମଣି ଗୋପବନ୍ଧୁ

ମୟୂରଭଞ୍ଜ ସ୍ୱର୍ଗୀୟ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ ମୟୂରଭଞ୍ଜର ଶାସନ ପାଇଁ ବ୍ୟକ୍ତିମାନଙ୍କୁ ବାଛି ବାଛି ରାଜକାର୍ଯ୍ୟରେ ନିଯୁକ୍ତ କରୁଥିଲେ । ସେ ଓଡ଼ିଶାରେ ମଧ୍ୟ ଆଧୁନିକ ଶିକ୍ଷାପ୍ରାପ୍ତ ଲୋକଙ୍କର ଅଭାବ ଥିଲା । ତେଣୁ ସେ ବାଧ୍ୟହୋଇ ବଙ୍ଗାଳିମାନଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କରୁଥିବାରୁ ଓଡ଼ିଶାରେ ଅନେକ ଲୋକ ତାଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇଥିଲେ । କଟକର ସୁନାମପ୍ରସିଦ୍ଧ ମଧୁବାବୁଙ୍କୁ ମହାରାଜା ଶ୍ରୀ ରାମଚନ୍ଦ୍ର ରାଜନୈତିକ ପରାମର୍ଶଦାତା ରୂପେ ଗ୍ରହଣ କରିଥିଲେ । ଓଡ଼ିଆମାନଙ୍କ ପରିବର୍ତ୍ତେ ବଙ୍ଗାଳୀମାନଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କରୁଥିବାରୁ ମଧୁବାବୁ ମଧ୍ୟ ସାଧାରଣଙ୍କ ଅସନ୍ତୋଷ କଥା ମହାରାଜାଙ୍କୁ ଜଣାଇ ଦେଇଥିଲେ । ୧୯୦୯ ରେ ମୟୂରଭଞ୍ଜ ଷ୍ଟେଟ୍ ଓକିଲ ପାଇଁ ମହାରାଜା ଶ୍ରୀରାମଚନ୍ଦ୍ର ଜଣେ ଲୋକ ବାଛିବା ପାଇଁ ମଧୁବାବୁଙ୍କୁ ପଗ୍ଭରିବାରୁ ମଧୁବାବୁ ଗୋପବନ୍ଧୁଙ୍କୁ ବାଛିଲେ । ତେଣୁ ଗୋପବନ୍ଧୁଙ୍କୁ ୧୯୦୯ରେ ବାରିପଦାରେ ମୟୂରଭଞ୍ଜର ଷ୍ଟେଟ୍ ଓକିଲ କାର୍ଯ୍ୟରେ ଯୋଗଦେବାକୁ ପଡ଼ିଲା ।

ସେ ସମୟରେ ବାରିପଦା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶୈଳେନ୍ଦ୍ର ନାଥ ସରକାର ହେଡ୍‌ମାଷ୍ଟର ଥିଲେ । ସେ ଜଣେ ଜନସେବାପରାୟଣ ବ୍ୟକ୍ତି ଥିବାରୁ ଗୋପବନ୍ଧୁ ତାଙ୍କ ଦ୍ୱାରା ବାରିପଦା ସ୍କୁଲର ଛାତ୍ରମାନଙ୍କୁ ଜନସେବାତ୍ମକ କାର୍ଯ୍ୟରେ ଲଗାଇବା ପାଇଁ ପ୍ରଶସ୍ତ କ୍ଷେତ୍ର ପାଇଥିଲେ । ସ୍କୁଲର ଛାତ୍ରମାନଙ୍କୁ ସେ ଦୁହେଁ ଏପରି ଉଦ୍‌ବୁଦ୍ଧ କରିଥିଲେ ଯେ, ସେମାନଙ୍କର କାର୍ଯ୍ୟ ଆଜିଯାଏ ମଧ୍ୟ ବାରିପଦା ଉଚ୍ଚ ଇଂରାଜୀ ସ୍କୁଲର ଛାତ୍ରମାନଙ୍କର ଆଦର୍ଶ ହୋଇରହିଛି ।

ସେ ସମୟରେ ସେ ବାରିପଦାରେ ବହୁତ ଘରପୋଡ଼ି ହେଉଥିଲା । ସ୍କୁଲ ପିଲାମାନେ ଘରପୋଡ଼ି କଥା ଶୁଣିଲାମାତ୍ରେ ଗୋପବନ୍ଧୁଙ୍କ ପ୍ରେରଣାରେ ଏକତ୍ର ହୋଇ ଅକ୍ଳାନ୍ତ ପରିଶ୍ରମ କରି ନିଆଁ ଲିଭାଉଥିଲେ । ସେମାନଙ୍କ କାର୍ଯ୍ୟ ପାଇଁ ସ୍କୁଲରେ ଅନେକ ବାଲ୍ଟି ଓ ସିରିଞ୍ଜ ପମ୍ପ ମଧ୍ୟ ରଖାଯାଇଥିଲା । ବାରିପଦା ସ୍କୁଲରେ ଗୋପବନ୍ଧୁ ଆଉ ଗୋଟିଏ କାର୍ଯ୍ୟ କରିଥିଲେ । ସ୍କୁଲର ପିଲାମାନଙ୍କୁ ନେଇ ସେ "ୟଙ୍ଗ୍ ଉତ୍କଳ

ଆସୋସିଏସନ୍'' (Young Utkal Association) ଗଢ଼ିଥିଲେ । ପ୍ରତି ଶନିବାର ଦିନ ସ୍କୁଲ ଛୁଟି ପରେ ସ୍କୁଲ ପିଲାମାନେ ମିଟିଂ କରି ପ୍ରବନ୍ଧ ପାଠ ଓ ଆଲୋଚନା କରୁଥିଲେ । ଏଥିରେ ଅଧିକାଂଶ ସମୟରେ ଗୋପବନ୍ଧୁ ଯୋଗଦେଇ ପିଲାମାନଙ୍କୁ ଉତ୍ସାହିତ କରୁଥିଲେ ।

ଗୋପବନ୍ଧୁ ବାରିପଦା ଅବସ୍ଥିତିର କେତେକ ମାସ ପରେ ମହାରାଜା ଶ୍ରୀ ରାମଚନ୍ଦ୍ର ପୃଥିବୀ ଭ୍ରମଣ ପାଇଁ ୧୯୧୦ ମେ ମାସରେ ବାହାରିଲେ । ତାଙ୍କର ଏହି ପ୍ରସ୍ତାବରେ ଅନେକ ଲୋକ ବିଚଳିତ ହୋଇଥିଲେ । କିନ୍ତୁ ଗୋପବନ୍ଧୁ ତାଙ୍କୁ ଏ ବିଷୟରେ ଉତ୍ସାହିତ କରିଥିଲେ । ମହାରାଜାଙ୍କ ଯାତ୍ରାପୂର୍ବରୁ ବାରିପଦାରେ ଗୋଟିଏ ବିଦାୟସଭା ହୋଇଥିଲା । ସେଥିରେ ମହାରାଜାଙ୍କ ପ୍ରତି ଶୁଭକାମନା କରି ଅନେକ ବକ୍ତା କହିଥିଲେ । ଏହି ସଭା ଉପଲକ୍ଷରେ ଗୋପବନ୍ଧୁ ଯେଉଁ ସଙ୍ଗୀତ ରଚନା କରିଥିଲେ, ତାହା ସମସ୍ତଙ୍କର ବଡ଼ ମର୍ମସ୍ପର୍ଶୀ ହୋଇଥିଲା । ସଙ୍ଗୀତଟି ମୋର ପୂରା ମନେନାହିଁ । ତହିଁରୁ କେତୋଟି ଧାଡ଼ି ତଳେ ଉଦ୍ଧୃତ କଲି ।

ରାମଚନ୍ଦ୍ର ମହାରାଜା ପରଜା-ପରାଣଧନ
ଯାଉଛ କେଉଁ ବିଦେଶେ ହେ ଭଞ୍ଜ କଞ୍ଜ ତପନ

x x x x

ଭୁଲିବ ନାହିଁ ଭୂପାଳ ସରାଳି ଶୁଦ୍ଧ ସଲିଳ
ମେଘାସନ ଗୁରୁକୁଞ୍ଜ ବୁଢ଼ାବଳଙ୍ଗ ପୁଳିନ ।।
ସ୍ନେହାଡ଼ ପାହାଡ଼ ଦେଖ ଭୁଲିବ ନାହିଁ ନରେଶ
ଘେନ ଦିବ୍ୟ ଅବଧାନ ଏ ବିନୀତ ନିବେଦନ ।।

ଏ ସଙ୍ଗୀତ ବୋଲାହେଲାବେଳେ ସମସ୍ତଙ୍କର ଚକ୍ଷୁ ଅଶ୍ରୁ ପରିପୂର୍ଣ୍ଣ ହୋଇଥିଲା ।

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ୧୯୧୧ ଜାନୁଆରୀ ମାସରେ ପୃଥିବୀ ଭ୍ରମଣ କରି ବାରିପଦା ଫେରିଥିଲେ । ସେ ସମୟରେ ଯେଉଁ ସଭା ହୋଇଥିଲା, ସେଥିରେ ଗୋପବନ୍ଧୁ ମହାରାଜାଙ୍କୁ ସାଦର ଅଭ୍ୟର୍ଥନା କରି ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଇଥିଲେ ।

ମୁଁ ୧୯୧୧ ଜାନୁଆରୀ ମାସରେ ମାଇନର ପାଶ୍ କରି ବାରିପଦା ସ୍କୁଲରେ ନାମ ଲେଖାଇଲି ଓ ଗୋପବନ୍ଧୁଙ୍କୁ ଆଖିରେ ଦେଖିବାର ସୁଯୋଗ ପାଇଲି । ୧୯୧୧ ମେ ମାସରେ ମୋର ପରମବନ୍ଧୁ ସ୍ୱର୍ଗୀୟ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ସହ ଗୋପବନ୍ଧୁଙ୍କ ସହିତ

ପରିଚିତ ହେଲି । ସେ ସମୟରେ ତାଙ୍କ ଘରେ ଥିଲେ ସ୍ୱର୍ଗୀୟ ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ପଣ୍ଡିତ ଗୋଦାବରୀଶ ମିଶ୍ର । ଏମାନେ ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟର ଛାତ୍ର ଥିଲେ । ଖରାଛୁଟି ହୋଇଥିବାରୁ ସମସ୍ତେ ଗୋପବନ୍ଧୁଙ୍କ ଘରେ ରୁଣ୍ଡ ହୋଇ ବାରିପଦାରେ ଏକ ନୂତନ ବାତାବରଣ ସୃଷ୍ଟି କରିଥିଲେ । ମୋର ଠିକ୍ ମନେନାହିଁ, ତେବେ ଏହାର ଠିକ୍ ପୂର୍ବରୁ ବୋଧହୁଏ ପଣ୍ଡିତ ନୀଳକଣ୍ଠ ଦାଶ, ଏମ୍.ଏ. ପାଶ୍ କରି ବାରିପଦା ଆସିଥିଲେ । ସେଦିନ ସ୍କୁଲରେ (ଶୂନ୍ୟ) ସମ୍ବନ୍ଧରେ ଏକ ଉପାଦେୟ ଦର୍ଶନମୂଳକ ବକ୍ତୃତା ଦେଇଥିଲେ । ମୋର ମନେଅଛି ଏହି ସମୟରେ ପଣ୍ଡିତ ଗୋଦାବରୀଶଙ୍କ ମୁହଁରୁ ତାଙ୍କର ପଦ୍ମାବତୀ କବିତା ଶୁଣିଥିଲି । ତାର ପ୍ରଥମ ପଦଟି ଏଠାରେ ଉଦ୍ଧୃତ କଲି -

"ଆମ ଘର ଏହି ଓଡ଼ିଶା ଦେଶେ ଲୋ
ଫିରଙ୍ଗୀ ତହିଁରେ ରାଜା
ଦଶ ଜଣ ଗୋରା ରାଇଜ ବୁଝନ୍ତି
କୋଟିଏ ହେବେ ପରଜା ।" ଇତ୍ୟାଦି

ଏହାପରେ ପଦ୍ମାବତୀ 'ଉତ୍କଳ ସାହିତ୍ୟ' ପତ୍ରିକାରେ ମୁଦ୍ରିତ ହୋଇଥିଲା ।

ଏହି ସମୟରେ ବା ଏହାର କିଛିଦିନ ପରେ ଗୋପବନ୍ଧୁଙ୍କଠାରୁ ଗୋଟିଏ କଥା ଶୁଣିଥିଲି । ତାହା ତଳେ ବର୍ଣ୍ଣିତ ହେଲା ।

ଆମେ କେତେଜଣ ତାଙ୍କ ପାଖରେ ବସିଥିଲୁଁ । ଜଣେ ଲୋକ ଆସି ତାଙ୍କୁ କହିଲା ଯେ, ସେ ଉଦ୍ୟମରେ କୃତକାର୍ଯ୍ୟ ହୋଇପାରିଲା ନାହିଁ । ତହୁଁ ଗୋପବନ୍ଧୁ ରହସ୍ୟ କରି କହିଲେ, "ତୁମେ ତାଙ୍କୁ 'ତାପଙ୍ଗ ବଦଳି ବୃତ୍ତେ' ଦୁଇପଦ କହି ଦେଲନାହିଁ ?" ଏହା ଶୁଣି ଆମ୍ଭମାନଙ୍କ ମଧ୍ୟରୁ ଜଣେ 'ତାପଙ୍ଗ ବଦଳି ବୃତ୍ତେ'ର ଅର୍ଥ କଣ ପଚାରିବାରୁ ସେ ତାଙ୍କର ସ୍ୱଭାବସୁନ୍ଦର ହସ ହସ ମୁହଁରେ କହିଥିଲେ -

"ତାପଙ୍ଗରେ ଜଣେ ପ୍ରାଇମେରୀ ଶିକ୍ଷକ ଥିଲେ । ତାଙ୍କ ଘର ମଧ୍ୟ ତାପଙ୍ଗରେ । ସ୍କୁଲ ସବ୍‌ଇନସ୍‌ପେକ୍ଟର ସ୍କୁଲ ଦେଖିବାକୁ ଆସିଲେ ତାଙ୍କର ସମସ୍ତ ଚର୍ଚ୍ଚା କରିବାକୁ ପଡୁଥିଲା । ସ୍ୱଳ୍ପବେତନଭୋଗୀ ଶିକ୍ଷକ ସ୍କୁଲ ସବ୍‌ଇନସ୍‌ପେକ୍ଟରଙ୍କୁ ଚର୍ଚ୍ଚା କରିବାରେ ପ୍ରତିଥର ସେ କ୍ଷତିଗ୍ରସ୍ତ ହେଉଥିବାରୁ ଥରେ ତାଙ୍କର ଉପଯୁକ୍ତ ଚର୍ଚ୍ଚା କଲେନାହିଁ । ଫଳରେ ଶିକ୍ଷକ ଅଳ୍ପଦିନ ମଧ୍ୟରେ ନିଜ ଗ୍ରାମଠାରୁ କେତେକ ଦୂରବର୍ତ୍ତୀ ଅନ୍ୟ ଗ୍ରାମର ସ୍କୁଲକୁ ବଦଳି ହେଲେ । ବଦଳିର କାରଣ ଶିକ୍ଷକମହାଶୟ ସହଜରେ ବୁଝିପାରିଲେ ଓ ତା

ସଙ୍ଗେ ନିଜର ଭୁଲ ମଧ୍ୟ ଜାଣିପାରିଲେ । ପ୍ରତିଦିନ ୪/୫ ମାଇଲ ବାଟ ସ୍କୁଲକୁ ଯାଇ ଫେରିବା ଓ ଗ୍ରକିରି କରିବା ତାଙ୍କ ପକ୍ଷରେ ବଡ଼ କଷ୍ଟକର ହେଲା । ତପରେ ଉକ୍ତ ସବ୍‌ଇନସ୍‌ପେକ୍ଟରଙ୍କର ସ୍କୁଲ ପରିଦର୍ଶନର ପାଳି ପଡ଼ିଲା । ତତ୍‌ପୂର୍ବରୁ ଶିକ୍ଷକମହାଶୟ ତାଙ୍କର ଚର୍ଚ୍ଚା ପାଇଁ ବିଶେଷ ମନୋଯୋଗୀ ହେଲେ ଓ ସବୁଜିନିଷ ଭଲଭାବରେ ଯୋଗାଡ଼ କଲେ । କେବଳ ଏତିକିନୁହେଁ, ସବ୍‌ଇନସ୍‌ପେକ୍ଟରଙ୍କ ଉଦ୍ଦେଶ୍ୟରେ ନିଜର ପ୍ରାର୍ଥନା ସବୁ ବର୍ଣ୍ଣନା କରି ଗୋଟିଏ କବିତା ଲେଖି ବୋଲିଥିଲେ । ଯାହାର ଶେଷ ଧାଡ଼ି ହେଉଛି "ମୋତେ ତାପଙ୍ଗ ବଦଳି କର ହେ ଭୋ ଦେବ ।"

ଏହା କହି ସେ ଉକ୍ତ ଗୀତର ଯେଉଁ ପଦଟି ବୋଲିଥିଲେ, ତାହା ଏପର୍ଯ୍ୟନ୍ତ ମୋର ମନେଅଛି --

"ଦୁଷ୍ଟ ଲୋକଙ୍କୁ ସାକ୍ଷାତେ ଯମ
ଦାତାପଣେ କର୍ଣ୍ଣ ନୋହେ ସମ
ଗଭୀର ପଣକୁ ଜଳଧି ହାରଇ
ଶୀତଳ ଯେସନେ ସୋମ ହେ, ଭୋ ଦେବ

ଜ୍ଞାନ ଗାରିମା ଅଟେ ଅପାର
ବିଦ୍ୟା ବଳେ ବଶ ତିନିପୁର
ଅଧମ ଜନରେ ନହୁଅ ନିଷ୍ଠୁର
(ମୋତେ) ତାପଙ୍ଗ ବଦଳି କର ହେ, ଭୋ ଦେବ ।"

ଗୋପବନ୍ଧୁ ଲୋକଚରିତ୍ର ବିଶେଷଭାବରେ ବୁଝୁଥିବାରୁ 'କ୍ଷେତ୍ରେ କର୍ମ ବିଧିୟତେ' ନୀତିରେ ଉକ୍ତ ଭଦ୍ରବ୍ୟକ୍ତିଙ୍କୁ ପ୍ରକାରାନ୍ତରେ ଖୋସାମତିଆ ଦୁଇଗ୍ରରି କଥା କହି ନିଜର କାର୍ଯ୍ୟ ଉଦ୍ଧାର କରିବାର କଥା କହିଲେ । ଖୋସାମତ କରି କହିବା ଲୋକଙ୍କୁ ଖୋସାମତିଆ ବୋଲି ଲୋକେ ନିନ୍ଦା କରନ୍ତି । ତେଣୁ ଗୋପବନ୍ଧୁ ସେ କଥା ଉଚ୍ଚାରଣ ନ କରି ସେହି ଭାବାପନ୍ନ କାର୍ଯ୍ୟ କରିବା ପାଇଁ କହି ଏକ ରହସ୍ୟ ସୃଷ୍ଟି କରିବାକୁ ଛାଡ଼ି ନଥିଲେ ।

୧୯୧୨ ଫେବୃଆରୀ ୨୨ ତାରିଖରେ ଶ୍ରୀ ରାମଚନ୍ଦ୍ର ପରଲୋକ ଗମନ କରିବାରୁ ଗୋପବନ୍ଧୁଙ୍କ ମନ ଏକାବେଳକେ ଭାଙ୍ଗିପଡ଼ିଲା । ମୟୂରଭଞ୍ଜର କାର୍ଯ୍ୟ କରିବାକୁ ତାଙ୍କର ଆଉ ଉତ୍ସାହ ରହିଲା ନାହିଁ । ୧୯୧୨ ଜୁଲାଇ ମାସରେ ବିହାର-ଓଡ଼ିଶାର ଛୋଟ ଲାଟଙ୍କର ବାରିପଦା ଆସିବା ସ୍ଥିର ହେବାରୁ ପଲିଟିକାଲ୍ ଏଜେଣ୍ଟ କବଡେନ୍ ରାମ୍‌ସେ ବାରିପଦାରେ

ରହି ସମସ୍ତ ଆୟୋଜନ କରୁଥିଲେ । ଦିନେ ଶିକ୍ଷା ବିଭାଗର ସୁପରିଟେଣ୍ଡେଣ୍ଟଙ୍କୁ ପଲିଟିକାଲ ଏଜେଣ୍ଟ ଉଚ୍ଚ ଇଂରାଜୀ ସ୍କୁଲରୁ ବାଳିକା ବିଦ୍ୟାଳୟକୁ ସାଙ୍ଗର ଡାକି ଘୋଡ଼ାଗାଡ଼ିରେ ନିଜ ପାଖରେ ବସାଇ କୋଚ୍‌ମ୍ୟାନ ପାଖକୁ ଯିବାପାଇଁ କହିଲେ ଓ ସେ ସେହି ଆଦେଶ ମାନି ଘୋଡ଼ାଗାଡ଼ିରେ ବାଳିକା ବିଦ୍ୟାଳୟ ଆସିଲେ । ଏହି ଘଟଣା ବାରିପଦାରେ ଏକ ଗ୍ୱଞ୍ଚଲ୍ୟ ସୃଷ୍ଟିକଲା । ଯେଉଁ ଆତ୍ମମର୍ଯ୍ୟାଦାଶୀଳ କର୍ମଗ୍ୱରୀମାନେ ଏଥିରେ ବିଚଳିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ଗୋପବନ୍ଧୁ ଅଗ୍ରଣୀ ଥିଲେ । କାଳେ ତାଙ୍କୁ ଏପରି ଅବସ୍ଥାରେ ପଡ଼ିବାକୁ ହେବ, ଏହି ଆଶଙ୍କାରେ ସେ ନିଜ କାର୍ଯ୍ୟରୁ ଅବିଳମ୍ବେ ଇସ୍ତଫା ଦେଲେ । ପଲିଟିକାଲ୍ ଏଜେଣ୍ଟ ଇସ୍ତଫା ପ୍ରତ୍ୟାହାର କରିବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ; ମାତ୍ର ଗୋପବନ୍ଧୁ, ତାହା ଗ୍ରହଣ କରି ନଥିଲେ । ମୟୂରଭଞ୍ଜର ସରକାରୀ ଓକିଲ ହିସାବରେ ଗୋପବନ୍ଧୁଙ୍କର ପ୍ରଚୁର ଅର୍ଥାଗମ ହେଉଥିଲା । କିନ୍ତୁ କେବଳ ଆତ୍ମମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବାପାଇଁ ଅର୍ଥ ପ୍ରତି ଭ୍ରୂକ୍ଷେପ ନକରି ସେ ସ୍ୱାଧୀନ ଜୀବନ କଟାଇବା ଲାଗି ବାରିପଦାରୁ କଟକ ଗ୍ୱଲିଆସିଲେ । ଏହାପରେ ସମଗ୍ର ଓଡ଼ିଶା ତାଙ୍କର କର୍ମଜୀବନର କେନ୍ଦ୍ର ହେଲା ।



ସମାଜ, ୧୯୫୩, ଜୁନ୍

# କିଲ୍ଲା ନରସିଂହପୁରର ବିସ୍ତୃତ ରାଜବଂଶାବଳୀ

(ତଳେ ମୁଦ୍ରିତ ନରସିଂହପୁର ରାଜ୍ୟର ବଂଶାବଳୀରେ ଉକ୍ତ ରାଜ୍ୟ ତଥା ଓଡ଼ିଶା ଇତିହାସର କେତେକ କିମ୍ବଦନ୍ତୀମୂଳକ ବିବରଣ ସନ୍ନିବେଶିତ ଅଛି । ଏହି କିମ୍ବଦନ୍ତୀରୁ ଜଣାଯାଏ ଯେ, କେଶରୀବଂଶୀୟ ଏକ ରାଜା ଉତ୍କଳର ଜନୈକ ରାଜାଙ୍କ ଦ୍ୱାରା ପରାଭୂତ ହୋଇଥିଲେ । ସୋମକୁଳୀ କେଶରୀବଂଶୀୟ ରାଜାମାନଙ୍କର ତମ୍ବାପଟାରୁ ଜଣାଯାଏ ଯେ, ତତ୍‌କାଳୀନ ଉତ୍କଳର କେଶରୀବଂଶୀୟ ରାଜାମାନଙ୍କ ସହିତ 'ଡାହାଳ'ର ହୈହୟବଂଶୀୟ ରାଜାମାନଙ୍କର ଯୁଦ୍ଧ ବିଗ୍ରହ ଲାଗିଥିଲା । ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲିପିରେ ବର୍ଣ୍ଣିତ ଅଛି ଯେ, ଉତ୍କଳର କେଶରୀବଂଶୀୟ ଏକ ରାଜା ଡାହାଳ ରାଜ୍ୟ ଜୟ କରିଥିଲେ ।

ଏହି ବିବରଣଟି ୧୯୧୬ରେ ସଂଗୃହୀତ ହୋଇ ମୟୂରଭଞ୍ଜ ରାଜ୍ୟର ମହାଫିସଖାନାରେ ସ୍ଥାନ ପାଇଥିଲା । ଏହି ବିବରଣୀ ସହିତ ଆହୁରି ଅନେକ ଦଲିଲପତ୍ର ଥିଲା । ସମସ୍ତ କାଗଜପତ୍ର ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱବିଦ୍ ସ୍ୱର୍ଗୀୟ ନଗେନ୍ଦ୍ରନାଥ ବସୁଙ୍କ ଦ୍ୱାରା ୧୯୦୭-୧୯୧୦ ମଧ୍ୟରେ ସଂଗୃହୀତ ହୋଇଥିବାର କଥା ସେଥିରେ ଲିଖିତ ଅଛି । ୧୯୨୪ ଠାରୁ ମୟୂରଭଞ୍ଜ ପ୍ରତ୍ନତତ୍ତ୍ୱ ବିଭାଗ ସ୍ଥାପିତ ହେବାପରେ ଏହିସବୁ ଐତିହାସିକ ସଂଗ୍ରହ ବାରିପଦା ମିଉଜିଅମକୁ ସ୍ଥାନାନ୍ତରିତ ହେଲା ଓ ସେଠାରେ ଏହିସବୁ କାଗଜପତ୍ର ସୁରକ୍ଷିତ ଅଛି । ନରସିଂହପୁରର ବଂଶାବଳୀଟି ତହିଁର ନକଲ) --ଲେଖକ

**କିଲ୍ଲା ନରସିଂହପୁରର ବିସ୍ତୃତ ରାଜ-ଜୀବନୀ :**

ଦକ୍ଷିଣ ଦିଗରେ ବିଜୟପୁର ନାମକ ଏକ ଦେଶ । ସେ ଦେଶରେ ବିକ୍ରମକେଶରୀ ନାମେ ଏକ ସୂର୍ଯ୍ୟବଂଶୀୟ ରାଜା । ସେ ରାଜା ବଡ଼ ଧାର୍ମିକ ଶୂର ବିବେକୀ ଅଟନ୍ତି । ସେ ରାଜାଙ୍କର ଦୁଇ ପୁତ୍ର-- ଜ୍ୟେଷ୍ଠ ଧାର୍ମିକ କେଶରୀ, କନିଷ୍ଠ ବିକ୍ରମ କେଶରୀ । କିଛି ଦିନାନ୍ତେ ରାଜା ଆପଣା ଜରା ଅବସ୍ଥା ବିବେଚନା କରି ଦୁଇ ପୁତ୍ରକୁ ସ୍ୱୀୟ ରାଜ୍ୟ ବିଭକ୍ତ କରିଦେଇ ପରଲୋକ ଗମନ କଲେ । ତଦନ୍ତେ ଧାର୍ମିକ କେଶରୀ ରାଜା ହୋଇ ପ୍ରଜା ପାଳିଲେ । ବିକ୍ରମ କେଶରୀ ଆପଣା ଦେଶ ପ୍ରତିପାଳନ କରୁଥା'ନ୍ତି । ଏମନ୍ତେ କେତେଦିନ ଅନ୍ତେ

ଧର୍ମକେଶରୀ ରାଜା ମନରେ ବିକୃତ ଜାତ କରି ବିକ୍ରମ କେଶରୀ ବହୁତ ଜିଘାଂସା କଲେ । ଶୁଣି ବିକ୍ରମ କେଶରୀ ଅପମାନିତ ହୋଇ କଳହ ଆଚରିତ ଧର୍ମ କେଶରୀକି ବିକ୍ରମ କେଶରୀ ବଳରେ ସମାନ ନୁହନ୍ତି । ବଳାହାର କରି ବିକ୍ରମ କେଶରୀକୁ ରାଜ୍ୟରୁ ବାହାର କରିଦେଲେ । ସେଠାରୁ ବିକ୍ରମକେଶରୀ ଆପଣାର ବଳ ଘେନି ପରଦେଶକୁ ଗ୍ୱଲିଗଲେ । କେଉଁଠାର ଅପମାନ ପାନ୍ତି, କୌଣସିଠାରେ ଦେଶ ଜିଣି ଧନ ଜୂର କରିନିଅନ୍ତି । ଏମନ୍ତେ ଅନେକ ଦେଶ ଭ୍ରମି ଆସନ୍ତେ ଏକ ଦେଶରେ ପ୍ରବେଶ ହେଲେ । ଚିତ୍ରୋତ୍ପଳା ତୀରରେ ପ୍ରବେଶ ହେଲେ, ବଡ଼ ରମ୍ୟସ୍ଥାନ ହୋଇଅଛି । ପୂର୍ବେ ଗନ୍ଧମାର୍ଦ୍ଧନ ରାଜାଏ ଥିଲେ । ସେ ଭୂମି ସେ ରାଜାଙ୍କର, ତହିଁ ପ୍ରବେଶ ହେଲେ । ସେଠାରୁ ସିଂହପୁର ନାମକ ଏକ ଗ୍ରାମ ବସାଇ ଏବଂ ତହିଁରେ ନଅର ତୋଳାଇ ରହିଲେ । ମହାସୁଖରେ ଦିନ ହରୁଥାନ୍ତି, ଏମନ୍ତେ କେତେକାଳ ଅନ୍ତେ ସେ ରାଜାଙ୍କର ମୃତ୍ୟୁ ହେଲା, ଘରେ ତାଙ୍କ ପୁତ୍ର ବିନତ କେଶରୀ, ସେ ଦେଶର ରାଜା ହେଲେ । ଏ ରାଜା ବଡ଼ ଧାର୍ମିକ, କବି ଶୂରବନ୍ତ ଅଟନ୍ତି । ପରଦେଶ ଜିଣିପାରନ୍ତି, ଏମନ୍ତେ କିଛି ଦିନେ ତାଙ୍କର ମୃତ୍ୟୁ ହେଲା । ତାଙ୍କ ପୁତ୍ର ମିତ୍ର କେଶରୀ ସେ ଦେଶରେ ରାଜା ହେଲେ । ଅନେକ ଦେଶ ଜିଣିଲେ, ସବୁଠାରେ ମିତ୍ରପଣ କଲେ । ଏ ରାଜାଙ୍କର କାଳେ ମୃତ୍ୟୁ ହେଲାପରେ ତାଙ୍କ ପୁତ୍ର କଜ୍ଜ କେଶରୀ ରାଜା ହେଲେ । ପରେ ଏ ରାଜ୍ୟ ଭୋଗ କରି ପରଲୋକ ଯିବାରୁ ତାଙ୍କ ପୁତ୍ର ସିନ୍ଧୁକେଶରୀ ରାଜା ହେଲେ । ଏ କାଳେ ଭୋଗକରି ତାଙ୍କର ମୃତ୍ୟୁ ହେଲାପରେ ତାଙ୍କର ପୁତ୍ର ସିଦ୍ଧ କେଶରୀ ରାଜା ହେଲେ । କିଛିକାଳ ରାଜା ହୋଇ ତାଙ୍କର ମୃତ୍ୟୁ ହେଲାପରେ ତାଙ୍କ ପୁତ୍ର କାମକେଶରୀ ରାଜା ହେଲେ । ଏ ରାଜା ଅତି ବଳିଷ୍ଠ ଶୂର ଓ ବୀର ଅଟନ୍ତି । ନାମ ସବୁଦେଶରେ ଖ୍ୟାତ ହେଲା,ଏମନ୍ତ ବୀରପଣ ଶୁଣି ତାହାଳ * ନାମେ ଏକ ମ୍ଳେଚ୍ଛ ରାଜା । ଏ ରାଜା ବଡ଼ ଯୋଦ୍ଧା, ଅନେକ ଦେଶ ଜିଣି ଆସି କାମ କେଶରୀଙ୍କ ଦେଶରେ ପ୍ରବେଶ ହେଲେ । ଲୋକମାନଙ୍କୁ ପଗ୍ୱରି ଜାଣିଲେ । ଲୋକେ କହିଲେ କାମକେଶରୀ ନାମେ ରାଜାଏ । ଏହାଙ୍କର ରାଜ୍ୟ ଏହି । ଏ ରାଜାଙ୍କୁ ବଳରେ କେହି ସାମାନ୍ୟ ନୁହନ୍ତି । ସୂର୍ଯ୍ୟବଂଶୀୟ ରାଜାଏ । ଏମନ୍ତ ଶୁଣି ତାହାଳ ରାଜ ଥାଟ ଚଳାଇଲା । ଲୋକ ପଠାଇ କେଶରୀ ରାଜାଙ୍କୁ ଯୁଦ୍ଧ ମାଗିଲା । ତାହାଶୁଣି କେଶରୀ ରାଜା ମହାକୋପ କଲେ । ଯୁଦ୍ଧକୁ ସୈନ୍ୟ ସାଜିଲେ । ତାହାଳ ରାଜା ସଙ୍ଗେ ବହୁ ଯୁଦ୍ଧ କଲେ । କେଶରୀ ରାଜାଙ୍କର ଯେତେ ସୈନ୍ୟ ସବୁ ନାଶଗଲା । ଏକା ହୋଇ କେଶରୀ ରାଜା ବହୁତ ମାଲ ଯୁଦ୍ଧ କଲେ, ତାହାଳ ରାଜାଙ୍କୁ ଜିଣି ନପାରିଲେ । ବଳାହାରେ ତାହାଳ ରାଜା କେଶରୀ ରାଜାଙ୍କର ମୁଣ୍ଡ କାଟି ପକାଇଲା ।

ତହୁଁ ଯାଇ କେଶରୀ ରାଜାଙ୍କ ନଅର ଭିତରେ ପଶିଲା । ଯେ ସ୍ୱାମିଯୋଗୀ ଲୋକ ଥିଲେ, ସେ ସମସ୍ତଙ୍କୁ ନାଶ କଲା । ରାଣୀଙ୍କ ପୁରେ ପଶି ତିନି ରାଣୀଙ୍କି ବଳେ ଧରି ଆଣିଲା । ଦୁଇ ରାଣୀଙ୍କୁ ନଗର ଦ୍ୱାରେ ମାରି ପକାଇଲା । ତାଙ୍କର ସାନ ରାଣୀଙ୍କି ମାରନ୍ତେ ମନ୍ତ୍ରୀ ଜାଣି କହିଲା "ଏ ରାଣୀ ଗର୍ଭ ହୋଇଅଛନ୍ତି ଏହାଙ୍କୁ ନ ମାର ।" ଏହା ଶୁଣି ତାହାଳ ରାଣୀଙ୍କି ପଗ୍ୱରିଲେ । ରାଣୀ କହିଲେ, "ଆମ୍ଭେ ଆଠମାସ ଗର୍ଭବତୀ ହୋଇଅଛୁଁ ।"ଏହା ଶୁଣନ୍ତେ ସେ ରାଣୀଙ୍କୁ ଛାଡ଼ିଦେଲେ । ରାଣୀ ସେଠୁଁ ମହା ଆକୁଳରେ ପଳାଇଯାଇ ସେହି ଗ୍ରାମରେ ସଦାଶିବ ଜେନା ଘରେ ଯାଇ ପଶିଲେ । ସେ ସଦାଶିବ ଜେନା ରାଜାଙ୍କର ଦ୍ୱାରୀ । ତା ଭାର୍ଯ୍ୟା ସଙ୍ଗେ ମୈତ୍ରୀ ହେଲେ । ତାହାଳସେନା ରାଜା ସେଠାରେ ଦୁଇଦିନ ରହିଲା ପର କେଶରୀ ରାଜାଙ୍କର ଗ୍ରାମ ପାଟଣା ଭାଙ୍ଗୀ ପକାଇଲା । ସେ ଗ୍ରାମ ନିକଟରେ କମଳା ପାଟଣା ନାମେ ଏକ ଗ୍ରାମ ବସାଇଲା, ସେଠାରୁ ନିଜ ସୈନ୍ୟଙ୍କୁ ସଙ୍ଗରେ ଘେନି ନିଜ ଆବାସକୁ ଚଳିଗଲା । ଏମନ୍ତେ ୫/୭ ଦିନ ଉତ୍ତାରୁ ସଦାଶିବ ଜେନା ଓ ତାହାର ଭାର୍ଯ୍ୟା ବିଗ୍ୱରକଲେ ବୋଇଲେ, "ଆମ୍ଭେ ରାଣୀକି ରଖି ନପାରିବା; ଆନ ଦେଶର ନେଇ ଛାଡ଼ି ଆସିବା"; ଦ୍ୱାରୀ ଭାର୍ଯ୍ୟାଙ୍କୁ କହିଲା "ମୋ ବାପଘର ଅଛି ବୌଦ୍ଧଦେଶର କଣ୍ଟାବାଡ଼ି ଗ୍ରାମରେ; ତହିଁରେ ମୋ ପିତା ନାୟକ ଅଧିକାରୀ ହୋଇଅଛି; ଏ ଉତ୍ତାରୁ ଷାଠିଏ ପାଇକରେ ଦଳାଇ । ତାଙ୍କ ଘରେ ନେଇ ରାଣୀଙ୍କି ଛାଡ଼ି ଆସିବା, ମୋ ପିତା ସେ ରାଜାଠାରେ କହି ଏହାଙ୍କୁ ଉତ୍ତମ ସ୍ଥାନରେ ରଖାଇବେ ।" ଏମନ୍ତ ବୋଲି ରାଣୀଙ୍କି କହିଲେ । ରାଣୀ ସେ କଥାକୁ ସମ୍ମତ ଗଲେ । ଏମନ୍ତେ ସେ ରାଣୀଙ୍କୁ ସଙ୍ଗେ ଘେନି ବୌଦ୍ଧ ଦେଶକୁ ଗ୍ୱଲିଗଲେ । ଯାଇ ଆପଣା ପିତା ବନ୍ଧୁ ଅନନ୍ତ ନାୟକ ଘରଠାରେ ରାଣୀଙ୍କି ଘେନି ପ୍ରବେଶ ହେଲେ । ସଦାଶିବ ଜେନା ଆପଣା ଶ୍ୱଶୁରକୁ ସମସ୍ତ ମଣାଇ କହିଲା । ତାହାଶୁଣି ଅନନ୍ତ ନାୟକ ବଡ଼ ହର୍ଷ ହୋଇଲା । ଘର ଦୁଇ ବଖରା ଛାଡ଼ିଦେଲା । ରାଣୀଙ୍କି ସେ ଘରେ ରଖାଇ ସଞ୍ଜା ଯୋଗାଡ଼ ଦେଲା । ଏମନ୍ତେ ରାଣୀ ମହାସୁଖରେ ରହିଲେ । ପରିବାର ଦୁଇଜଣ ନିଯୋଗୀ ରଖାଇଦେଲା । ବୋଇଲା "ଆଜଠାରୁ ରାଣୀଙ୍କର ଯେତେ ଦ୍ରବ୍ୟ ଲାଗିବ ଏହାକୁ ଦେଉଥିବ ।" ଏମନ୍ତେ କେତେଦିନ ରହି ଶିବ ଜେନା ପତି ପତ୍ନୀ ଆପଣା ଦେଶକୁ ବାହୁଡ଼ି ଆସିଲେ । ତହୁଁ ବେନି ମାସ ରାଣୀ ରହିଲେ । ବେନିମାସ ଉତ୍ତାରୁ ରାଣୀଙ୍କ ଗର୍ଭରୁ ରାଣୀଙ୍କର ଯମଜ ପୁତ୍ର ଜାତ ହେଲା । ଲୋକେ ଯାଇ ନାୟକ ଅନନ୍ତକୁ କହିଲେ । ଶୁଣି ନାୟକ ସକଳ ସାମଗ୍ରୀ ନେଇଆଇ ଜଣେ ଖିଆଇ ଦେଲେ । ଏମନ୍ତେ କିଛିଦିନ ଅନ୍ତେ ଦୁଇ ପୁତ୍ରଙ୍କର ନାମ ଦେଲେ, - ବଡ଼ର ନାମ ମଧୁସୂଦନ ଏବଂ ଛୋଟ ପୁତ୍ରର ନାମ

ମାଧବସେନ । ଏମନ୍ତେ ନାମଦେଇ ଅତି ଯତ୍ନେ ପ୍ରତି ପାଳିଲେ । ପୁଣି କେତେକାଳ ଗଲା । ସପ୍ତମ ବର୍ଷେ ନାଉରା ଅର୍ଥାତ୍ କର୍ଣ୍ଣବୋଧ କରାଇଲେ । ପୁତ୍ରମାନଙ୍କୁ ପାଠ ପଢ଼ାଇଲେ । ଅସ୍ତ୍ର ବିଦ୍ୟା ଶିକ୍ଷା କରାଇଲେ । ଏମନ୍ତେ ଦଶବର୍ଷ ଗଲା । ଲୋକେ ନାୟକଙ୍କୁ କହିଲେ - "ଦୁଇ ଭାଇଙ୍କି ରାଜାଙ୍କଠାରେ ସାକ୍ଷାତ କରାଅ । ଗ୍ରକିରୀରେ ରଖାଇ ଦିଅ ।" ନାୟକ ସେ କଥାକୁ ସମ୍ମତ ନ କରି ବୋଇଲେ "ତାଙ୍କର ଇଚ୍ଛାରେ ସେ ଗ୍ରକିରି କରନ୍ତେ ସିନା, ମୁଁ ଚେଷ୍ଟା କରିବି ନାହିଁ ।" ଏମନ୍ତେ ଦିନକୁ ଦିନ ରାଜପୁତ୍ର ବଡ଼ ଚତୁର ହେଲେ, ବହୁତ ବିଦ୍ୟା ଶିଖିଲେ । ସାନ ଭାଇ ଶୂର ବୀର ସୁନ୍ଦର, ବିଦ୍ୟାରେ କେହି ସରି ନୁହଁନ୍ତି । ଦେବୀମାନଙ୍କଠାରେ ବଡ଼ ଭକ୍ତି ହେଲେ, କିନ୍ତୁ ବଡ଼ ଭାଇ ବିଷ୍ଣୁରେ ଭକ୍ତି ହେଲେ । ଏମନ୍ତେ ସେହି ଗ୍ରାମରେ ଥାନ୍ତି । ସେହି ଗ୍ରାମରେ ମହା ସିମିଳା ନାମେ ଏକ ଦେବୀ, ବଡ଼ ପ୍ରତ୍ୟେକ୍ଷ ଦେବତା । ସେହି ଦେବୀଙ୍କ ଠାରେ ମାଧବସେନ୍ ପୂଜା ମନ୍ତ୍ରରେ ତାଙ୍କୁ ଅର୍ଚ୍ଚନା କଲେ । ଅକ୍ଳେଶରେ ସେ ଦେବୀ ମାଧବସେନ୍‌ଙ୍କର ଭକ୍ତି ଦେଖି ତାଙ୍କୁ ପ୍ରସନ୍ନ ହେଲେ ଓ ବର ଦେଇ ବୋଇଲେ "ଆରେ କୁମର ତୋ ମନବାଞ୍ଛା ସିଦ୍ଧ ହେଉ, ରାଜସମ୍ପଦ ହେଉ, ରାଜ୍ୟ ଲାଭ ହେଉ, ତୋ ପିତା ଶସ୍ତ୍ର ଧରି ଦୁଇ ଭାଇ ଶତ୍ରୁକୁ ଜୟକର ।" ତାହା ଶୁଣି ମାଧବସେନ ବୋଇଲେ "ଭୋ ମାତ ! କାହିଁ ରାଜ୍ୟଲାଭ ହେବ, ମୋ ପିତାର ଅସ୍ତ୍ର ମୁଁ କାହୁଁ ପାଇବି ମୋ ପିତାଙ୍କୁ ମୁଁ ନ ଜାଣେ ।" ଦେବୀ ଆଜ୍ଞା କଲେ । ବୋଇଲେ, "ରେ କୁମର ତୋ ମାତାକୁ ପଗ୍ରରିବୁ, ସେ ସକଳ ବୃତ୍ତାନ୍ତ କହିବ ।" ଏତେ କହି ଦେବୀ ଅନ୍ତର୍ଦ୍ଧାନ ହେଲେ । ସେଠାରୁ ମାଧବସେନ୍ ଘରକୁ ଯାଇ ମାତାଙ୍କୁ ପଗ୍ରରିଲେ, "ହେ ମାତ ଆମ୍ଭର କେଉଁ ଦେଶ, ଆମ୍ଭର ପିତାର ନାମ କଅଣ, ଆମ୍ଭର ପିତାଙ୍କର ଅସ୍ତ୍ର କାହିଁ ଅଛି, ତୁମ୍ଭେ ଏଠାକୁ କିପାଇ ଅଇଲ, ଏକଥା ସବୁ ମୋତେ କହ ।" ଏହାଶୁଣି ମାତା ବେନିପୁତ୍ରକୁ ପାଖରେ ବସାଇ ସମସ୍ତ ଆଦ୍ୟପ୍ରାନ୍ତ କରି କହିଲେ । ବୋଇଲେ, "ବାବୁରେ ତୁମ୍ଭ ପିତା କେଶରୀ ରାଜା, ତାଙ୍କ ଉଆସ ସିଂହପୁର ନାମେ ଏକ ଗ୍ରାମ, ତୁମ୍ଭ ପିତା ତହିଁର ଆଧିପତି । ତୁମ୍ଭ ପିତାଙ୍କ କ୍ଷେତ୍ରିପଣ ଶୁଣି ତାହାଳିଆ ନାମେ ଏକ ରାଜା ଆସି ତାଙ୍କୁ ଯୁଦ୍ଧରେ ମାରିପକାଇଲା, ତାହା ଶୁଣି ଆମ୍ଭେମାନେ ଆତଙ୍କ ଭୟରେ ତୁମ୍ଭ ପିତାଙ୍କର ପୂଜ ପ୍ରତିମା ପୂଜା ଖଡ୍ଗ ଓ ଆଉ କିଛି ଅଳଙ୍କାର ଏମାନ କୂପରେ ପକାଇଦେଲୁଁ, ଗୃହରେ କବାଟ ପକାଇ ଲୁଚ ରହିଲୁଁ । ତାହାଳ ରାଗରେ ସମସ୍ତଙ୍କୁ ମାରି ପକାଇଲା । ମୁଁ କେବଳ ଆଠମାସ ଗର୍ଭ ହୋଇଥିଲି ଦେଖି ମୋତେ ଛାଡ଼ିଦେଲା । ମୁଁ ସେଠାରୁ ପଳାଇ ଆସି ତୁମ୍ଭ ପିତାଙ୍କ ଦ୍ୱାରୀ ସଦାଶିବ ଜେନାଙ୍କ ଘରେ ଯାଇ ଲୁଚି ରହିଲି, ତାହା ଭାର୍ଯ୍ୟା ସଙ୍ଗେ

ମୈତ୍ରୀ କଲି । ସଦାଶିବ ଜେନା ତାହାଳିଆ ଭୟରେ ଆପଣା ଘରେ ନ ରଖି ମୋତେ ଏଠାରେ ଛାଡ଼ିଗଲା । ମୋତେ ଅତି ଯତ୍ନରେ ଏହି ଅନନ୍ତ ନାୟକ ପ୍ରତିପାଳନ କଲା, ତୁମ୍ଭେ ଦୁଇଭାଇ ପର ପର ଜନ୍ମ ହେବାରୁ ସେ ଧାଈ ଲଗାଇ ଆମ୍ଭର ବିସ୍ତର ଉପକାର କଲା । ଅତଏବ୍ ବାବୁରେ ପାର ଯଦି ପିତୃ ଶତ୍ରୁ ନାଶ କରି ଆପଣା ଦେଶ ଆପଣା ରାଜ୍ୟ ଭୋଗ କର ।" ଏହାଶୁଣି ବେନି ପୁତ୍ର ବୋଇଲେ "ଆମ୍ଭେ ପିତୃ ରାଜ୍ୟକୁ ଯିବୁଁ, ପିତାଙ୍କ ଶତ୍ରୁ କାହିଁ ଅଛି ତାହା ବୁଝିବୁ ।" ତାହା ଶୁଣି ମାତା ବୋଇଲେ "ତୁମ୍ଭେ ଦୁଇଭାଇ ବାଳକ ତାହାଳ ରାଜାକୁ ଯୁଦ୍ଧରେ ସମାନ ନୁହ, ତାକୁ ଭୟ କରି କେଶରୀ ପଦ ଲୋପ କଲି; ଅତଏବ ବାବୁରେ ତୁମ୍ଭେମାନେ ସେଠକୁ ନ ଯାଅ ।" ମାଧବ ସେନ ବୋଇଲା, "ମାତା ଏମନ୍ତ କି ପାଇଁ କହୁଅଛ, କ୍ଷତ୍ରୀପୁତ୍ର ହୋଇ ଶତ୍ରୁକୁ କି ପାଇଁ ଡରିବୁଁ । ଅବଶ୍ୟ ସେଠାକୁ ଯିବୁଁ । ପିତୃକାର୍ଯ୍ୟ କରିବୁଁ । ମୋତେ କାଲି ରାତ୍ରିରେ ମହାସିମଳା ଦେବୀ ଆଜ୍ଞା ଦେଇଅଛନ୍ତି, କହିଅଛନ୍ତି । "ତୋ ପିତା ରାଜ୍ୟରେ ରଜା ହେବୁ, ପିତାର ଶତ୍ରୁକୁ ଜୟ କରିବୁ, ତୋ ପିତାଙ୍କ ଆୟୁଧ ଧରିଥିବୁ, ତୋ ଭ୍ରାତାଙ୍କୁ ଥାଟରେ ଅଧିକାରୀ କରିବୁ, ଏମନ୍ତ ବୋଲି ଦେବୀ ଆଜ୍ଞା ଦେଇଅଛନ୍ତି ।" ଶୁଣି ମାତା ପରମ ସାନନ୍ଦ ହେଲେ, ପୁତ୍ରକୁ କଲ୍ୟାଣ କଲେ, ବୋଇଲେ, "ଯାଅ ବାବୁ ଶତ୍ରୁକୁ ମାରି ଯୁଗେ ଯୁଗେ ରାଜ୍ୟ କର, ବୋଇଲେ କେବଳ ବେନି ଭାଇ ସଙ୍ଗ ଛଡ଼ାଛଡ଼ି ନୋହିବ," ମାତାଙ୍କଠାରୁ ଏହିସବୁ କଥା ଶୁଣି ବେନି ଭାଇ କିଛି ଦିନାନ୍ତେ ଆପଣା ପିତାଙ୍କ ରାଜ୍ୟକୁ ଗ୍ଭଲିଗଲେ । ଯିବା ସମୟେ ଅନନ୍ତ ନାୟକଙ୍କୁ ଦେବୀଙ୍କ ଆଦେଶ ପ୍ରଭୃତି ସମସ୍ତ କହିଲେ । ତାହା ଶୁଣି ଅନନ୍ତ ନାୟକ କହିଲେ "ତୁମ୍ଭ ସଙ୍ଗରେ କିଛି ଲୋକ ନିଅ ।" ମାଧବସେନ ବୋଇଲେ, "ଆମ୍ଭେ ଲୋକ ନେଇ କି କରିବୁଁ, କାହାକୁ ସଙ୍ଗରେ ନେବୁ ନାହିଁ ।" ଏମନ୍ତ କହି ସେଠାରୁ ଗ୍ଭଲିଗଲେ, ଯାଇ ଦେବୀଙ୍କ ଆଳୟରେ ମିଳିଲେ, ଦେବୀଙ୍କୁ ଦର୍ଶନ କଲେ । ବୋଇଲେ "ଭୋ ମାତ ଆମ୍ଭେ ଯାଉଅଛୁଁ, ପିତାଙ୍କ ଦେଶକୁ, ପ୍ରସନ୍ନ ହୋଇ ମୋତେ ଆଜ୍ଞା ଦିଅ ।" ଦେବୀ ଶୂନ୍ୟକୁ ଶବଦ କହିଲେ, "ରେ କୁମର ଶୀଘ୍ର ଯାଅ ତୋ ପିତାର ଶତ୍ରୁ ନାଶ ହେଲାଣି, ତୁ ସେ ଦେଶରେ ରାଜା ହୁଅ, ଯାଇ ତୁ ବଡ଼ ଭାଇକୁ ଥାଟ ରାଜା କରିବୁ, ମୁଁ ତୋ ସଙ୍ଗରେ ଥିବି, ପାଟ ଖଣ୍ଡା ରୂପରେ ତୋ ଖଡ୍‌ଗରେ ଥିବି, ତୋ ହସ୍ତରେ ଥିବି, ବେଗ ହୋଇଯାଅ ।" ଶୁଣି ବେନିଭାଇ ଶୀଘ୍ର ସେଠାରୁ ବିଦାୟ ହେଲେ । ଯାଇ କିଛି ଦିନ ଉତାରୁ ପିତାଙ୍କ ନଅରରେ ପ୍ରବେଶ ହେଲେ । ସେ ଦେଶର ଲୋକମାନଙ୍କୁ ପଗ୍ଭରିଲେ । "ଏ କେବଣ ଦେଶ, ଏ ଗ୍ରାମ ନାମ କଅଣ, ଏଥିରେ ଅଧିପତି କିଏ ?" ଶୁଣି ଜାଣିବା ଲୋକମାନେ

କହିଲେ, "ହେ ବିଦେଶୀ କେଉଁଠାରେ ତୁମ୍ଭ ଘର, କାହାକୁଳେ ଜାତ, ତୁମ୍ଭ ଦୁହିଙ୍କ ନା କଅଣ, କେଉଁଠାକୁ ଯାଉଅଛ, ଯାହା ପଗ୍ୱରିଲ ଶୁଣ କହୁଅଛି, "ପୂର୍ବେ ଏଠାରେ କେଶରୀ ନାମେ ସୂର୍ଯ୍ୟବଂଶୀୟ ରାଜାଏ ଥିଲେ । ତାହାଳ ରାଜା ସଙ୍ଗେ ଯୁଦ୍ଧ କରି ତାହା ହସ୍ତରେ ପ୍ରାଣ ହରାଇଲେ, ସେହିଦିନରୁ ତାହାଳ ରାଜାର ଏ ଗ୍ରାମ ।" ତାହା ଶୁଣି ମାଧବସେନ କହିଲେ "ଏଠାକୁ ଦିନକ ଅନ୍ତରରେ ଅରଣ୍ୟ ଭିତରେ ଏକ ଗଡ଼୍ କରି ରହିଅଛି, ବର୍ଷକୁ ବେଳେ ଦେଶ ଫେରିଆସନ୍ତି, ଆସିବା ସମୟ ନିକଟ ହେଲାଣି ।" ଏହା ଶୁଣି ବେନିଭାଇ ସେ ଗ୍ରାମ ପ୍ରାନ୍ତରେ ଏକ ଦେଉଳ ଅଛି, ତହିଁରେ ଏକ ଶିବଲିଙ୍ଗ ଅଛନ୍ତି, ସେଠାରେ ବେନିଭାଇ ରହିଲେ । ମାତାଙ୍କ ମିତ୍ର ସଦାଶିବ ଜେନାର ଭାର୍ଯ୍ୟାକୁ ପଗ୍ୱରି ଡକାଇଲେ । ସେ ପୁଅକୁ ଘେନି ଅଇଲେ । ତାଙ୍କୁ ବୋଇଲେ "ତୁମେ ପରା ସଦାଶିବ ଜେନା ଭାରିଯା, ତୁମ୍ଭ ଗୃହସ୍ଥ କାହିଁ ଅଛି ?" ସେ କହିଲେ "ବାବୁ ଆଜକୁ ଦୁଇ ବର୍ଷ ହେଲା ସେ ନାଶ ଗଲେଣି, ତୁମ୍ଭେ ଦୁଇଜଣ କିଏ ସେ, ମୋ ଗୃହସ୍ଥକୁ କିପରି ଜାଣିଲ ।" ଏହାଶୁଣି ବେନିଭାଇ କହିଲେ "ଆମ୍ଭ ମାତା କହିବାରୁ ଜାଣିଲୁ, ତୁମ୍ଭ ସଙ୍ଗେ ଆମ ମା ମୈତ୍ରୀ ହୋଇଅଛନ୍ତି । ତୁମ୍ଭ ଗୃହସ୍ଥ ସଦାଶିବ ଜେନା ସେ ଆମ୍ଭ ପିତାଙ୍କ ଦ୍ୱାରୀ ଥିଲେ । ତୁମ୍ଭେ ଆମ୍ଭ ମାତାଙ୍କୁ ତୁମ୍ଭ ପିତାଙ୍କ ଘରେ ଛାଡ଼ି ଅଇଲ, ଆମ୍ଭେ ଦୁଇଜଣ ସେହି ରାଣୀଙ୍କ ଗର୍ଭର ଯାଆଁଳା ହୋଇ ଜନ୍ମ ହୋଇଲୁଁ । ମାତା କହନ୍ତେ ଏଠାକୁ ଅଇଲୁଁ । ଆମ୍ଭ ପିତାଙ୍କ ନଅର କାହିଁଅଛି କୁହ, କୂପ କେଉଁଠାରେ ଅଛି କୁହ, ତୁମ୍ଭେ ଆମ୍ଭର ମାତାଙ୍କର ବଡ଼ ବିଶ୍ୱାସୀ ଅଟ ।" ଶୁଣି ସ୍ତମ୍ଭିତ ହୋଇ ରହିଲା, ମନରେ ବଡ଼ ସାନନ୍ଦ ଏ କଥାକୁ ବିଶ୍ୱାସ ଗଲା, ବୋଇଲା, "ଏ ସମସ୍ତ ସତ, ଏଠାରୁ ଗଲାବେଳକୁ ଆଠମାସ ଗର୍ଭ ହୋଇଥିଲେ, ବିଧାତା ବଂଶ ରଖିଲା, ଏ କେଶରୀ ରାଜାଙ୍କ ପୁତ୍ର ପିତାଙ୍କ ସାଦୃଶ ଦିଶୁଅଛନ୍ତି ।" ଏମନ୍ତ ବିଗ୍ୱରି ସବୁ ବିଷୟ ଆଦ୍ୟପ୍ରାନ୍ତ କହିଲା, ବୋଇଲା "ମୁଁ ତୁମ୍ଭ ମାତାଙ୍କ ସଙ୍ଗେ ମୈତ୍ରୀ କରିଅଛି, ବିପତ୍ତି କାଳରେ ସେ ମୋର ପ୍ରଭୁ, ମୁଁ ତାଙ୍କର ପାରିବାରି, ତାଙ୍କ ନଅରକୁ ମୁଁ ପାଣି ଦେଉଥାଏ, ମୋ ଗୃହସ୍ଥ ଦ୍ୱାରୀ ଥାନ୍ତି । ଏମନ୍ତ ବୋଲି ପୁତ୍ରକୁ ସଙ୍ଗେ ଘେନି ଘରକୁ ଯାଇ ଖାଦ୍ୟ ସାମଗ୍ରୀ ଅଣାଇଲେ । ବେନିଭାଇ ସେଠାରେ ରନ୍ଧନ ଭୋଜନ କରି ରାତ୍ରିଯାପନ କଲେ । ତହିଁ ଆରଦିନ ବୁଢ଼ୀ ଆଇଲା, ଦୁଇ ଭାଇକି ନେଇ ପିତାଙ୍କର ଓ୍ୟାସ ଦେଖାଇଲା । କୂପ ଯେଉଁଠାରେ ଅଛି କହିଦେଲା, କୂପ ପୋତା ପୋଡ଼ି ୫ ହାତ ଗଭୀର ଅଛି ଦେଖିଲେ, ସବୁସ୍ଥାନ ବୁଲି ଦେଖିଲେ, ବଡ଼ ରମ୍ୟସ୍ଥାନ ହୋଇଅଛି, ମାଧବସେନ କହିଲେ, "ଭାଇ ଏଠାରେ ଉଆସ କରି ରହିବା ।" ଶୁଣି ମଧୁସୂଦନ କହିଲେ "ଭାଇ ଏମନ୍ତ ନୁହେଁ, ଏ

ପିତୃବଧ ସ୍ଥାନ, ଶତ୍ରୁର ଉପଗତ ହୋଇଥିଲା ଏଠାରେ ରହିବା ନାହିଁ, ଆଗେ ଶତ୍ରୁକୁ ନାଶ କରି ଭଲ ସ୍ଥାନ ଦେଖି ରହିବା ।'' ଏମନ୍ତ ବିଚାର କରି ସେଠାରୁ ଅଇଲେ, ଆଉ ଦିନେ ଲୋକ ଲଗାଇ କୂପ ଖୋଳାଇଲେ, ଏମନ୍ତ କେତେ ଗଭୀର ହୁଅନ୍ତେ ଏକ ବିଷ୍ଣୁ ପ୍ରତିମା ପାଇଲେ । ପୁଣି ପାଞ୍ଚ ତରୱାର ପାଇଲେ । କିଛି ଅଳଙ୍କାର ଦ୍ରବ୍ୟ ମିଳିଲା, ଏହା ଘେନି କ୍ରମରେ ଆପଣା ରହିବା ସ୍ଥାନରେ ଆସି ମିଳିଲେ, ବେନି ଖଣ୍ଡା ବାଛି ରଖିଲେ, ଆଉ ତିନି ଖଣ୍ଡା ଓ ବିଷ୍ଣୁ ପ୍ରତିମା ଓ ଅଳଙ୍କାର ଦ୍ରବ୍ୟମାନ ନେଇ ସଦାଶିବ ଜେନା ପୁଅ ଓ ଭାର୍ଯ୍ୟାକୁ ଡାକି ତାଙ୍କ ଘରେ ରଖାଇଲେ, ସେଠାରୁ ଚାଲିଗଲେ । କିଛି ଦିନ ଅନ୍ତରେ ଯାଇ ସ୍ନାନଶୌଚ ହୋଇ ସେ ବେନି ଖଣ୍ଡାକୁ ପୂଜା କଲେ । ମାଧବ ସେନ ପାଟ ଖଣ୍ଡା ନାମେ ମହାମାୟା କି ପୂଜା କଲେ, ପୂଜା ସାରି ଉଠିଲେ, ଅଦ୍ଭୁତ ଡାହାଣ ପାର୍ଶ୍ୱ ଖଡ୍‌ଗ ମାଧବ ସେନ ପାଖକୁ ଡେଇଁ ପଡ଼ିଲା ଦେଖି ମାଧବସେନ ମହା ହର୍ଷ ହେଲେ, ବାମ ଭାଗ ଖଣ୍ଡା ବଡ଼ ଭାଇଙ୍କ କରରେ ଦେଲେ, ତହିଁ ଶୀତଳ ମଣୋହିଁ ବଢ଼ାଇଲେ, ପଛେ ଯାଇ ଏକ ବ୍ରାହ୍ମଣ ଶାସନରେ ପ୍ରବେଶ ହେଲେ । ସନ୍ଧ୍ୟା ସମୟରେ ସେ ଗ୍ରାମରେ ମଣ୍ଡପ ଗୋଟାଏ ଅଛି, ସେ ମଣ୍ଡପ ବ୍ରାହ୍ମଣମାନଙ୍କ ଗୋଷ୍ଠି ସ୍ଥାନ, ସେଠାରେ ପ୍ରବେଶ ହେଲେ, ତାଙ୍କୁ ଦେଖି ବ୍ରାହ୍ମଣମାନେ ଗୋଟିଏ ଗୋଟିଏ ହୋଇ ପାଖରେ ମିଳି ତାଙ୍କୁ ପଚାରିଲେ, କହିଲେ ''ହେ ବିଦେଶୀ ତୁମ୍ଭେ ଦୁଇଜଣ କେଉଁ ଦେଶରୁ ଆଇଲ, କାହିଁ ଯିବ, କାହା କୁଳେ ଜାତ ତୁମ୍ଭର ।'' ତାହାଶୁଣି ବେନିଭାଇ କହିଲେ ''ଆମ୍ଭ ଘର ବହୁ ଦୂରରେ, ଆମ୍ଭେ କ୍ଷତ୍ରିୟ କୁଳରେ ଜାତ, ଏକ ମାତାଙ୍କ ଠାରୁ ଆମ୍ଭେ ବେନି ଭାଇ ଜାତ, ମୋର ନାମ ମଧୁସୂଦନ ଓ ମୋର ସାନଭାଇ ଏହାଙ୍କ ନାମ ମାଧବ ସେନ, ଆମ୍ଭେ ଆସି ଅଛୁଁ ଚାକିରି ନିମନ୍ତେ, ଶୁଣିଲୁଁ ଡାହାଳ ସେନ ନାମେ ରାଜା ଏଠାରେ ଅଛନ୍ତି, ଏସବୁ ଶୁଣି ଅଇଲୁଁ, ତାଙ୍କ ଠାକୁ ଯିବୁଁ ଚାକିରି କରିବୁ ।'' ଏହା ଶୁଣି ସେ ଦ୍ୱିଜମାନେ କହିଲେ, ''ହେ ବିଦେଶୀ, ଯାହା ବୋଇଲ ଏ ପ୍ରମାଣ । ସେ ଥିଲେ ରଖିଥାଆନ୍ତେ, ଆଜକୁ ବର୍ଷେ ହେଲା ସେ ରାଜା ସମୁଦ୍ର ସ୍ନାନକୁ ଯାଇ ପ୍ରାଣ ହରାଇଲେଣି, ତାଙ୍କର ସେବକ ଲୋକ ପ୍ରତିଷ୍ଠାକ, ଏ ଆସି ବାର୍ତ୍ତା କହିବାରୁ ତାହା ଶୁଣି ତାଙ୍କର ଊନଶତ ରାଣୀ ଥିଲେ, ସେମାନେ ପୁଷ୍କରିଣୀରେ ଝାସଦେଇ ପ୍ରାଣ ହରାଇଲେ, ତାଙ୍କ ବଂଶ ନିର୍ବଂଶ ହେଲା, ସ୍ୱଭାବେ ସେତ ଅପୁତ୍ରିକ ରାଜା, ଏଣୁ କରି ବଂଶରେ କେହି ନାହାନ୍ତି, ସେଠାକୁ କାହିଁକି ଯିବ, ସେ ସ୍ଥାନ ବିଜନପୁର ହୋଇଅଛି ।'' ଏମନ୍ତ ଶୁଣି ଦୁଇ ଭାଇ ମନରୁ ବିଚାରିଲେ, ''ଆମ୍ଭ ପିତାଙ୍କ ଶତ୍ରୁନାଶ ଗଲାଣି ଏହିଠାରୁ ଫେରିଯିବା, ମାତାଙ୍କୁ ଆଣିବା, କିଛି ଲୋକ ସଙ୍ଗେ ଘେନି ଏ ରାଜ୍ୟ ଭୋଗ କରିବା'',

ଏମନ୍ତ ବୋଲି କୁହାକୁହି ହେଲେ । ଏହି ସମୟେ ସେ ବ୍ରାହ୍ମଣମାନେ ଆପଣା ଘରକୁ ଯିବା କାଳରେ ସେ ଦୁଇ ଭାଇକି କହିଲେ, ''ହେ ବିଦେଶୀ ଯୁବକ ଆସ ଗ୍ରାମ ଭିତରକୁ, ଆମ୍ଭ ଗୃହେ ଭୋଜନ କରି ନିଶ୍ଚିନ୍ତରେ ରାତ୍ର ବଞ୍ଚିବ, ଏଠାରେ ରହିବା ହେଉନାହିଁ, ଏ ଦେଶରେ ବ୍ୟାଘ୍ର ଭୟ ହୋଇଅଛି, ଅନେକ ଲୋକଙ୍କୁ ବ୍ୟାଘ୍ର ଖାଇଲାଣି, ତୁମ୍ଭେ ଏଠାରେ ନରୁହ'', ଏହାଶୁଣି ବେନି ବୀରେ ବୋଇଲେ ଆମ୍ଭେ ପର ପାକରେ ଅନ୍ନ ଭୁଞ୍ଜିବୁ ନାହିଁ, ଆମ୍ଭେ ସୂର୍ଯ୍ୟବଂଶୀୟ ଅଟୁଁ, ଆମ୍ଭେ ସୁଖେ ରନ୍ଧନ ଭୋଜନ କରିବୁ । ବ୍ୟାଘ୍ର ଭୟ ହେଲା ହେଉପଛେ, କ୍ଷତ୍ରି ପୁତ୍ର ହୋଇ ଏ ଛାର କଥାକୁ କିପାଇଁ ଡରିବା, ଆପଣମାନେ ଯିବା ହେଲେ ଆମ୍ଭେ ଏହିଠାରେ ରାତ୍ରି ଯାପନ କରିବୁଁ ।'' ତହୁଁ ବିପ୍ରମାନେ ଚଳିଗଲେ । ସେଠାରୁ ସଞ୍ଜା ସାମଗ୍ରୀ କିଣି ବେନିଭାଇ ରନ୍ଧନ ଭୋଜନ କଲେ, ବଡ଼ ଭାଇ ଜଗି ରହିଲେ, ସାନ ଭାଇ ନିଦ୍ରା ଗଲେ, ରାତ୍ରି ପାଞ୍ଚ ଘଟି, ମାନେ ମହା ସିମଳା ଦେବୀ ସ୍ୱପ୍ନରେ କହିଲେ, ''ରେ ମାଧବ ସେନ ବେଗେ ଉଠି ଖଣ୍ଡା ଘେନି ବସ, ଏଠାରେ ଏକ ଦୁଷ୍ଟ ଦେବୀ ବାଘୁଣୀ ରୂପରେ ମନୁଷ୍ୟ ଖାଉଅଛି, ଏହାକୁ ମାରିବୁ, ପାଟ ଖଣ୍ଡାରେ ହାଣି ପକାଇବୁ । ତାପରେ ଅଧିପତି ହେବୁ ।'' ଏହାଶୁଣି ମାଧବ ସେନ ଚେତି ଉଠିବସିଲେ, ବଡ଼ଭାଇ ମଧୁସୂଦନ ନିଦ୍ରାଗଲେ, ଏମନ୍ତ ରାତ୍ର ଅର୍ଦ୍ଧମାନ ହୋଇଅଛି ମାଧବ ସେନ ଖଣ୍ଡା ଧରି ବସି ଅଛନ୍ତି । ସେ ବାଘୁଣୀ ଆସି ଏହି ସମୟରେ ମାଧବ ସେନ ଉପରେ ଝୁମ୍ପି ପଡ଼ିଲା, ପଡ଼ନ୍ତେ ମାଧବ ସେନ ପାଟଖଣ୍ଡା ଦେଇ ସେ ବାଘକୁ ହାଣି ପକାଇଲେ, ବାଘ ଗଣ୍ଡିରେ ଘ୍ୱେଟ ବାଜନ୍ତେ ସେ ଖଣ୍ଡ ଖଣ୍ଡ ହୋଇ ମଣ୍ଡପ ତଳେ ପଡ଼ିଲା, ଦେଖି ମାଧବ ସେନ ହର୍ଷ ହେଲେ, ଭାଇକି ଚେତାଇଲେ, ବେନିଭାଇ ଉଠି ମଣ୍ଡପ ତଳେ ଦେଖିଲେ ଗୋଟାଏ ବାଘୁଣୀ କଟା ହୋଇ ପଡ଼ି ରହିଅଛି, ତାହା ଦେଖି ବେନିଭାଇ ସେଠାରୁ ନେଉଟିଲେ, ଏମନ୍ତେ କେତେବେଳେ ରାତ୍ର ପାହିଲା, ତହୁଁ ଉଠି ବେନିଭାଇ ମାତା ପାଖକୁ ନେଉଟି ଆସନ୍ତେ ସେ ନଗରର ବ୍ରାହ୍ମଣମାନେ ଉଠି ଦେଖିଲେ ବ୍ୟାଘ୍ର ମରି ମଣ୍ଡପ ତଳେ ପଡ଼ି ରହିଅଛି, ବୋଇଲେ ''ଏ କର୍ମ କିଏ କଲ ।'' ଦେଖିବା ଲୋକ କହିଲେ, ''କାଲି ଯେ ବିଦେଶୀ ଦୁଇଜଣ ଏଠାରେ ଥିଲେ, ସେହିମାନେ ଏଠାରେ ଥିଲେ, ସେହିମାନେ ଏ କାମ କରିଅଛନ୍ତି, ସେମାନେ କେଉଁ କତି ଗଲେ ତାଙ୍କୁ ଖୋଜାଅ, ସମସ୍ତେ ଏକ ମୁଖ ହୋଇ ତାଙ୍କୁ ଆଶୀର୍ବାଦ କରିବା, ଏଠାରେ ତାହାଙ୍କୁ ଅଧିପତି କରିବା, ତାହାଙ୍କ ହାତରେ ଆମର ଶତ୍ରୁ ବିନାଶ କରାଇବା ।'' ଏମନ୍ତ ବୋଲି ଘ୍ୱରିଦିଗ ଖୋଜାଇଲେ, କିଛି ଦୂର ଅନ୍ତରେ ବେନିଭାଇଙ୍କୁ ଭେଟ ପାଇଲେ । ଯାଇ ଆଗ ଓଗାଳି ବ୍ରାହ୍ମଣମାନେ କହିଲେ, ''ଆପଣ ବ୍ୟାଘ୍ର ମାରି ଆମକୁ ନିର୍ଭୟ କଲେ

ଏବେ ସମସ୍ତ ବିପ୍ରମାନେ କହୁଅଛନ୍ତି ବାହୁଡ଼ିବା ହେଉ, ଯେ ବାଘ ମାରିଅଛି ତାହାକୁ ଏ ଦେଶରେ ରାଜା କରିବା, ଆମ୍ଭେ ସମସ୍ତେ ତାଙ୍କର ସେବା କରୁଥିବୁଁ ।'' ଏହାଶୁଣି ମାଧବ ସେନ ବୋଇଲେ ''ଆମ୍ଭଙ୍କୁ ବ୍ୟାଘ୍ର ଝୁମ୍ପି ଦିଅନ୍ତେ ଆମ୍ଭେ ବ୍ୟାଘ୍ରକୁ ବିନାଶ କରିଅଛୁ'', ଏହାଶୁଣି ଦ୍ୱିଜମାନ କଲ୍ୟାଣ କଲେ, ''ତୁମ୍ଭଙ୍କୁ ରାଜଲକ୍ଷ୍ମୀ ପ୍ରାପ୍ତ ହେଉ, ରାଜ୍ୟ ଲାଭ ହେଉ, ଶତ୍ରୁକୁ ବଳରେ ଜୟ କର ।'' ଏମନ୍ତ ବୋଲି କଲ୍ୟାଣ କଲେ, ବୋଇଲେ ''ଚାଲ ଆମ୍ଭ ନଗରକୁ ଯିବା ।'' ମାଧବ ସେନ କହିଲେ ''ଆମ୍ଭେ କଦାପି ନ ଯିବୁଁ, ଆମ୍ଭ ସଙ୍ଗରେ ସୈନ୍ୟ ବଳ ନାହିଁ, କଅଣ ଘେନି ରାଜପଣ କରିବୁଁ, ଆମ୍ଭଙ୍କୁ ଏହି କଲ୍ୟାଣ କରୁଥାଅ ପୁଣି ସମୟକେ କିଛି ଦିନ ଅନ୍ତେ ଆସିବୁଁ, ଆପଣ ବାହୁଡିବା ହେଉ ।'' ଏମନ୍ତ ବୋଲି ସେଠାରୁ ଚାଲିଗଲେ, ଯାଇ ସଦାଶିବ ଜେନା ଘରେ ପହଞ୍ଚିଲେ, ସେଠାରେ ସେ ରାତ୍ରି ରହି ଆରଦିନ ସଦାଶିବ ଜେନା ପୁଅକୁ ସଙ୍ଗରେ ଘେନି ପିତାଙ୍କ ପୂଜା ପ୍ରତିମା, ତିନି ଖଡ୍‌ଗ ଆଉ ଦ୍ରବ୍ୟମାନ ଘେନି ଚାଲିଗଲେ । ଯାଇ କିଛି ଦିନେ ମାତାଙ୍କ ପାଖେ ମିଳିଲେ, ମାତାଙ୍କ ଆଗରେ ପୂଜା ପ୍ରତିମା ଓ ଖଡ୍‌ଗମାନ ଓ ଅଳଙ୍କାର ଦ୍ରବ୍ୟ ନେଇ ଦେଲେ, ଦେଖି ମାତା ଚିହ୍ନିଲେ ଏବଂ ପୁତ୍ରଙ୍କୁ ଆଶୀର୍ବାଦ କଲେ, ପୁତ୍ରମାନେ କହିଲେ ''ଆମ୍ଭେ ଏଠାରୁ ଗଲୁ ପିତାଙ୍କ ଦେଶରେ ଯାଇ ମିଳିଲୁ, ଲୋକଙ୍କୁ ପଚାରି ତୁମ୍ଭ ମୈତ୍ରୀଙ୍କୁ ଚିହ୍ନିଲୁ, ତାଙ୍କୁ ପଚାରି ନଅର ଦେଖିଲୁ, କୂଅ ଖୋଳାଇଲୁ, ସେଠାରୁ ଏ ମାନ ପାଇଲୁଁ, ତହୁଁ ଚାଲିଯାଇ ଏକ ବ୍ରାହ୍ମଣ ଶାସନରେ ମିଳିଲୁ, ତହିଁ ରହି ଏକ ବାଘୁଣୀକୁ ମାଇଲୁ, ସେ ଦେଶ ବିପ୍ରଙ୍କ ଠାରୁ ଶୁଣିଲୁ ପିତାଙ୍କ ଶତ୍ରୁ ନାଶଗଲାଣି, ତାଙ୍କ ବଂଶ ନିର୍ବଂଶ ହୋଇଅଛି, ସେଠାରୁ ବାହୁଡ଼ି ଆସନ୍ତେ ସେ ବିପ୍ରମାନେ ବାଟ ଓଗାଳିଲେ ଓ କହିଲେ ବ୍ୟାଘ୍ରକୁ ଯେ ମାରିଅଛି ତାହାଙ୍କୁ ଏ ଦେଶରେ ଠାକୁର କରି ମାନିବୁ, ଆମ୍ଭେ ବୋଇଲୁ ଆମ୍ଭ ସାନଭାଇ ମାଧବସେନ ବାଘକୁ ମାରି ଅଛନ୍ତି । ଆମ୍ଭଠାରୁ ଶୁଣି ତାଙ୍କୁ ଅନେକ କଲ୍ୟାଣ କଲେ, ରାଜସମ୍ପଦ ହେଉ ଏଠାରେ ରାଜା ହୁଅ ବୋଲି କଲ୍ୟାଣ କଲେ, ଆମ୍ଭମାନଙ୍କୁ ନେଉଟାଉ ଥିଲେ, ଆମ୍ଭେ ଯିବାକୁ ନାସ୍ତିକଲୁଁ, ପୁଣି ତାଙ୍କୁ ବୋଇଲୁଁ କିଛିଦିନ ବାଦ ଆସିବୁଁ, ସୈନ୍ୟ ଘେନି ଏଠାରେ ଯେ ଦୁଷ୍ଟ ଲୋକ ଅଛନ୍ତି ଦମନ କରି ତେବେ ଏ ରାଜ୍ୟରେ ରାଜା ହେବୁଁ, ଏ ବଚନ ତାଙ୍କୁ କହି ଫେରି ଆଇଲୁ ।'' ଏମନ୍ତ କଥା ମାତାଙ୍କ ଆଗରେ କହିବାରୁ, ମାତା କହିଲେ, ''ଅନନ୍ତ ନାୟକ କୁହ, ତାଙ୍କୁ ସଙ୍ଗେ ଘେନି ରିପୁ ଜୟ କର, ଦେଶ ଭୋଗ କର,'' ତହୁ କିଛିଦିନ ପରେ ମାଧବ ବୋଇଲେ ''ମାତା ଚାଲ ଆମ୍ଭ ଦେଶକୁ ଯିବା, ଶୁଣି ମାତା କହିଲେ, ''ତୁମ୍ଭେମାନେ ବାଳକ ଯୁଦ୍ଧ କରି ଜାଣ ନାହିଁ, କେମନ୍ତ

ରାଜ୍ୟ କରିବ, ସଙ୍ଗରେ ସୈନ୍ୟ ବଳ ନାହିଁ, କିପରି ରାଜ୍ୟ କରିବ ।'' ମାଧବ କହିଲେ ''ମାତା କହି ଅଛନ୍ତି ଭଲ ଆମ୍ଭେ ଯେବେ ରାଜପୁତ୍ର ଅବଶ୍ୟ ରାଜ୍ୟ କରିବୁ । ଦୁଷ୍ଟମାନଙ୍କୁ ସାଧ୍ୟ କରିବୁ'', ଏମନ୍ତ ବୋଲି ନାୟକ ଅନନ୍ତକୁ ଅଣାଇ ସମସ୍ତ କହିଲେ, ବୋଇଲେ ''ଆମ୍ଭେ କେଶରୀ ରାଜାଙ୍କ ପୁତ୍ର, ପିତାଙ୍କୁ ତାହାଳ ରାଜା ନାଶ କଲା, ମାତା ପଳାଇଆସି ତୁମ୍ଭ ପାଖରେ ଆସି ରହିଲେ, ଏହାଙ୍କୁ ପାଳି ଆମ୍ଭର ବଂଶ ରଖିଲ, ତୁମ୍ଭର ଏ ଉପକାର ଆମ୍ଭେ କେମନ୍ତେ ସୁଝିବୁ, ଏବେ ଏମନ୍ତ କରିବା ଚ୍ଚଲିଆସ, ପିତାଙ୍କ ଦେଶକୁ ଯିବା, ଆମ୍ଭେ ତହିଁରେ ରାଜା ହୋଇ ତୁମ୍ଭଙ୍କୁ କିଛି ରାଜ୍ୟ ଦେବୁ, ଦୁଷ୍ଟ ପାପୀଷ୍ଠକୁ ମାରି ସୁଖେ ରାଜ୍ୟ କରିବା, ତୁମ୍ଭେ କେବଳ ଆମ୍ଭ ସଙ୍ଗରେ ଥାଇ ସୈନ୍ୟବଳ ସଂଗ୍ରହ କରିବ ।'' ଏହାଶୁଣି ଅନନ୍ତ ନାୟକ ସମ୍ମତ ହେଲେ, ତହୁଁ ଯାଇ ଦେବୀଙ୍କ ଆଳୟରେ ପହଞ୍ଚିଲେ ଦେବୀଙ୍କି ଧ୍ୟାନ କରି ମନରେ ବାଞ୍ଛାକଲେ । ବୋଇଲେ ''ଭୋ ଦେବୀ, ମାତା ! ତୁମ୍ଭେ ଯେଉଁ ବର ଦେଇଥିଲ, ସେ ସଫଳ ହେଲା, ପିତା ଶତ୍ରୁଙ୍କୁ ନ ମାରୁ ସେ ଆପଣା ଇଚ୍ଛାରେ ମଲା, ମୁଁ କିଛି ନଜାଣେ କି ମୋତେ ରାଜ୍ୟ କରିବି, ଅନେକ ଦୁଷ୍ଟ ଲୋକ ଅଛନ୍ତି ତାଙ୍କୁ ଦମନ କରିବା କି ରୂପେ ?'' ଏହା ମୋତେ ଆଜ୍ଞା ଦିଅ ।'' ଏମନ୍ତ ବୋଲି କୁଶାସନରେ ଶୋଇଲେ, କେତେକ ରାତ୍ରିରେ ଦେବୀ ମାଧବଙ୍କୁ କହିଲେ, ''ରେ ! ମାଧବ, ଯୁଦ୍ଧକରି ଲୋକମାନଙ୍କୁ ଦମନ କର ଆମ୍ଭେ ପାଟ ଖଣ୍ଡା ରୂପେ ତୁମ୍ଭର ସହାୟ ଥିବୁ, ଏହି ଗ୍ରାମର ନାୟକ ପାଇକ ତୋ ସାଙ୍ଗରେ ଥାଇ ଯୁଦ୍ଧ କରିବେ, ଅନନ୍ତ ନାୟକ ତାହାର ଷାଠିଏ ପାଇକ ନେଇ ଯୁଦ୍ଧ ଯାତ୍ରା କର, ଆମ୍ଭେ ଅଲକ୍ଷିତରେ ତୁମ୍ଭର ସହାୟତା କରିବୁ, ଆଜିଠାରୁ ମୋର ପୂଜାଅର୍ଚ୍ଚନା କରିବ । ଅବଶ୍ୟ ତୁମ୍ଭର ରାଜ୍ୟ ଲାଭ ହେବ, ସେ ସବୁ ଦୁଷ୍ଟ ଲୋକ ଅଛି ଅନାୟାସରେ ତୁମ୍ଭ ହାତରେ ବଧ ହେବେ ।'' ଏହା କହି ଦେବୀ ଅନ୍ତର୍ଦ୍ଧାନ ହେଲେ, ମାଧବସେନ ଏମନ୍ତ ନାୟକଙ୍କୁ ସେସବୁ କଥା କହି ସେଠୁଁ ନାୟକର ଲୋକବଳ ସବୁଘେନି ପ୍ରଦେଶକୁ ଚ୍ଚଲିଗଲେ । ଦେବୀ ଆଜ୍ଞାରେ ମାଧବସେନ ଅନନ୍ତ ନାୟକକୁ ଓ ତାହାର ଦଳସ୍ଥ ଷାଠିଏ ଘର ପାଇକ ନେଇ ବାଘମାରି ଦେଶକୁ ଯାଇ ସେଠାକାର ବ୍ରାହ୍ମଣମାନଙ୍କ ଦ୍ୱାରା ଅଭିଷିକ୍ତ ହେଲେ ଏବଂ ସେ ଠାବରେ ଚ୍ଚରିପାଖେ ଯେତେ ଦୁଷ୍ଟ ଲୋକ ଥିଲେ ସେମାନଙ୍କୁ ବଶ କରି ଭାନୁକୋଟରେ * ଉପସ୍ଥିତ ହେଲେ, ସେ କୋଟରଅଧିପତି ନରସିଂହ ଜେନା ଓ ତାହା ଭାଇ ପୁରୁଜେନା ତାଙ୍କର ସହିତ ଅନେକ ଯୁଦ୍ଧ କରି ତାହାଙ୍କୁ କୌଣସି ରୂପେ ଜୟ କରି ନପାରି ନାନା କୌଶଳରେ ତାଙ୍କ ଦୁଇ ଭାଇଙ୍କି ଧରି ଆଣିଲେ, ଅନେକ ମାଡ଼ ମାରିଲେ, ତଥାପି ତାଙ୍କ ପ୍ରାଣ ଗଲାନାହିଁ ଦେଖି ମାଧବ ସେନ ତାହାକୁ ମାରିବା

ପାଇଁ ନାନାବିଧ ଯାତନା ଦେବାକୁ ଲାଗିଲେ, ତହିଁରେ ସେହି ଦୁଇଭାଇ ବହୁତ ଯାତନା ପାଇ କହିଲା, "ତୁମ୍ଭେ ଆମ୍ଭଙ୍କୁ ସହଜରେ ମାରି ପାରିବନାହିଁ, ଆମ୍ଭ ସଙ୍ଗରେ ପ୍ରତିଜ୍ଞା କରି କହ ଆମ ଦୁଇଭାଇର ନାମ ଯହିଁରେ ଚିରକାଳ ଲୋକେ ସ୍ମରଣ କରନ୍ତି, ଯଦି ସେପରି କରିବ, ତାହାହେଲେ ଆମ୍ଭେ ଦୁଇଭାଇ ତୁମ୍ଭ ହସ୍ତରେ ମରିବୁ ।" ଏହିକଥା ଶୁଣି ମାଧବସେନ ପ୍ରତିଜ୍ଞା କଲାରୁ ନରସିଂହ ଜେନା କହିଲା ଯେ, "ଆମ୍ଭର ଦୁଇଭାଇ ମଥା ଓ ଗୋଡ଼କୁ ଗ୍ଋରିଭାଗ କରି ଏ ରାଜ୍ୟର ଚାରିଆଡ଼େ ପୃତି ପୂଜା କରିବ ଏବଂ ଏହି ରାଜ୍ୟର ନାମ ନରସିଂହପୁର ରଖିବ ।" ଏହିକଥା କହି ଆପଣା ଆପଣା ମୁଖଭିତରୁ କୌଣସି ଔଷଧ ଉଗାରି ପକାଇବାରୁ ମହା ସିମଳା ଦେବୀଙ୍କ ଆଦିଷ୍ଟ ଖଡ଼୍‌ଗରୁ ମାଧବସେନ ତାଙ୍କ ଦୁଇଭାଇଙ୍କୁ କାଟି ଖଣ୍ଡ ଖଣ୍ଡ କରି ଗ୍ଋରିଠାବରେ ପୋତି ରଖି ଏ ରାଜ୍ୟର ନାମ ନରସିଂହପୁର ଦେଲେ ଏବଂ ସେଥିମଧ୍ୟେ ପାଇକ ପାଟଣା ବସାଇଲେ, ତହୁଁ ସେଠାରୁ ଯାଇ ଆଉ ଗୋଟିଏ ଗଡ଼କୁ ଆକ୍ରମଣ କଲେ, ସେ କୋର୍ଟର ନାମ ସୂଳିବନ୍ଧ, ତହିଁରେ ଏକମାଳି ଅଧିପତି, ସେ ମାଳି ଚମ୍ପାନାଥ ଦେବପ୍ରସାଦରୁ ବହୁତ ଦ୍ରବ୍ୟ ମିଳିପାରେ, ତାହାର ଘୋଡ଼ା, ହାତୀ, ଗମନ କରେ, ଅଳ୍ପ ସୈନ୍ୟ, ଏଣୁ କରି ସର୍ବେଶ୍ୱର କାହାକୁ ନ ମାନଇ, ମାଧବ ସେନ ତାହା ସହିତ ଯୁଦ୍ଧ କରି ତାହାର ସର୍ବସ୍ୱ ଲୁଟି ଆଣି ତାହାକୁ ସମରେ ଜିତିଲେ, ସେଠାରୁ କୋଟପୁରୀ ନାମେ ଏକ କୋର୍ଟ ଅଛି, ତହିଁ ପ୍ରବେଶ ହେଲେ, ସେଠାକାର ଦୁଷ୍ଟ ଲୋକକୁ ଦମନ କରି ଅନନ୍ତ ନାୟକକୁ ସେ ଗ୍ରାମ ଦେଇ ତାହାର ପ୍ରତ୍ୟୁପକାର କଲେ, ପରେ ସେଠାରୁ ଯାଇ ଝାଜି ନାମରେ ଏକ ଓ୍ୟାସ ତୋଳାଇଲେ, ସେଠାରେ ଗଡ଼ କାଟି କାଲୁଆ ତୟାର କଲେ, ପରେ ଅନନ୍ତ ନାୟକକୁ କହି ତାଙ୍କର ମାତା ଓ ୬୦ ଘର ପାଇକର ପରିବାରମାନଙ୍କୁ ସେଠାରୁ ଉଠାଇ ଆଣି ଏଠାରେ ବସବାସ କରାଇ ପରେ ଉତ୍ତମ କୁଳେ ରାଜା ବିବାହ କଲେ, ତହୁଁ ଦଶଖମ୍ବ କୋର୍ଟରେ ଅପାଢ୍ରୀ ବ୍ରାହ୍ମଣ ଅଧିପତି ଥିଲା, ତାହ ପୁତ୍ର ମହାବଳିଷ୍ଠ ପଣ କରି ଆପଣାର ନିଜ ଲୋକ ଘେନି ଅନ୍ୟାନ୍ୟ ଦେଶକୁ ଯାଇ ମେଳି ଲଗାଇ ରାଜାଙ୍କୁ ଅମାନ୍ୟ କଲା, ତହିଁରେ ରାଜାଙ୍କ ସହିତ ଯୁଦ୍ଧ ହେବାରୁ ପଛେ ରାଜା ଅନନ୍ତ ନାୟକ ଦ୍ୱାରା ସେ ବ୍ରାହ୍ମଣକୁ ବଳରେ ଧରି ଆଣିଲେ ଏବଂ ବିଗ୍ଋରିଲେ ଏହାଙ୍କୁ କିପରି ମାରିବା, ଏହାଙ୍କ ରକ୍ତ ଲୁଗାରେ ଲାଗିଲେ ଆମ୍ଭର ଦୋଷ ହେବ, ନ ମାଇଲେ ଆମ୍ଭର ଭୟ ଯିବ ନାହିଁ, ଏମନ୍ତ ଭାବି ସମସ୍ତ ଲୋକଙ୍କ ପରାମର୍ଶ ମତେ ଏହାକୁ ନେଇ ଜଳ ଭିତରେ ଛେଦନ କଲେ ଓ ତାଙ୍କ ସବୁ ଲୋକକୁ ଶାସନର ସେହି ପୋଖରୀରେ ଛେଦନ କଲେ, ଶେଷ କାଳରେ ଜଣେ ବ୍ରାହ୍ମଣୀ ଥିଲା, ତାହାକୁ ମାରିବା ସମୟରେ ସେ

କହିଲା, "ମୋତେ ନ ମାର, ମୁଁ ତିନିମାସ ଗର୍ଭ ହୋଇଅଛି", ଏହାଶୁଣି ଲୋକ ରାଜାଙ୍କଠାରେ ନେଇଯିବାରେ ସେ ରାଜାଙ୍କୁ ଦେଖି କହିଲା, "ହେ ରଜା ତୁମ୍ଭେ ଆମ୍ଭର ସବୁ ଲୋକକୁ ନିର୍ଦ୍ଦୋଷରେ ମାଇଲ, ଆମ୍ଭର ବଂଶ ଲୋପ ହେଲା, ଏହି ଦୋଷରେ ତୁମ୍ଭ ବଂଶରେ ବହୁ ସନ୍ତାନ ହେବନାହିଁ, କେବଳ ଗୋଟିଏ ପୁତ୍ର ପୃଥ୍ୱୀ ପାଳିବାକୁ ଜାତ ହେବ, ପୁତ୍ର ଶ୍ରୀ ପିତା ନଦେଖିବେ, ଏ ଶାପ ମୋର ଯୁଗେ ଯୁଗେ ରହିବ ।" ଏହାଶୁଣି ରାଜା ବଡ଼ ଭାବନା କରି ବ୍ରାହ୍ମଣୀଙ୍କୁ ବହୁ ସ୍ତୁତି ନତି କରି ତାର ମନ ପ୍ରସନ୍ନ କଲେ, କହିଲେ "ତୁମ୍ଭ ଗର୍ଭଜାତ ସନ୍ତାନକୁ ପାଳିବୁ ଓ ତୁମ୍ଭଙ୍କୁ ଗ୍ରାମ ଖଞ୍ଜା କରି ଦେବୁଁ, ତୁମ୍ଭେ ଆମ୍ଭଙ୍କୁ କଲ୍ୟାଣକର," ତହିଁରେ ବ୍ରାହ୍ମଣୀ କହିଲା "ମୁଁ ମନ ବେଦନାରୁ ଶାପ ଦେଲି କହିଲି ତୁମ୍ଭର ବଂଶରେ ପୁତ୍ର ଜନ୍ମିଲା ଉତ୍ତାରୁ ପିତା ନାଶ ଯାଉ, ପୁତ୍ର କୁଶଳ ପିତା ନଦେଖୁ, ଏ ବଚନ ଆମ୍ଭର ସବୁଦିନେ ଥାଉ," ଏହା ବୋଲି ବ୍ରାହ୍ମଣୀ ମନ୍ଦିରକୁ ଗଲା । ତାହାର ପୁତ୍ର ହେବା ସମୟରେ ରଜା ଧାଈ ଖଞ୍ଜାଇଦେଇ ତାହାକୁ ବର୍ତ୍ତନ ଖଞ୍ଜା କରି ପରମ ସୁଖରେ ରଖିଲା ଉତ୍ତାରେ କିଛି ଦିନ ପରେ ରାଜାଙ୍କର ଗୋଟିଏ ପୁତ୍ର ହେଲା, ସେ ପୁତ୍ରର ନାମ ଯଦୁସେନ ରଖିଲେ ଏବଂ ପୁତ୍ର ପାଞ୍ଚ ବର୍ଷ ହେବାରୁ ପିତା ନାଶ ଗଲେ ବ୩୨ର୍ଷ, ସୁଦର୍ଶନ ବ୨୫ର୍ଷ ରାଜ୍ୟ କରି ନାଶ ଗଲେ, ତାଙ୍କର ପୁତ୍ର କାମସେନ ରାଜ୍ୟ ପାଳିଲେ ବ୨୨ର୍ଷ, ତାଙ୍କ ପୁତ୍ର ବାମଦେବ ରାଜ୍ୟ ପାଳିଲେ ବ୩୦ର୍ଷ, ତାଙ୍କ ପୁତ୍ର ଶ୍ୟାମ ସୁନ୍ଦର ଏ ରାଜ୍ୟ ପାଳିଲେ ବ୨୮ର୍ଷ, ତାଙ୍କ ପୁତ୍ର ମନ୍ଦରଧର, ଏ ରାଜା ଉଡ଼ିଶ୍ୟା ଯାଇ କୁଜଙ୍ଗ ଷଣ୍ଢକୁ ଧରି ଉଡ଼ିଶ୍ୟାର ମହାରାଜାଙ୍କ ହସ୍ତରେ ଦେବାରୁ ମହାରାଜା ସନ୍ତୋଷ ହୋଇ ମନ୍ଦରଧରକୁ ଶ୍ରୀ ହରିଚନ୍ଦନ ପଦ ବନ୍ଧାଇ ଛତ୍ର କାହାଳି ପଣ୍ଡ ବାନା ଯାହା ଘୋଡ଼ାଇ ଉପରେ ଆଜିଯାକ ଦିଆଯାଏ, ଏହା ପଇତା ପରି ଘୋଡ଼ାର ଗଳାରେ ପିନ୍ଧା ହୁଏ, ତାହା ପାଇଲେ ଥାଟ ସେନା ପଣକୁ ଶାଢ଼ୀ ବନ୍ଧାଇ ଆପଣା ରାଜ୍ୟକୁ ଅଇଲେ, କିଛିକାଳ ରାଜ୍ୟ କରି ୪୨ ବର୍ଷରେ ମନ୍ଦରଧର ପ୍ରାଣତ୍ୟାଗ କଲେ, ତାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ରାଜ୍ୟ ପାଳିଲେ, ତାଙ୍କର ୨୦ ବର୍ଷରେ ମୃତ୍ୟୁ, ତାଙ୍କ ପୁତ୍ର ବିଶ୍ୱମ୍ଭର ଏ ରାଜ୍ୟ ପାଳି ୨୫ ବର୍ଷରେ ପ୍ରାଣତ୍ୟାଗ କଲେ, ତାଙ୍କ ପୁତ୍ର କୁଟିଲ ହରିଚନ୍ଦନ ୧୮ ବର୍ଷ ରାଜତ୍ୱ କରି ପ୍ରାଣତ୍ୟାଗ କଲେ । ତାଙ୍କର ପୁତ୍ର ନିମାଇ ହରିଚନ୍ଦନ ରାଜ୍ୟ ପାଳି ୨୬ ବର୍ଷରେ ନାଶ ଗଲେ, ତାଙ୍କ ପୁତ୍ର ଜଗନ୍ନାଥ ହରିଚନ୍ଦନ, ତାଙ୍କ ପୁତ୍ର ସୋମନାଥ ହରିଚନ୍ଦନ, ତାଙ୍କ ପୁତ୍ର ବ୍ରଜସୁନ୍ଦର ହରିଚନ୍ଦନ ନାଶ ଗଲାପରେ ବର୍ତ୍ତମାନ ନାବାଳକ ରାଜା ସାଧୁଚରଣ ହରିଚନ୍ଦନ ରାଜଗାଦିରେ ଅଛନ୍ତି, ମାଧବ ସେନଙ୍କ ବଡ଼ଭାଇ ଥାଟ ରାଜା ହୋଇ ୭୦ ବର୍ଷେ ନାଶ ଗଲେ, ତାଙ୍କର ପୁତ୍ର ଚକ୍ରଧର ରାଏ, ଏ

ବଡ଼ ପରାକ୍ରାନ୍ତ ଥାଟ ସେନାପତି ୭୭ ବର୍ଷରେ ନାଶ ଗଲେ, ତାଙ୍କ ପୁତ୍ର ନୀଳାମ୍ବର ବକ୍ସି ଏହାଙ୍କର ମତହସ୍ତୀ ସମବଳ କ୍ଷତ୍ରି ସାଧନ ଜାଣନ୍ତି, ରାଜାଙ୍କ ସଙ୍ଗେ ଯାଇ ଉଡ଼ିଶ୍ୟା ମହାରାଜା ଆଦେଶ ମତେ ସେଠାରେ ବୈଷ୍ଣବ ରୂପ ଧରି ୫୦ ଜଣ ଭେଣ୍ଡିଆକୁ ଜମାତ୍ ସଜାଇ ସଙ୍ଗେ ନେଇ ଅତିଥି ବେଶରେ କୁଜଙ୍ଗ ଗଡ଼ରେ ଯାଇ କିଛିଦିନ ରହିଲେ । କୁଜଙ୍ଗ ଷଣ୍ଢ ରଜାକୁ ବଳ ଛଳରେ ଜବରାନ୍ ଧରିଆଣି ମହାରାଜାକୁ ଦେଲେ, ରାଜା ନେଇ ଓଡିଶ୍ୟାର ମହାରାଜାକୁ ଦେବାରୁ ମହରାଜା ରାଜାକୁ ହରିଚନ୍ଦନ ପଦ, ଛତ୍ର କାହାଳି ଓ ପାଟ ସେନାପତିକୁ ବକ୍ସି ପଦ ଦେଲେ, ପରେ ସେ ନାଶଗଲା, ପରେ ତାଙ୍କ ପୁତ୍ର ଚୈତନ୍ୟ ଇନ୍ଦ୍ର ସିଂହ ୫୦ ବର୍ଷରେ ନାଶ ଗଲେ ତାଙ୍କ ପୁତ୍ର ନାରାୟଣ ପଶ୍ଚିମ କବାଟେ ଏହାଙ୍କର ନାଶ ୪୦ ବର୍ଷ, ତାଙ୍କ ପୁତ୍ର ସାରଙ୍ଗ ପଶ୍ଚିମ କବାଟ, ତାଙ୍କ ପୁତ୍ର ବ୍ରଜବନ୍ଧୁ ବକ୍ସି ରାଉତରାୟ, ତାଙ୍କ ପୁତ୍ର କୃତିବାସ ଇନ୍ଦ୍ରସିଂହ, ସଦାଶିବ ସାମନ୍ତ, ଧାମନ୍ତ ସିଂହାର, ଶ୍ରୀନିବାସ ଦତ୍ତ ସେ ଓଲାର କୋର୍ଟ ରାଜ୍ୟେ ମାଧବ ପ୍ରଥମେ ଗଲେ, ସେଠାରେ ଯାଜିଆ ଗ୍ରାମରେ ଓ୍ୟାସ କଲେ, ତାହାଳ ରାଜାର ବନ୍ଧରେ ବାସ କରୁଥିଲେ,ବିଜୟ କେଶରୀ ରାଜା ୨୫ ଘୋଡ଼ା ଓ ଏକ ହାତୀ ନେଇ ବିକ୍ରମ ପ୍ରକାଶ କରିବାରୁ ତାହାଳ ତାଙ୍କୁ ଯୁଦ୍ଧ କରି ନାଶ କଲା, ତାହାଳର ଉନଶତ ରାଣୀ ଥିଲେ, ତାହାଳ ସମୁଦ୍ର ସ୍ଥାନ ଯିବା ସମୟରେ ରାଣୀମାନଙ୍କୁ କହିଲେ ଆମ୍ଭେ ଯେ ପାରା ଯୋଡ଼ାଏ ନେଇ ଯାଉଅଛୁଁ, ଏହା ଯଦି ଉଡ଼ି ଆସିବ ତେବେ ଜାଣିବ ଆମ୍ଭେ ନାଶ ଯାଇଅଛୁଁ, ତୁମ୍ଭେମାନେ ନିଆଁରେ ବା ପାଣିରେ ବୁଡ଼ି ପ୍ରାଣ ହରାଇବ, ଏହି କଥା କହି ସେ ଗ୍ଭଲିଯାଇ ସମୁଦ୍ର ସ୍ନାନ କରିବା ସମୟରେ ସେ ପାରା ଅସାବଧାନରେ ଉଡ଼ି ଆସି ଘରଠାରେ ପହୁଞ୍ଚିଯିବାରୁ ତାହା ଦେଖି ରାଣୀମାନେ ପାଣିରେ ବୁଡ଼ି ବୁଡ଼ି ପ୍ରାଣ ହରାଇଲେ, ପଛେ ରାଜା ତାଡ଼ାତାଡ଼ି ଆସି ଦେଖିଲେ ରାଣୀମାନେ ପ୍ରାଣ ହରାଇଅଛନ୍ତି, ସେଥୁଁ ଶୋକରେ ରାଜା ଆତ୍ମହତ୍ୟା କରି ପ୍ରାଣ ହରାଇଲେ, ବର୍ତ୍ତମାନ ସେ ରାଜ୍ୟର ଭଗ୍ନାବଶେଷ ଅଛି, ସେଠାରେ ଧନ ଢ଼େର ଅଛି, ଅସ୍ତ୍ର ଅନେକ ଅଛି, ତାହାକୁ ଆବିଷ୍କାର କରିବାକୁ ହେଲେ କଳା ଗର୍ଭବତୀ ଗାଭୀ, କଳା ଗର୍ଭବତୀ ବିରାଲ ଓ କଳା ଗର୍ଭବତୀ ସ୍ତ୍ରୀ ବିନାଶ କଲେ ସେ ଧନ ଓ ଅସ୍ତ୍ର ପାଇବ ।



# ବିଲଙ୍କା

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପ୍ରଣେତା ସ୍ୱର୍ଗୀୟ ଗୋପାଳ ଚନ୍ଦ୍ର ପ୍ରହରାଜ ବିଲଙ୍କା ଶବ୍ଦ ବିଷୟରେ ଲେଖିଛନ୍ତି -

''ବିଲଙ୍କା ଦେଶ ବିଶେଷ -- ଉତ୍କଳୀୟ କବି ସାରଳା ଦାସଙ୍କର କଳ୍ପନାପ୍ରସୂତ ଓ ପୌରାଣିକ 'ସହସ୍ର ରାବଣ'ର ଆଖ୍ୟାୟିକା ଅବଲମ୍ବନରେ କଳ୍ପିତ ସହସ୍ର ଶିରସ୍କ ଅସୁର ବିଶେଷ ।''

''ବିଲଙ୍କା ରାମାୟଣ-ଦେ, ବି-ସାରଳା ଦାସ କବିଙ୍କ ରଚିତ ବିଲଙ୍କା ରାବଣର ବଧ ବର୍ଣ୍ଣନାତ୍ମକ ପଦ୍ୟ ଗ୍ରନ୍ଥ ।

''( ଦ୍ର - ଏଥିରେ ବର୍ଣ୍ଣିତ ବିଷୟ -- ରାମାୟଣରେ ରାମଚନ୍ଦ୍ର ରାବଣକୁ ମାରି ସୀତାଙ୍କୁ ଉଦ୍ଧାର କରିବା ପରେ ପୁନର୍ବାର ସୀତା ଓ ରାମଚନ୍ଦ୍ରଙ୍କ ମଧ୍ୟରେ ରାମଚନ୍ଦ୍ରଙ୍କର ସାମର୍ଥ୍ୟ ସମ୍ବନ୍ଧରେ ତର୍କ ବିତର୍କ ହେବାରୁ ସୀତା ତର୍କ ଛଳରେ ରାବଣ ବଧରେ ରାମଚନ୍ଦ୍ରଙ୍କ କୃତିତ୍ୱ ଥିବା ବିଷୟରେ ସନ୍ଦିହାନ ହେବାର ଦେଖି ସୀତାଙ୍କ ମନରୁ ସନ୍ଦେହ ଦୂର କରିବା ଲାଗି ରାମଚନ୍ଦ୍ର ପାତାଳକୁ ଆକ୍ରମଣ କରି ସେଠାରେ ଥିବା ବିଲଙ୍କା ରାବଣର ରାଜଧାନୀ ବିଲଙ୍କାପୁରୀକୁ 'ବିଲୋଙ୍କା' ଅର୍ଥାତ୍ ଧ୍ୱଂସ କରି ଭକ୍ତ ରାବଣକୁ ବଧ କରିଥିଲେ । ଏହା ଓଡ଼ିଆ କବି ସାରଳା ଦାସଙ୍କ ରଚିତ । ଏଥିର ମୂଳ ବିଷୟ କୌଣସି ସଂସ୍କୃତ ପୁରାଣରେ ମିଳୁନାହିଁ ।'' (ପୃ. ୫୭୨୪-୨୫)

ସ୍ୱର୍ଗୀୟ ପ୍ରହରାଜଙ୍କ ସାରାଂଶରେ ମୁଦ୍ରିତ ପୁସ୍ତକର ବିବରଣର କେତେକ ଗୁରୁତର ବ୍ୟତିକ୍ରମ ଦେଖାଯାଏ । ବିଲଙ୍କା ରାମୟଣରେ ଯାହା ଲିଖିତ ଅଛି, ସେଥିରେ ଏହା ସ୍ପଷ୍ଟ ଭାବରେ ବୋଲାଯାଇଛି ଯେ ରାମଚନ୍ଦ୍ରଙ୍କର ପୁରୁଷକାର କେବଳମାତ୍ର ସୀତାଙ୍କର ଶକ୍ତିଦ୍ୱାରା ପରିଚାଳିତ ହେଉଥିଲା । ସୀତାଙ୍କର ବିନା ସାହାଯ୍ୟରେ ରାମଚନ୍ଦ୍ର କୌଣସି ଅଲୌକିକ କାର୍ଯ୍ୟ କରିବା ପାଇଁ ଅକ୍ଷମ ଥିଲେ । ତର୍କବିତର୍କରେ ସୀତା ଏହି କଥା କହିବାରୁ ରାମଚନ୍ଦ୍ର ଏକାକୀ ବିଲଙ୍କାରେ ସହସ୍ର ଶିରା ରାବଣକୁ ମାରିବା ପାଇଁ ଯାଇଥିଲେ; କିନ୍ତୁ ବହୁତ ଯୁଦ୍ଧରେ ବିଲଙ୍କା ରାବଣକୁ ମାରିବାକୁ ଅକ୍ଷମ ହୋଇ ସୀତାଙ୍କୁ ଅଣାଇ ତାଙ୍କ ସାହାଯ୍ୟରେ ବିଜୟୀ ହେଲେ ।

ବାଲ୍ମୀକି ରାମାୟଣରେ ରାମଚନ୍ଦ୍ର ରାବଣକୁ ବଧ କରି ସୀତାଙ୍କୁ ଉଦ୍ଧାର କରିବା କଥା ବର୍ଣ୍ଣିତ ଅଛି । ସେଥିରେ ସୀତାଙ୍କଠାରୁ ରାମଚନ୍ଦ୍ର ପରୋକ୍ଷ ବା ପ୍ରତ୍ୟକ୍ଷରେ କିଛି ସାହାଯ୍ୟ ପାଇଥିବାର ସୂଚନା ନାହିଁ । ଏଣୁ ବିଲଙ୍କା ରାମାୟଣର କଥାବସ୍ତୁ ଯେ ମୂଳ ରାମାୟଣଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର, ଏଥିରେ ଆଦୌ ସନ୍ଦେହ ନାହିଁ । ଏହାକୁ ରାମାୟଣର ଉତ୍ତରାକାଣ୍ଡ ସଦୃଶ ଏକ ପରିଶିଷ୍ଟ ରାମାୟଣ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର ପରିକଳ୍ପନା ହୋଇଥିଲା ଯେତେବେଳେ ଦେଶରେ ଶକ୍ତି ପୂଜାର ଆରମ୍ଭ ହୋଇଥିଲା । ଯାହାହେଉ ବିଲଙ୍କା ରାମାୟଣରେ ଦର୍ଶନଶାସ୍ତ୍ରରେ ପୁରୁଷ-ପ୍ରକୃତି ବ୍ୟାଖାନ ହୋଇଥିଲା ପରି ମନେହୁଏ ।

ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ଲଙ୍କାପୁରୀ ଭାରତର ଦକ୍ଷିଣରେ ସାଗରବେଷ୍ଟିତ ରାଜ୍ୟ ଥିବାର ଜଣାଯାଏ । ରାମାୟଣ ବର୍ଣ୍ଣିତ ଲଙ୍କା ଆଧୁନିକ ସିଂହଳ ସହିତ ଏକ ଥିବାର ଅନେକେ କହିଅଛନ୍ତି । କେହି କେହି ମଧ୍ୟ ଲଙ୍କାର ଅବସ୍ଥିତି ଦ୍ୱୀପମୟ ଭାରତ (Indian archipelego) ରେ ଥିବାର ଅନୁମାନ କରନ୍ତି । ସେ ବିଷୟରେ ଆଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ ।

ପୂର୍ବ ଭାରତରେ ବିଶେଷତଃ କଳିଙ୍ଗର ଲୋକମାନେ ବ୍ରହ୍ମ, ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ଶ୍ୟାମ, କମ୍ବୋଜ, ଏପରିକି ଫିଲିପାଇନସ୍ ଦ୍ୱୀପ ଅଞ୍ଚଳରେ ଉପନିବେଶ ସ୍ଥାପନ କରି ସେସବୁ ସ୍ଥାନରେ ଭାରତୀୟ ସଭ୍ୟତା ଓ କୃଷିର ବହୁଳ ପ୍ରଚ୍ରର ଯେ କରିଥିଲେ, ତାହାର ବହୁ ନିଦର୍ଶନ ଅଦ୍ୟାପି ସେ ସବୁ ସ୍ଥାନରେ ରହିଅଛି । କଳିଙ୍ଗର ଲୋକମାନେ ଅନ୍ୟାନ୍ୟ ପୂର୍ବଭାରତୀୟ ଲୋକମାନଙ୍କ ସହିତ ଦକ୍ଷିଣପୂର୍ବ ଏସିଆରେ ଉପନିବେଶ ସ୍ଥାପନ କରିବା ସମୟରେ ଭାରତୀୟ ଦେଶ, ନଗର ଓ ନଗରୀଗୁଡ଼ିକର ନାମ ସେ ଅଞ୍ଚଳରେ ପ୍ରଚଳିତ କରିଥିଲେ । ଯଥା-- କଳିଙ୍ଗ ବା ତ୍ରିକଳିଙ୍ଗ ଓ ଉତ୍କଳ ଦେଶର ନାମ ବ୍ରହ୍ମଦେଶରେ ପ୍ରଚଳିତ ଥିଲା । କେବଳ ଏତିକି ନୁହେଁ, କଳିଙ୍ଗ ଦେଶ ଯେପରି ପୂର୍ବଭାରତରେ ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳ ଥିଲା, ଠିକ୍ ସେହିପରି ବ୍ରହ୍ମଦେଶର ପଶ୍ଚିମ ଉପକୂଳରେ କଳିଙ୍ଗ ରାଜ୍ୟ ଅବସ୍ଥିତ ଥିଲା । ପୂର୍ବ ଭାରତର କଳିଙ୍ଗ ପଶ୍ଚିମକୁ ଯେପରି ପାର୍ବତ୍ୟ ପ୍ରଦେଶରେ ଉତ୍କଳ ଅବସ୍ଥିତି ଥିଲା, ଠିକ୍ ସେହିପରି ବ୍ରହ୍ମଦେଶର କଳିଙ୍ଗ ରାଜ୍ୟର ପୂର୍ବକୁ ପର୍ବତମୟ ଅଞ୍ଚଳରେ ଉତ୍କଳରାଜ୍ୟ ଅବସ୍ଥିତ ଥିଲା । 'ଶ୍ରୀକ୍ଷେତ୍ର'ର ଅବସ୍ଥିତି ମଧ୍ୟ ଏହି ଅଞ୍ଚଳରେ ଥିଲା ।

ବ୍ରହ୍ମଦେଶର ଏହିସବୁ ଇତିହାସ ଏବେ କ୍ରମଶଃ ଆଲୋଚିତ ହେଉଅଛି । କିନ୍ତୁ ଏହିସବୁ ସ୍ଥାନର ନାମ ଖୁବ୍ ପ୍ରାଚୀନ । ଅନ୍ତତଃ ଦୁଇ ହଜାର ବର୍ଷର ପୂର୍ବବର୍ତ୍ତୀ ବୋଲି

ଗ୍ରୀକ୍ ଭୌଗୋଳିକ ଟଲେମି (Ptolemy)ଙ୍କ ଖ୍ରୀଷ୍ଟିୟ ୨ୟ ଶତାବ୍ଦୀରେ ଲିଖିତ ଭୌଗୋଳିକ ବିବରଣରୁ ଜଣାଯାଏ । ଟଲେମିଙ୍କ ବହୁଶତାବ୍ଦୀ ପୂର୍ବରୁ କଳିଙ୍ଗର ଉପନିବେଶ ସ୍ଥାପିତ ହୋଇଥିଲା । ଏହା ବିଶେଷତଃ ଅନୁତାପର ବିଷୟ ଯେ, ଖ୍ରୀଷ୍ଟପୂର୍ବ ଶତ ଶତ ବର୍ଷ ପୂର୍ବରୁ କଳିଙ୍ଗର ନୌବାଣିଜ୍ୟ ସହିତ ଉପନିବେଶ ଦ୍ୱୀପମୟ ଭାରତରେ ସ୍ଥାପିତ ହୋଇଥିଲେ ମଧ୍ୟ ତାହାର ବିବରଣ ଭାରତରେ କୌଣସି ଗ୍ରନ୍ଥରେ ମିଳୁନାହିଁ । ୟୁରୋପୀୟମାନଙ୍କର ଅଗାଧ ଗବେଷଣାଦ୍ୱାରା ସେହି ପ୍ରାଚୀନ ଯୁଗରେ ଚଳୁଥିବା ନୌବାଣିଜ୍ୟ ତଥା ଉପନିବେଶ ସ୍ଥାପନର କେତେକ କଥା ଏବେ ଜଣାଯାଉଅଛି । ଇଂରାଜୀ ଭାଷାରେ ପ୍ରକାଶିତ ଗ୍ରନ୍ଥଗୁଡ଼ିକର ସଂଖ୍ୟା ଫରାସୀ ଓ ଓଲନ୍ଦାଜ ଭାଷାରେ ପ୍ରକାଶିତ ଗ୍ରନ୍ଥାଦିଠାରୁ ଅତି ମୁଷ୍ଟିମେୟ ଥିବାରୁ ଓ ଓଡ଼ିଶାରେ ସେହିସବୁ ଭାଷାଭିଜ୍ଞ ଲୋକଙ୍କ ଅଭାବ ଥିବାରୁ ଆମ୍ଭମାନଙ୍କର ଜ୍ଞାନର ପରିସର ଅତି ସଂକୀର୍ଣ୍ଣ କହିଲେ ଚଳେ । ମୋର ମନେହୁଏ ଯେ, ଓଡ଼ିଶାର ପ୍ରାଚୀନ ଇତିହାସର ଉପାଦାନ ବ୍ରହ୍ମ ଓ ଦ୍ୱୀପମୟ ଭାରତର ପ୍ରତ୍ନତତ୍ତ୍ୱର ଅନୁସନ୍ଧାନରୁ ବହୁଳ ଭାବରେ ସଂଗୃହୀତ ହୋଇପାରିବ । କଳିଙ୍ଗବାସୀ ଦକ୍ଷିଣ ପୂର୍ବ ଏସିଆ ଅଞ୍ଚଳରେ ଉପନିବେଶ କରିବାବେଳେ ଭାରତୀୟ ପୌରାଣିକ ରାମାୟଣର କଥା ସେ ଅଞ୍ଚଳକୁ ଆନୀତ ହୋଇଥିଲା ଓ ସେଠରେ ତାହା କେତେକ ନୂତନ ଆକାର ଧାରଣ କରିଥିଲା । ବିଲଙ୍କା ରାମାୟଣର କଥାବସ୍ତୁ ସେହି ପ୍ରକାର ବ୍ରହ୍ମ ତଥା ଦ୍ୱୀପମୟ ଭାରତରେ ପ୍ରଚଳିତ ରାମାୟଣ କଥାର ଏକ ଉପାଦାନ । ଉଭୟ ଉପକୂଳବର୍ତ୍ତୀ ଲୋକମାନଙ୍କର ସଭ୍ୟତାର ଆଦନାପ୍ରଦାନ ଦ୍ୱାରା ତାହା ବ୍ରହ୍ମଦେଶରୁ କଳିଙ୍ଗରେ ଲୋକମୁଖରେ ପ୍ରଚଳିତ ଥିଲା । ସାରଳା ଦାସ ହୁଅନ୍ତୁ ବା ସିଦ୍ଧେଶ୍ୱର ଦାସ ହୁଅନ୍ତୁ, ପଞ୍ଚଦଶ ଶତାବ୍ଦୀର ଜଣେ ଓଡ଼ିଆ କବି ସେହି କିମ୍ବଦନ୍ତୀର ଅବଲମ୍ବନରେ ବିଲଙ୍କା ରାମାୟଣ ଗ୍ରନ୍ଥ ଯେ ରଚନା କରିଥିଲେ, ଏଥିରେ ସନ୍ଦେହର ଅତି କମ୍ ଅବକାଶ ଅଛି ।

ଟେଲେମି ତାଙ୍କର ଭୂଗୋଳ ଗ୍ରନ୍ଥରେ Balongka ନାମକ ସ୍ଥାନରେ ବା ବନ୍ଦରର ବର୍ଣ୍ଣନା କରିଛନ୍ତି । କର୍ଣ୍ଣେଲ ଜିରୀନୀ (Colonel G.E.Gerini) ବହୁ ଅନୁସନ୍ଧାନ ଦ୍ୱାରା ଟଲେମିଙ୍କ ଗ୍ରନ୍ଥ ସଂପାଦିତ କରିଅଛନ୍ତି ଓ ଲେଖିଛନ୍ତି ଯେ, ଟଲେମିଙ୍କ Balongka ମାଳୟ ଉପଦ୍ୱୀପର ଅନ୍ତର୍ଗତ 'ତ୍ରା' ଯୋଜକ ନିକଟବର୍ତ୍ତୀ ଥିଲା । ହୁଏନ୍‌ସା ଖ୍ରୀ.୬୩୮ରେ ଏହି ଅଞ୍ଚଳରେ 'କାମଲଙ୍କା' ରାଜ୍ୟର କଥା ଉଲ୍ଲେଖ କରିଛନ୍ତି । ଏଣୁ Balongka ଯେ 'ବିଲଙ୍କା' ଏହା ସହଜରେ ଅନୁମେୟ । ବିଲଙ୍କା ରାମାୟଣର ବର୍ଣ୍ଣନାରୁ ଜଣାଯାଏ ଯେ ରାମଚନ୍ଦ୍ର ବିଲଙ୍କା ନିକଟବର୍ତ୍ତୀ ଯେଉଁ 'ପ୍ରଚଣ୍ଡ' ପର୍ବତରେ ରହୁଥିଲେ, ତାହା ସମୁଦ୍ର

କୂଳରେ ଥିଲା ଓ ରାମଚନ୍ଦ୍ର ପ୍ରତ୍ୟେକ ଦିନ ସମୁଦ୍ରରେ ସ୍ନାନ କରୁଥିଲେ । ବିଲଙ୍କା ରାମାୟଣରେ ସୁନା ଓ ରୂପା ପ୍ରାଚୁର୍ଯ୍ୟର ବିସ୍ତର ବିବରଣ ମିଳେ । ଟଲେମିଙ୍କ ଲେଖାରୁ ଜଣାଯାଏ ଯେ, ଆରକାନ୍ ଅଞ୍ଚଳରେ ଯଥେଷ୍ଟ ପରିମାଣରେ ରୂପା ଓ ବିଲଙ୍କା ଅଞ୍ଚଳରେ ଯଥେଷ୍ଟ ପରିମାଣରେ ସୁନା ମିଳୁଥିଲା ଓ କେତେକ ଗ୍ରନ୍ଥରେ ଏହି ଅଞ୍ଚଳର ନାମ ସୁବର୍ଣ୍ଣ ଭୂମି ଥିଲା । 'ସୁବର୍ଣ୍ଣମୟୀ ଲଙ୍କା'ର କଥା ଚିରପ୍ରସିଦ୍ଧ ।

ପୂର୍ବୋକ୍ତ ଆଲୋଚନାରୁ ଏତିକି ଜଣାଯାଉଅଛି ଯେ 'ବିଲଙ୍କା'ର ନାମ ଓଡ଼ିଆ କବିଙ୍କର କଳ୍ପନାପ୍ରସୂତ ରାଜ୍ୟ ନୁହେଁ । ଏହାର ପ୍ରକୃତ ଭୌଗୋଳିକ ଅବସ୍ଥିତି ପ୍ରାଚୀନ କାଳରେ ଥିଲା । ପ୍ରାଚୀନ ସଭ୍ୟତାର ବହୁ ନିଦର୍ଶନ ଯେପରି ଲୋପ ପାଇଅଛି, ବିଲଙ୍କାର ନାମ ମଧ୍ୟ ତଦ୍ରୂପ ପରିବର୍ତ୍ତିତ ହୋଇଅଛି ବା ଲୋପ ପାଇଅଛି । କିନ୍ତୁ ପଞ୍ଚଦଶ ଶତାବ୍ଦୀର ଓଡ଼ିଆ କବିଙ୍କ ଲେଖାରେ ଅତୀତର ସେହି ଗଭୀର ଓ ଅନ୍ଧକାରାଚ୍ଛନ୍ନ ଇତିହାସର ସୂକ୍ଷ୍ମ ଆଲୋକରେଖାର କିମ୍ବଦନ୍ତୀ ବିଲଙ୍କା ଶବ୍ଦରେ ନିହିତ ଅଛି ।



ସମାଜ, ୧୯୫୬, ଜୁଲାଇ

# ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲ୍‌ର ସଭ୍ୟ ଗୋପବନ୍ଧୁ ଦାସ

(ଅର୍ଦ୍ଧ ଶତାବ୍ଦୀର ଓଡ଼ିଶାକୁ ପ୍ରଖ୍ୟାତ ପତ୍ନତତ୍ତ୍ୱ ବିଶେଷଜ୍ଞ ଓ ଇତିହାସ ଗବେଷକ ସ୍ୱର୍ଗତ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ଯାହା ଦାନ ରହିଛି, ସଂକ୍ଷେପରେ ତାହା କଳନା କରିବା ଅସମ୍ଭବ । ତେବେ, ତାଙ୍କ ଗବେଷଣା ବଳରେ ବୈଜ୍ଞାନିକ ପ୍ରଣାଳୀରେ ଆମର ଇତିହାସ ପ୍ରଣୟନ ସମ୍ଭବ ହୋଇଥିବାରୁ, ତାଙ୍କୁ ଯଥାର୍ଥରେ 'ଆଧୁନିକ ଓଡ଼ିଶା ଇତିହାସର ଜନ୍ମଦାତା' ରୂପେ ଧରାଯାଇପାରେ । ତାଙ୍କର ଆଲୋଚ୍ୟ ପ୍ରବନ୍ଧଟି ମଧ୍ୟ ଗବେଷଣା ଉପାଦାନରେ ଭରପୂର । ଏହା ସମାଜର ୩୪ଶ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ପ୍ରକାଶ ପାଇଥିଲା । - ସଂ)

୧୯୧୦ ଜାନୁୟାରୀରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମୟୂରଭଞ୍ଜର ସରକାରୀ ଓକିଲ ନିଯୁକ୍ତ ହୋଇ ବାରିପଦା ଆସିଥିଲେ । ସରକାରୀ ଓକିଲ ହିସାବରେ ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲ୍‌ରେ ସେ ଜଣେ ବେସରକାରୀ ସଭ୍ୟ ହିସାବରେ ମହାରାଜାଙ୍କ ଦ୍ୱାରା ମନୋନୀତ ହୋଇଥିଲେ ।

ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲ୍‌ର ପହିଲା ଅଗଷ୍ଟ ୧୮୮୨ଠାରୁ ବାରିପଦାରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ ସ୍ଥାପିତ ହୋଇଥିଲା । ଏଥିରେ ସରକାରୀ ବଡ଼ ବଡ଼ ରାଜକର୍ମଚାରୀମାନେ ମୟୂରଭଞ୍ଜର ରାଜବଂଶୀୟ ଓ ଭଦ୍ରବ୍ୟକ୍ତିମାନେ ବେସରକାରୀ ସଭ୍ୟ ରୂପେ ମହାରାଜାଙ୍କ ଦ୍ୱାରା ମନୋନୀତ ହେବାର ବ୍ୟବସ୍ଥା ଥିଲା । ଏଠାରେ ସ୍ମରଣୀୟ ଯେ ୧୮୯୨ ରେ ମହାରାଜା ଶ୍ରୀରାମଚନ୍ଦ୍ର ନାବାଳକ ପରେ ମୟୂରଭଞ୍ଜର ଶାସନଭାର ପାଇଥିଲେ ଓ ସେହି ୧୮୯୨ରେ 'ଇଣ୍ଡିଆ କାଉନ୍‌ସିଲ୍ ଆକ୍ଟ' (The Indian Council Act of 1892) ବ୍ରିଟିଶ୍ ପାର୍ଲାମେଣ୍ଟରେ ଗୃହୀତ ହୋଇଥିଲା ।

ଏହି ଆକ୍ଟ ଦ୍ୱାରା ଭାରତୀୟ ବ୍ୟବସ୍ଥାସଭାରେ ବେସରକାରୀ ସଭ୍ୟ ସଂଖ୍ୟା ବର୍ଦ୍ଧିତ ହେବାର ବ୍ୟବସ୍ଥା ଥିଲା ଓ ବ୍ୟବସ୍ଥାପକ ସଭାର ସଭ୍ୟମାନେ ସରକାରଙ୍କ ବଜେଟ୍ ସଂକ୍ରାନ୍ତ ଆୟବ୍ୟୟ ଉପରେ ଓ ସାଧାରଣ ଶାସନ କାର୍ଯ୍ୟର ଆଲୋଚନା କରିବାର ଅଧିକାର

ପାଇଥିଲେ । ମହାରାଜା ଶ୍ରୀରାମଚନ୍ଦ୍ର ଠିକ୍ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ମୟୂରଭଞ୍ଜରେ ବ୍ୟବସ୍ଥାପକ ସଭା ଗଠନ କରିଥିଲେ * । ଏହାର ଆଉ ଏକ ଉଦ୍ଦେଶ୍ୟ ମଧ୍ୟ ଥିଲା । ୧୮୮୨ରେ କଲିକତା ହାଇକୋର୍ଟର ଫୁଲ୍ ବେଞ୍ଚ୍ ନିଷ୍ପତ୍ତି କଲେ ଯେ ମୟୂରଭଞ୍ଜ ରାଜ୍ୟ ବ୍ରିଟିଶ-ଭାରତଭୁକ୍ତ ନୁହେଁ, ଏଣୁ ଏଠାରେ ବ୍ରିଟିଶ ଭାରତୀୟ ଆଇନ ପ୍ରଚଳିତ ହେବା ଅସଙ୍ଗତ । କିନ୍ତୁ ୧୮୮୨ଠାରୁ ମୟୂରଭଞ୍ଜ ରାଜ୍ୟ ନାବାଳକୀ ଶାସନରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଶାସିତ ହେବାରୁ ବ୍ରିଟିଶ ଆଇନ ମୟୂରଭଞ୍ଜରେ ପ୍ରଚଳିତ ହୋଇଥିଲା । ରାଜ୍ୟଶାସନ ଦୃଷ୍ଟିରୁ ସାମଞ୍ଜସ୍ୟ ରକ୍ଷାପାଇଁ ସେହିସବୁ ଆଇନକୁ ମୟୂରଭଞ୍ଜରେ ପ୍ରଚଳିତ ରଖିବା ପାଇଁ ବ୍ୟବସ୍ଥାପକ ସଭାର ଆବଶ୍ୟକତା ନିତାନ୍ତ ଜରୁରୀ ହୋଇଥିଲା ।

ବ୍ୟବସ୍ଥାପକ ସଭାର ଆଲୋଚନା ସଂକ୍ଷେପରେ ଏକ ଚମଡ଼ାବନ୍ଧା ବଡ଼ ଖାତାରେ ପ୍ରୋସିଡିଂ ଭାବରେ ଲିଖିତ ହୋଇଥିଲା ଓ ପ୍ରତ୍ୟେକ ସଭାର ବିବରଣୀ ଶେଷରେ ସଭାପତି ମହାରାଜା ରାମଚନ୍ଦ୍ର ସ୍ୱାକ୍ଷର କରି ଅନୁମୋଦନ କରୁଥିଲେ । ୧୯୫୯ରେ ଗୋପବନ୍ଧୁଙ୍କର ସରକାରୀ ଓକିଲ ନିଯୁକ୍ତି ସମ୍ପର୍କରେ ବାରିପଦାରେ ଥିବା ରେକର୍ଡ ରୁମ୍‌ରେ ଫାଇଲ ତଲାସ କରିବା ସମୟରେ ମୋର ବନ୍ଧୁ ଶ୍ରୀ ମହେଶ ଚନ୍ଦ୍ର ମହାପାତ୍ର ଏହି ବ୍ୟବସ୍ଥାପକସଭାର ଲିଖିତ ବିବରଣୀ ଖାତାର ସନ୍ଧାନ ଦେଲେ ଓ ମୁଁ ତାହା ପ୍ରଥମ ଥର ପଢ଼ିବାର ସୁଯୋଗ ପାଇଲି । ତେଣୁ ମୁଁ ତାଙ୍କଠାରେ ଋଣୀ । ଏହି ଖାତାରେ ୨୦ ବର୍ଷର ମୟୂରଭଞ୍ଜ ବ୍ୟବସ୍ଥାପକ ସଭାର ବିବରଣୀ ଲିଖିତ ଅଛି । ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ମୃତ୍ୟୁ ପରେ ବ୍ୟବସ୍ଥାପକ ସଭା ଭାଙ୍ଗିଗଲା । ମୟୂରଭଞ୍ଜ ଜିଲ୍ଲାର ଗେଜେଟିଅର ଲେଖା ସମ୍ପର୍କରେ ଡକ୍ଟର ନବୀନ କୁମାର ସାହୁଙ୍କୁ ମୁଁ ଏହି ବିବରଣୀ ଖାତାର କଥା କହିବାରୁ, ସେ ତାହା ବାରିପଦାର ଜିଲ୍ଲା ଜଜ୍‌ଙ୍କ ଲାଇବ୍ରେରୀରୁ ଭୁବନେଶ୍ୱର ନେଇଥିଲେ ଓ ତହିଁର ଟାଇପ୍ ନକଲ ଅନୁଗ୍ରହ କରି ମତେ ଦେଇଥିଲେ । ଏହି ବିବରଣୀର ଉପକରଣ ଉପରେ ମୋର ଏହା ପ୍ରବନ୍ଧ ଲିଖିତ ହୋଇଅଛି ।

ଗୋପବନ୍ଧୁ ଦାସଙ୍କ ବାରିପଦା ଅବସ୍ଥାନ କାଳରେ କେବଳ ତିନୋଟି ବ୍ୟବସ୍ଥାପକ ସଭା ବସିଥିଲା ଓ ସେ ସବୁ ସଭାରେ ସେ ଯୋଗଦେଇ ଆଲୋଚନାରେ ନିଜର ହୃଦୟବତ୍ତା ଓ ନିର୍ଭୀକ ମତ ବ୍ୟକ୍ତ କରିଥିଲେ । ତଳେ ତିନୋଟି ସଭାର ବିବରଣୀରୁ ଦାସେ ଆପଣଙ୍କର କଥା ଓ ତତ୍‌ସମ୍ପର୍କରେ ଅନ୍ୟାନ୍ୟ ଆଲୋଚନା ଉଦ୍ଧାର କରାଗଲା ।

(୧)

୧୯୧୦ ଫେବୃଆରୀ ୨୫ ତାରିଖରେ ରାଜବାଡ଼ିରେ ମୟୂରଭଞ୍ଜ ଷ୍ଟେଟ କାଉନ୍‌ସିଲ୍‌ର ଏକ ବୈଠକ ଦିନ ୩ଟା ସମୟରେ ବସିଥିଲା । ଏଥିରେ ଯୋଗଦେଇଥିବା ସଭ୍ୟଙ୍କର ନାମ ତଳେ ଦିଆଗଲା --

୧. ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ -- ସଭାପତି ।

୨. ମି.ଏଚ୍.ବି.କିଡେଲ -- ଉପଦେଷ୍ଟା ସଭ୍ୟ ଓ ପୁଲିସ ସୁପରିଟେଣ୍ଡେଣ୍ଟ ।

୩. ବାବୁ ମୋହିନୀ ମୋହନ ଧର -- ଉପଦେଷ୍ଟା ସଭ୍ୟ ଓ ଦେୱାନ ।

୪. ବାବୁ ହରିଦାସ ବୋଷ -- ଉପଦେଷ୍ଟା ସଭ୍ୟ ଓ ଷ୍ଟେଟ୍ ଜଜ୍ ।

୫. ବାବୁ ରାମହରିଜିତ୍ ବାବୁ -- ଅତିରିକ୍ତ ସଭ୍ୟ

୬. ବାବୁ ଗୋପବନ୍ଧୁ ଦାସ -- ଅତିରିକ୍ତ ସଭ୍ୟ ।

ଏହି ସଭାରେ ତିନୋଟି ରେଗୁଲେଶନ୍ ଆଲୋଚିତ ଓ ଗୃହୀତ ହେବାର ଥିଲା । ହରିଦାସ ବୋଷ ଅସ୍ତ୍ର ଆଇନ (Arms Regulation) ଚଳାଇବା ପାଇଁ ପ୍ରସ୍ତାବ କଲେ । ଏହା ଉପରେ ପ୍ରଥମେ ଗୋପବନ୍ଧୁ ଦାସ ଯାହା କହିଥିଲେ ଓ ଯାହାର ସାରାଂଶ ପ୍ରୋସିଡିଂରେ ଲିଖିତ ହୋଇଥିଲା, ତାହା ତଳେ ଉଦ୍ଧୃତ ହେଲା --

"Babu Gopabandhu Das said that the bill had been intended to forearm danger, but he did not think that any event had occurred in Mayurbhanj to justify its introduction. He said that among the non-aboriginal population there were rich men who had done nothing and yet could come under the operation of the law. He enquired if the foreigners from whom dangers were apprehended were only to come under the operation of the law and not any of the non-aboriginal people of the state.

Babu H.D.Bose replied that the object of the regulation was to control the importation into the state of arms by and body whether he was an inhabitant of the state or not. He further pointed out that no aboriginal people were to be exempted from the Act, but from the licence for arms locally manufactured."

ଏହାପରେ ସଭାପତି ରେଗୁଲେଶନର ଆବଶ୍ୟକତା ସମ୍ପର୍କରେ ବିଶଦ ଭାବରେ ଆଲୋଚନା କରିଥିବାର କଥା ବିବରଣୀରେ ଲିଖିତ ଅଛି । ଶେଷରେ ଷ୍ଟେଟ୍ ଜଜ୍‌ଙ୍କ ପ୍ରସ୍ତାବ ଉପରେ ଭୋଟ ନିଆଯିବାରେ ତାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇ ୧୯୧୦ର ରେଗୁଲେଶନ-୧ ପ୍ରଚଳିତ ହେଲା ।

ତପରେ Court Fees Act ପ୍ରଚଳନର ପ୍ରସ୍ତାବ ହରିଦାସ ବୋଷ ଆଗତ କଲେ । ଏ ସମ୍ପର୍କରେ ଗୋପବନ୍ଧୁ ଦାସ ଯାହା କହିଥିଲେ, ତାହାର ସାରାଂଶ ବିବରଣୀରେ ନିମ୍ନଲିଖିତ ଭାବରେ ଲିଖିତ ଅଛି --

"Babu Gopabandhu Das said that he had talked with many people and discussed with them and litigants about the introduction of the British Indian Court Fees Act. He was as yet, he said, a stranger to the state and he was voicing their sentiment. He said that according to them litigation has increased not because the Court Fees Regulation not being enforced but because to increase of machinery in administrations. Increased fee would give the richer opportunity to oppress the poor. Poor people, the speaker said, are unable to pay fees according to the existing arrangement. Considering the condition of the people most of whom were poor, the Court Fees Act, he said had many latches. He advocated the system of Village Panchyats. He was, he said, also opposed to the introduction of the Co-operative Credit Society Act. No law should be passed till the circumstances arise. He said that the institution could be worked by executive order till it had made sufficient progress. He is not strangling it at that stage."

ଏହାପରେ ଲିଖିତ ଅଛି --

"Babu H.D.Bose replied that the poor certainly deserve sympathy. Whether all people deserve sympathy was worth consideration. He pointed out that by increasing the rate of fees frivolous and vexations cases would be stopped. Fees according to the rates prevailing in British-India had been adopted in

Nilagiri, Keonjhar and Kolhan. It was a tax and could not be avoided. As for Co-operative Credit Societies Act, it, he said, had to be legalised from the very beginning. The thing must be proposed up by law."

"Babu M.M. Dhar said that said that the introduction of the Co-operative Societies Act would far from hampering the people would rather help them."

"Then the Act was passed. No stamp and no registration would be necessary."

ତତ୍ପରେ ଲିଖିତ ଅଛି --

"The President said that it was no use beathing about the bush. He did not doubt that it was fiscal measure. No state could exist without taxation and no people would welcome taxation. But it had to be faced. They must take the administration as it was based on British system. People must pay for the increased expenditure and revenue of the state was to be expended for the benefit of the people. It, the President pointed out, was the democratic and not the authocratic principle. There was famine expenditure and big irrigation project had to be undertaken. Where was the money to come from to meet these ? Time had come to find out the way and means for increasing the revenue. It was not clear to him why they (i.e the people) should forego the increased revenue when in Nilagiri, Kenojhar and Kolhan the increased rates of fees had been adopted. About Co-operative Credit Societies Act he said that its object was palpable as put forth by the Dewan and the State Judge."

"Babu Gopabandhu Das then moved an amendment that the introduction of the Court Fees Act should be postpond. The President allowed the amendment although no previous notice was given. The amendment was then put to the vote and lost, the two additional members voting for it and the four advisory members voting against it."

x x x x

"The bill was then passed as Regulation II of 1910."

x x x x

"IV, Babu H.D. Bose he leave to introduce the Mutation Regulation. In doing so he read out the object and reasons appended to the Bill. He then proposed that the bill might be referred to a Select Committee, composed of the Dewan, the State Pleader (Babu G. Das) and himself, with instruction to report at the sitting of Council. The Council adjurned sinedie."

(୨)

ତତ୍ପରେ ଏପ୍ରିଲ ୭ ତାରିଖ ୧୯୧୦ରେ ୧୯୧୦-୧୯୧୧ର ବଜେଟ୍ ଆଲୋଚନା ଓ ଦାଖଲ ଖାରଜ ଆଇନ ଉପରେ ସିଲେକ୍ଟ କମିଟିର ରିପୋର୍ଟ ଆଲୋଚନା ପାଇଁ ସଭା ବସିଲା । ଏ ସଭାରେ ନିମ୍ନଲିଖିତ ସଭ୍ୟମାନେ ଉପସ୍ଥିତ ଥିଲେ -

୧. ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ -- ସଭାପତି ।

୨. ଏଇଚ. ବି. କିଡେଲ -- ଉପଦେଷ୍ଟା ।

୩. ବାବୁ ଏମ୍.ଏମ୍. ଧର -- ଉପଦେଷ୍ଟା ସଭ୍ୟ ।

୪. ଜେ.ଏ.ମାଟିନ୍ -- ଉପଦେଷ୍ଟା ସଭ୍ୟ ।

୫. ବାବୁ ହରିଦାସ ବୋଷ -- ଉପଦେଷ୍ଟା ସଭ୍ୟ ।

୬. ରାଉତରାୟ ସାହେବ ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ -- ଅତିରିକ୍ତ ସଭ୍ୟ ।

୭. ବାବୁ ଗୋପବନ୍ଧୁ ଦାସ -- ଅତିରିକ୍ତ ସଭ୍ୟ ।

ଏ ସଭାର ବିବରଣୀରେ ସଭାପତିଙ୍କ ବଜେଟ୍ ଭାଷଣ ବ୍ୟତୀତ ଆଉ କୌଣସି ଭାଷଣ ବଜେଟ୍ ଉପରେ ନାହିଁ । ତତ୍ପରେ ସିଲେକ୍ଟ କମିଟି ଦ୍ୱାରା ସଂଶୋଧିତ ଦାଖଲ ଖାରଜ ଆଇନ୍ ଆଲୋଚିତ ହୋଇ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

(୩)

ତତ୍ପରେ ଏପ୍ରିଲ୍ ୭ ତାରିଖ ୧୯୧୧ ରେ ବଜେଟ୍ ଆଲୋଚନା ପାଇଁ ଷ୍ଟେଟ୍ କାଉନ୍‌ସିଲ ବସିଲା । ସଭାରେ ନିମ୍ନଲିଖିତ ସଭ୍ୟମାନେ ଉପସ୍ଥିତ ଥିଲେ ।

୧. ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ -- ସଭାପତି ।

୨. ବାବୁ ଏମ୍.ଏମ୍. ଧର -- ଉପଦେଷ୍ଟା ସଭ୍ୟ ।

୩. ଜେ.ଏ.ମାଟିନ୍ -- ଉପଦେଷ୍ଟା ସଭ୍ୟ ।

୪. ବାବୁ ହରିଦାସ ବୋଷ -- ଉପଦେଷ୍ଟା ସଭ୍ୟ ।

୫. ବାବୁ ରାମ ହରି ଜିତ -- ଅତିରିକ୍ତ ସଭ୍ୟ ।

୬. ବାବୁ ଗୋପବନ୍ଧୁ ଦାସ -- ଅତିରିକ୍ତ ସଭ୍ୟ ।

୭. ବାବୁ ଗୋପବନ୍ଧୁ ପଟ୍ଟନାୟକ -- ଅତିରିକ୍ତ ସଭ୍ୟ ।

ପ୍ରଥମେ ସଭାପତି ବଜେଟ୍ ଉପରେ ଭାଷଣ ଦେଇଥିଲେ । ତପରେ ଗୋପବନ୍ଧୁ ଦାସ୍ ଓ ଅନ୍ୟ ସଭ୍ୟମାନଙ୍କର ମନ୍ତବ୍ୟ ଓ ସଭାପତିଙ୍କର ଶେଷ ଭାଷଣ ବିବରଣୀରେ ଯାହା ଲିଖିତ ଅଛି, ତାହା ପରପୃଷ୍ଠାରେ ଉଦ୍ଧୃତ ହେଲା -

"He (the President) then briefly reviewed the financial condition of the state in respect of the year the account of which had been closed; i.e (1909-10) of the year that had just passed away, i.e. (1910-12) and of the year that was to come i.e. (1911-12). The account of 1909-10 had shown that the revenue expanded and had tendency to keep pace with the expenditure that the opening balance on 1.4.1910 was far in excess of that on 1.4.1909 and that the railway had proved profitable concern yielding a dividend of 31-1/2 percent. In the year that had just passed away the land revenue had gone on increasing, thanks to the steps of the Dewan. It was a record year in the point of land revenue collection. The stamp revenue had increased owing to the introduction of the British Indian Court Fees Act in the state. The forest revenue was however show a falling of owing to the termination of leases previously granted. But he hoped better result would be awaiting the state next year where with the introdction of Forest Manual better organisation was expected. There was an item of unusual expenditure - Chief's foreign travels during the year which exceeded the estimate provided therfore, as such travels are unusually expensive."

x x x x

"He further pointed out to the unusual expenditure that state would have to incure in connection with the forth coming coronation Darbar at Delhi and for which provision has been made in the budget. As regards P.W.D. expenditure he regretted that no useful scheme beyond the irrigation project. In progress could be undertaken. He further hinted at the proposed Canal Regulation buying water rates which he hoped to yield a certain return on the capital expenditure incurred. He also said that it was in contemplation to have a Local Board on education less the yields from which would be spent purely on education and sanitation."

ତପରେ ଗୋପବନ୍ଧୁ ଦାସ ଯାହା କହିଥିଲେ ତାହାର ସାରାଂଶ ବିବରଣୀରେ ଯାହା ଇଂରାଜୀରେ ଲିଖିତ ଅଛି, ତାହା ତଳେ ଉଦ୍ଧୃତ ହେଲା --

"Gopabandhu Das congratulated the Chief on behalf of the subject of Mayurbhanja on his successful tours round the world and remarked that the people would have been glad if more money had been spent in connection with tour. He took the opportunity to point out that for the non-official members then had been little opportunity to express their view as they had met for the first time since the Chief's return to Baripada. He said, he read the budget as an educated. Mayurbhanja youth would read it with all the aspriations natural to such a youth. He was unable to admit economy in matters of education and sanitation. So closely connected with the moral and material well-being of the people sufficient attention, he said, had not been paid to them. In Tokeyo, London and New-York which the Chief visited they made education their watch-ward. It is the foundation of the good government. Though he admitted the progress in education was already, but it was not what was expected from a wise and good ruler - grown wiser by his foreign

travels. He pointed out that the incidence of expenditure on education on the estimated receipts was 3.5%. This figure compared with Dhenkanal and Baroda and remarked that he did not compare favourably with either. Though Mayurbhanj is Baroda of Orissa in some respects, he said, it was not in respect of education. In Boroda the percentage of expenditure on education was 10. He was aware of the limited resources of the state. But the expenditure on education he would give his unestimated support. He said much improvement could be expected if officers of rank and influence exercise their influence to the spread of education. An endeavour in his opinion should be made to make education free and compulsory in Baripada where 600 pupils are school going age went without education. With further education the people would appreciate the State Council and the local boards. The people are the best treasuers of the state and not timbers and mines and the constitutional government existed for the benefit of the people would be better understood by them where they would be educated. The people would learn to have some right for themselves and this could be possible only by defusion of education.

"As regards sanitation, he laid stress on the want of pure water; the supply of which is considered pious work by the Hindus."

"Mr. J.A.Martin pointed out that the state had not neglected the people. He said there were 100 wells and 200 tanks in the state for the supply of water, Babu M.M. Dhar pointed out that the allotment of expenditure on education was Rs. 9000/- when the state was under Government management. Since then it raised to Rs. 40,000/-"

"Babu H.D.Bose said that state should provide for the living of the people first then for education. The big irrigation works were intended for the material advancement of the people.

As for education 16% of the population were undergoing instructions. He advocated compulsory and free primary education for the town Baripada."

President before bringing the debate to close thanked Babu Gopabandhu Das for his congratulations which he offered to him thrice, once in Calcutta, then in Baripada and for the third time in the council chamber. As for the opportunity presented to the non-official members for discussion of the affairs of the state, he said, the president backward state of the people who did not understand civic rights would not allow more frequent meeting for exchange of views and criticism of the action of the state. He would always be prepared to accept the criticisms in the spirit in which it was offered. Next year there would be more rooms for the better study of the budget, he hoped. He had heard with interest the long essay on education and sanitation which the speaker had delivered. He himself had not been less enthusiastic on education. But experience had succeeded in rubbing out the idealism. All know the value of education and they are doing their best for it furtherence, but to bring about a millenium was, he said, an impossibility at least within two or three generations to come. The population of the state was, he said, must backward and the case of Baroda would not be in all forms with Mayurbhanj. The speaker had not taken into account the population of Baroda which would be 23-25 lakhs, not the revenue and the area of the state. Fertility of the soil and the advanced condition of the people of Baroda would be in startling contrast to the barren soil and backward condition of the population in Mayurbhanj. The question of compulsory education was once thoughtout, but had to be abandoned owing to the backward condition of the people.

As regards sanitation, he said, the people should also contribute something and the non-official members would use

their influence and enthusiasm on their contributions for the improvement of sanitation and education. By so doing they would be doing a service in sanitation and education. 16% of school going age was not satisfactory compared to 24% of British India. The number of primary schools increased by 10 every year. He hoped that compulsory education in Baripada would receive one consideration. It was no use of drawing a picture of people dying far want of good water. They all knew it, but want of money stood in the way. He would not be ashamed of a surplus treasury because nothing could be done without money.

"The President also pointed out, the budget dealt with the financial statement. It was not an administration report. It was impossible therefore to touch on education in greater details."

ପୂର୍ବୋକ୍ତ ଉଦ୍ଧୃତାଂଶରୁ ବେଶ୍ ବୁଝାଯାଏ ଯେ ଗରିବଙ୍କ ପ୍ରତି ଗୋପବନ୍ଧୁଙ୍କର କେତେ ସହାନୁଭୂତି ଥିଲା । ତା'ଛଡ଼ା ଦେଶରେ ଶିକ୍ଷା ପ୍ରସାର ଓ ସ୍ୱାସ୍ଥ୍ୟରକ୍ଷା ପ୍ରତି ତାଙ୍କର ମଧ୍ୟ ବିଶେଷ ଦୃଷ୍ଟି ଥିଲା । ମୟୂରଭଞ୍ଜ ରାଜ୍ୟ ସଦୃଶ ଏକ କ୍ଷୁଦ୍ର ପରିସରରେ ଗୋପବନ୍ଧୁଙ୍କ ଯେଉଁ ଆଦର୍ଶ ଦେଖାଇଥିଲେ, ତାହା ତାଙ୍କର ଭବିଷ୍ୟତ ଜୀବନରେ ବିରାଟ ଆକାରରେ ବହୁମୁଖୀ ହୋଇଥିଲା ।



ସମାଜ, ୧୯୬୨, ଜୁଲାଇ

# 'ଏକାବଳୀ' ଓ ସାହିତ୍ୟ ଦର୍ପଣର ସମୟ ନିରୂପଣ

## କ) ଉପକ୍ରମଣିକା :

'ଏକାବଳୀ' ଓ 'ସାହିତ୍ୟଦର୍ପଣ' ଗ୍ରନ୍ଥ ଦୁଇଟି ଓଡ଼ିଶାର ପ୍ରସିଦ୍ଧ ଅଳଙ୍କାର ଗ୍ରନ୍ଥ । ଓଡ଼ିଶାର ପ୍ରସିଦ୍ଧ ଗଙ୍ଗବଂଶୀ ରାଜାମାନଙ୍କ ରାଜତ୍ୱକାଳରେ, ଏ ଦୁଇଟି ଗ୍ରନ୍ଥ ଖ୍ରୀ: ୧୩୩୦ ଠାରୁ ଖ୍ରୀ. ୧୪୩୦ ମଧ୍ୟରେ ରଚିତ ହୋଇଥିଲା । ତେଣୁ ଏ ଦୁଇଟି ଗ୍ରନ୍ଥର ରଚନାକାଳ ସ୍ଥିର କରିବାକୁ ହେଲେ ଗଙ୍ଗବଂଶୀୟ ରାଜାମାନଙ୍କର ରାଜତ୍ୱକାଳ ଠିକ୍ ଜାଣିବା ଏକାନ୍ତ ଆବଶ୍ୟକ । ଦେଶର ରାଜନୈତିକ ଇତିହାସର କାଳକ୍ରମ ସବୁବେଳେ ଦେଶର ସାହିତ୍ୟ ଓ ସଂସ୍କୃତିର ଇତିହାସ ନିର୍ଣ୍ଣୟ କରିବାରେ ସହାୟକ ହୋଇଥାଏ । ଗଙ୍ଗରାଜାମାନଙ୍କର ରାଜତ୍ୱକାଳ ପ୍ରକୃତପକ୍ଷରେ ଖ୍ରୀ. ୧୯୦୩ ପୂର୍ବରୁ ବୈଜ୍ଞାନିକ ବିଗ୍ରହପ୍ରଣାଳୀରେ ସ୍ଥିରୀକୃତ ହୋଇ ନଥିଲା । ଏଣୁ ତତ୍ପୂର୍ବରୁ ଓଡ଼ିଶାର ସାହିତ୍ୟିକ ଇତିହାସ ଆଲୋଚନା କରିବା ପାଇଁ ଭାରତର ଅନ୍ୟାନ୍ୟ ପ୍ରଦେଶର ଲେଖକମାନଙ୍କ, ଷ୍ଟାର୍ଲିଂ (୧) (Stirling) ସାହେବଙ୍କ ଲିଖିତ ଖ୍ରୀ: ୧୮୨୫ର ଓ ହଣ୍ଟର (୨) (Hunter) ସାହେବଙ୍କ ଲିଖିତ ଖ୍ରୀ: ୧୮୭୨ ର ପୁସ୍ତକ ଉପରେ ନିର୍ଭର କରିବାକୁ ପଡୁଥିଲା । ଏହି ଆଲୋଚ୍ୟ ବିଷୟ ଲେଖିବା ପୂର୍ବରୁ ଓଡ଼ିଶାର କିମ୍ବଦନ୍ତୀମୂଳକ ଓ ଲିପିତତ୍ତ୍ୱମୂଳକ ଗଙ୍ଗବଂଶୀୟ ଇତିହାସର କାଳକ୍ରମ ଉପରେ ତଳେ ଆଲୋଚନା କରୁଅଛି ।

| ହଣ୍ଟର ସାହେବଙ୍କ ଗଙ୍ଗବଂଶାବଳି । (୩) (ଷ୍ଟାର୍ଲିଂ ସହିତ ପ୍ରାୟ ସମାନ) | | ୧୯୦୩ରେ ପ୍ରକାଶିତ ମନମୋହନ ଚକ୍ରବର୍ତ୍ତୀଙ୍କ ଗଙ୍ଗବଂଶାବଳି । (୪) | |
|---|---|---|---|
| *ରାଜାମାନଙ୍କର ନାମ* | *ରାଜତ୍ୱକାଳ* | *ରାଜମାନଙ୍କର ନାମ* | *ରାଜତ୍ୱକାଳ* |
| ଚୋଡ଼ଗଙ୍ଗଦେବ | ଖ୍ରୀ: ୧୧୩୨-୫୨ | ଚୋଡ଼ଗଙ୍ଗଦେବ | ଖ୍ରୀ: ୧୦୭୬-୧୧୪୭ |
| ଗଙ୍ଗେଶ୍ୱରଦେବ | ଖ୍ରୀ: ୧୧୫୨-୬୬ | କାମାର୍ଣ୍ଣବଦେବ | ଖ୍ରୀ: ୧୧୪୭-୧୧୫୬ |

---

(୧) A.Stirling - Asiatic Researches Vol. XV,1825
(୨) W.W.Hunter - Orissa, Vol. II, app. VII, 1872
(୩) Ibid
(୪) Journal of the Asiatic Society of Bengal (J.A.S.B.) 1903 app. p. 140-141.

| | | | |
|---|---|---|---|
| ଏକଜଟା କାମଦେବ | ଖ୍ରୀ: ୧୧୬୬-୭୧ | ରାଘବଦେବ | ଖ୍ରୀ: ୧୧୫୬-୧୧୭୦ |
| ଶବନ ମହାଦେବ | ଖ୍ରୀ: ୧୧୭୧-୭୫ | ରାଜରାଜଦେବ | ଖ୍ରୀ: ୧୧୭୦-୧୧୯୦ |
| ଅନଙ୍ଗଭୀମଦେବ | ଖ୍ରୀ: ୧୧୭୫-୧୨୦୨ | ଅନଙ୍ଗଭୀମଦେବ | ଖ୍ରୀ: ୧୧୯୦-୧୧୯୮ |
| ରାଜରାଜେଶ୍ୱରଦେବ | ଖ୍ରୀ: ୧୨୦୨-୩୭ | ରାଜରାଜାଦେବ ୨ୟ | ଖ୍ରୀ: ୧୧୯୮-୧୨୧୧ |
| ଲାଙ୍ଗୁଳାନରସିଂହ ଦେବ | ଖ୍ରୀ: ୧୨୩୭-୮୨ | ଅନଙ୍ଗଭୀମଦେବ | ଖ୍ରୀ: ୧୨୧୧-୧୨୩୮ |
| କେଶରୀ ନରସିଂହଦେବ | ଖ୍ରୀ: ୧୨୮୨-୧୩୦୭ | ନରସିଂହଦେବ ୧ମ | ଖ୍ରୀ: ୧୨୩୮-୧୨୬୪ |
| ପ୍ରତାପନରସିଂହଦେବ | ଖ୍ରୀ: ୧୩୦୭-୨୭ | ଭାନୁଦେବ ୧ମ | ଖ୍ରୀ: ୧୨୬୦-୧୨୭୮ |
| ଗତିକାନ୍ତ ନରସିଂହ | ଖ୍ରୀ: ୧୩୨୭-୨୯ | ନରସିଂହଦେବ ୨ୟ | ଖ୍ରୀ: ୧୨୭୮-୧୩୦୫ |
| କପିଳ ନରସିଂହଦେବ | ଖ୍ରୀ: ୧୩୨୯-୩୦ | ଭାନୁଦେବ ୨ୟ | ଖ୍ରୀ: ୧୩୦୫-୧୩୨୭ |
| ଶଂଖଭାସୁର ଦେବ | ଖ୍ରୀ: ୧୩୩୦-୩୭ | ନରସିଂହଦେବ ୩ୟ | ଖ୍ରୀ: ୧୩୨୭-୧୩୫୨ |
| ଶଂଖ ବାସୁଦେବ + | ଖ୍ରୀ: ୧୩୩୭-୬୧ | ଭାନୁଦେବ ୩ୟ | ଖ୍ରୀ: ୧୩୫୨-୧୩୭୮ |
| ବଲୀ ବାସୁଦେବ | ଖ୍ରୀ: ୧୩୬୧-୮୨ | ନରସିଂହଦେବ ୪ର୍ଥ | ଖ୍ରୀ: ୧୩୭୮-୧୪୧୪* |
| ବୀର ବାସୁଦେବ | ଖ୍ରୀ: ୧୩୮୨-୧୪୦୧ | ଭାନୁଦେବ ୪ର୍ଥ | ଖ୍ରୀ: ୧୪୧୪-୧୪୩୫ |
| କଳି ବାସୁଦେବ | ଖ୍ରୀ: ୧୪୦୧-୧୪ | ବା ନିଃଶଙ୍କ ଭାନୁଦେବ | |
| ନେଙ୍ଗଟାନ୍ତ ବାସୁଦେବ | ଖ୍ରୀ: ୧୪୧୪-୨୯ | | |
| ନେତ୍ର ବାସୁଦେବ | ଖ୍ରୀ: ୧୪୨୯-୧୪୫୨ | | |

୧୯୦୩ରେ ଲିପିତତ୍ତ୍ୱମୂଳକ ଆଲୋଚନା ଦ୍ୱାରା ଓଡ଼ିଶାର ଗଙ୍ଗରାଜାମାନଙ୍କର ରାଜତ୍ୱକାଳ ନିର୍ଦ୍ଧାରିତ କରିଥିବାରୁ, ମନମୋହନ ଚକ୍ରବର୍ତ୍ତୀ ସମସ୍ତଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି । କିମ୍ବଦନ୍ତୀମୂଳକ ମାଦଳାପାଞ୍ଜି ଉପରେ ନିର୍ଭର କରି (ଅବଶ୍ୟ ସେମାନଙ୍କ ସମୟରେ, ଏହି କିମ୍ବଦନ୍ତୀ ବ୍ୟତୀତ ଅନ୍ୟ ଉପାୟରେ ଇତିହାସ ନିର୍ଦ୍ଧାରଣ କରିବାର ଉପାୟ ନ ଥିଲା ।) ଷ୍ଟାର୍ଲିଂ ଓ ହଣ୍ଟର ସାହେବଙ୍କ ଦ୍ୱାରା ଲିଖିତ ଗଙ୍ଗ ରାଜତ୍ୱକାଳ ଯେ

---

(+) ହଣ୍ଟରଙ୍କ ବାସୁଦେବ ପ୍ରକୃତରେ ଚକ୍ରବର୍ତ୍ତୀ ଭାନୁଦବ । ହଣ୍ଟରଙ୍କ ତାଲିକା ୧୯୦୩ ଯାଏ ପ୍ରଚଳିତ ଥିଲା ।

* ଚକ୍ରବର୍ତ୍ତୀ ନରସିଂହଦେବ ୪ର୍ଥଙ୍କର ରାଜତ୍ୱକାଳର ଶେଷ ଓ ଭାନୁଦେବ ୪ର୍ଥଙ୍କର ରାଜତ୍ୱକାଳର ଆରମ୍ଭ ସ୍ଥିର କରି ନଥିଲେ । ପ୍ରଫେସର ସୁବାରାଓ ଓ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣାଦ୍ୱାରା ଏମାନଙ୍କର ରାଜତ୍ୱକାଳ ସ୍ଥିରୀକୃତ ହୋଇଛି ।

ବହୁଳଭାବରେ ଅବିଶ୍ୱାସଯୋଗ୍ୟ, ତାହା ଚକ୍ରବର୍ତ୍ତୀଙ୍କ ରାଜାମାନଙ୍କ ନାମ ଓ ରାଜତ୍ୱକାଳ ନିରୂପଣରୁ ପ୍ରମାଣିତ ହୁଏ । ଏହା ଏକ ସୌଭାଗ୍ୟର କଥା ଯେ ୧୯୦୩ ରେ ବିଦ୍ୟାଧରଙ୍କ 'ଏକାବାଳୀ' ଗ୍ରନ୍ଥ ମୁଦ୍ରିତ ହୋଇଥିଲା ଓ ଏହା ଚକ୍ରବର୍ତ୍ତୀଙ୍କ ଦୃଷ୍ଟିଗୋଚର ହୋଇଥିଲା । ଫଳରେ ଚକ୍ରବର୍ତ୍ତୀ ତାଙ୍କ ପ୍ରବନ୍ଧର ପରିଶିଷ୍ଟ ୨ୟରେ ଏକାବଳୀ ଓ 'ସାହିତ୍ୟଦର୍ପଣ'ର ସମୟ ଉପରେ ଆଲୋଚନା କରିଥିଲେ ।

ବିଦ୍ୟାଧରଙ୍କ ରଚିତ ଅଳଙ୍କାରଶାସ୍ତ୍ର ଏକାବଳୀର ହସ୍ତଲିଖିତ ଗ୍ରନ୍ଥର ଆବିଷ୍କାର ସର୍ବପ୍ରଥମେ ଭଣ୍ଡାରକରଙ୍କଦ୍ୱାରା "୧୮୮୭-୯୧ ମଧ୍ୟରେ ବୋମ୍ବାଇ ପ୍ରେସଡେନ୍‌ସିରେ ହୋଇଥିବା ସଂସ୍କୃତଗ୍ରନ୍ଥାଦିର ଅନୁସନ୍ଧାନ" ରିପୋର୍ଟରେ ମୁଦ୍ରିତ ହୋଇଥିଲା । ଏହି ଆବିଷ୍କୃତ 'ଏକାବଳୀ'ର ପାଣ୍ଡୁଲିପିକୁ ପ୍ରଫେସର ତ୍ରିବେଦୀ ସଙ୍କଳିତ କରି, ୧୯୦୩ରେ 'ବୋମ୍ବାଇ ସଂସ୍କୃତ ଗ୍ରନ୍ଥମାଳା'ରେ ମୁଦ୍ରିତ କରିଥିଲେ । 'ଏକାବଳୀ'ର ପ୍ରସ୍ତାବନାରେ ଭଣ୍ଡାରକର ମଧ୍ୟ ବିଦ୍ୟାଧରଙ୍କ ସମୟ ଉପରେ ଏକ ଟିପପ୍‌ଣୀ ଲେଖିଥିଲେ । ତ୍ରିବେଦୀ ଓ ଭଣ୍ଡାରକର ଉଭୟେ ଅନୁମାନ କରିଥିଲେ ଯେ "କେଶରୀ ନରସିଂହ (ଖ୍ରୀ: ୧୨୮୨-୧୩୦୭) ବା ପ୍ରତାପ ନରସିଂହ (ଖ୍ରୀ: ୧୩୦୭-୧୩୨୭) ବିଦ୍ୟାଧରଙ୍କ ପୃଷ୍ଠପୋଷକ ଥିଲେ ।" ଏହି ରାଜାମାନଙ୍କର ନାମ ଓ ସମୟରୁ ଜଣାଯାଏ ଯେ ଏଗୁଡିକ ହଣ୍ଟର ସାହେବଙ୍କ ଲିଖିତ ତାଲିକାରୁ ଗୃହୀତ ହୋଇଥିଲା ।

ଏହି 'ଏକାବଳୀ' ପୁସ୍ତକ ପାଇଥିବାରୁ ମନମୋହନ ଚକ୍ରବର୍ତ୍ତୀ ଗ୍ରନ୍ଥର ସମୟ ନିରୂପଣ କରିବାର ଏକ ସୁଯୋଗ ପାଇଥିଲେ । 'ଏକାବଳୀ'ର ସମୟ ଆଲୋଚନା ସହିତ ସେ ସାହିତ୍ୟ ଦର୍ପଣର ସମୟ ମଧ୍ୟ ନିରୂପଣ କରିବାର ଚେଷ୍ଟା କରିଥିଲେ ଓ ତାଙ୍କର ଲେଖା ବଙ୍ଗୀୟ ଏସିଆଟିକ୍ ସୋସାଇଟି ପତ୍ରିକା -- ୧୯୦୩ର ପରିଶିଷ୍ଟ ୨ୟରେ ମୁଦ୍ରିତ ହୋଇଥିଲା । ଏକାବଳୀର ସମୟ ଉପରେ ଆଲୋଚନା କରି, ଚକ୍ରବର୍ତ୍ତୀ ଲେଖିଥିଲେ ଯେ "ବିଦ୍ୟାଧରଙ୍କ ସମୟ ନରସିଂହ ୧ମଙ୍କର ରାଜତ୍ୱକାଳରେ ପଡ଼େ -- ନରସିଂହ ୨ୟଙ୍କର ନୁହେ (୫) ।" ବିଦ୍ୟାଧରଙ୍କ 'ଏକାବଳୀ' ଉପରେ ଆଲୋଚନା ଶେଷକରି ସେ ବିଶ୍ୱନାଥଙ୍କର 'ସାହିତ୍ୟଦର୍ପଣ' ଉପରେ ନିମ୍ନୋକ୍ତ ମତେ ଲେଖିଥିଲେ ।

"ଏ ପ୍ରବନ୍ଧ ଶେଷ କରିବା ପୂର୍ବରୁ ମୁଁ କହିବାକୁ ଗ୍ଭହେ ଯେ 'ସାହିତ୍ୟ-ଦର୍ପଣ'ର ରଚନାକାଳ ଓ ସ୍ଥାନ ସମ୍ପର୍କରେ, ନିରୂପିତ ହୋଇଥିବା ମତ ଉପରେ ମୁଁ ଆଦୌ ଏକମତ

---

(୫) J.A.S.B. 1903. App.II.

ହୋଇପାରୁନାହିଁ । 'ଚଣ୍ଡକୌଶିକ' ପ୍ରକାଶନର ମୁଖବନ୍ଧରେ ଜଗନମୋହନ ଶର୍ମାଙ୍କ ମତ ଉପରେ ବିଶ୍ୱାସ ସ୍ଥାପନ କରି ୱେବର * (Weber) ସାହେବ ଲେଖିଅଛନ୍ତି ଯେ 'ସାହିତ୍ୟଦର୍ପଣ' ଖ୍ରୀଷ୍ଟାବ୍ଦ ୧୫ଶ ଶତାବ୍ଦୀର ମଧ୍ୟଭାଗରେ ପୂର୍ବବଙ୍ଗରେ ବ୍ରହ୍ମପୁତ୍ର କୂଳରେ ରଚିତ ହୋଇଥିଲା । ପ୍ରଫେସର ମେକଡୋନେଲ୍ (Macdonell) ମଧ୍ୟ ଏହି ମତ ଗ୍ରହଣ କରିଅଛନ୍ତି । (୬)

ଚକ୍ରବର୍ତ୍ତୀ, ପ୍ରବନ୍ଧରେ ଅନ୍ୟତ୍ର ଲେଖିଅଛନ୍ତି ଯେ "ବିଶ୍ୱନାଥଙ୍କର ସମୟ ଅନ୍ତତଃପକ୍ଷେ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀର ଆରମ୍ଭର ପୂର୍ବବର୍ତ୍ତୀ ନୁହେ ।" ପ୍ରବନ୍ଧର ଶେଷରେ ସେ ଲେଖିଅଛନ୍ତି ଯେ 'ସାହିତ୍ୟଦର୍ପଣ'ରେ 'ଏକାବଳୀ'ର କୌଣସି ଉଲ୍ଲେଖ ମୁଁ ପାଇନାହିଁ । ଏଣୁ ମନେହୁଏ ଯେ 'ଏକାବଳୀ' 'ସାହିତ୍ୟଦର୍ପଣ' ଲିଖିତ ହେବାପରେ ଲିଖିତ ହୋଇଥିଲା ।"(୭)

ପୂର୍ବୋକ୍ତ ଲେଖାରୁ ମନେହୁଏ ଯେ ୧୯୦୪ରେ (୧୯୦୩ର ଅଗଷ୍ଟ ମସିହାରେ ମନମୋହନ ଚକ୍ରବର୍ତ୍ତୀଙ୍କ ପ୍ରବନ୍ଧ ଏସିଆଟିକ୍ ସୋସାଇଟିର ସଭାରେ ପଠିତ ହୋଇଥିଲା । ପରିଶିଷ୍ଟ ୨ୟ ୧୯୦୪ରେ ପତ୍ରିକା ବାହାରିବା ପୂର୍ବରୁ ତହିଁରେ ସନ୍ନିବେଶିତ ହୋଇଥିଲା ।) ଯେଉଁ ମତ 'ଏକାବଳୀ' ଓ 'ସାହିତ୍ୟଦର୍ପଣ' ଉପରେ ବ୍ୟକ୍ତ କରିଥିଲେ, ତାହା ତତ୍କାଳୀନ ସମୟରେ ମିଳୁଥିବା ଉପାଦାନର ଅତିଶୟ ଅନୁରୂପ ହୋଇଥିଲା । ଏହାପରେ ପଚାଶ ବର୍ଷରୁ ଅଧିକ କାଳ ଅତୀତ ହୋଇଅଛି ଓ ଏହି ଦୀର୍ଘ ସମୟ ମଧ୍ୟରେ ମହାମହୋପାଧ୍ୟାୟ ପି.ଭି.କାନେ ଓ ଡକ୍ଟର ସୁଶୀଲ କୁମାର ଦେଙ୍କର ସଂସ୍କୃତ ଅଳଙ୍କାର-ଗ୍ରନ୍ଥର ଇତିହାସ (History of Sanskrit Poetics) ପ୍ରକାଶିତ ହୋଇଥିଲେ ମଧ୍ୟ, ବିଦ୍ୟାଧର ଓ ବିଶ୍ୱନାଥଙ୍କ ସମ୍ବନ୍ଧରେ ଆମ୍ଭେମାନେ ନୂତନ ତଥ୍ୟ ପାଇଲା ପରି ମନେହୁଏନାହିଁ; କାରଣ ମହାମହୋପାଧ୍ୟାୟ କାନେ ଓ ଡକ୍ଟର ଦେ ଉଭୟେ ମନମୋହନ ଚକ୍ରବର୍ତ୍ତୀଙ୍କ ଗଙ୍ଗବଂଶୀୟ କାଳକ୍ରମ ଅନୁସରଣ ନ କରି ହଣ୍ଟରଙ୍କ କାଳକ୍ରମ ଅନୁସରଣ କରିଅଛନ୍ତି । ବିଦ୍ୟାଧର ଓ

---

* ଡ଼ଃ ଏସ୍.କେ.ଦେ ଚକ୍ରବର୍ତ୍ତୀଙ୍କ ଏହି ଲେଖା ନ ଜାଣି ଲେଖିଅଛନ୍ତି ଯେ, ୱେବର ଓ ଇଗଲିଂଗ (Eggeling) ସାହେବ କେଉଁ ଉପାଦାନ ଉପରେ ନିର୍ଭର କରି ଲେଖିଅଛନ୍ତି ଯେ, 'ସାହିତ୍ୟଦର୍ପଣ' ବ୍ରହ୍ମପୁତ୍ର କୂଳରେ ବା ପୂର୍ବବଙ୍ଗରେ ଲିଖିତ ହୋଇଥିବା କଥା ଠିକ୍ ବୁଝାଯାଉନାହିଁ ।

(୬) J.A.S.B. 1903, p.146

(୭) Ibid. p.147.

ବିଶ୍ୱନାଥଙ୍କ ଉପରେ ଚକ୍ରବର୍ତ୍ତୀ ଯେଉଁ ମତ ଦେଇଥିଲେ, ତାହା ଉପରେ କିଛି ଆଲୋଚନା କରିନାହାନ୍ତି ।

ଭାରତର ସ୍ୱାଧୀନତା ପରେ ପରେ ଓଡ଼ିଶାର ଦେଶୀୟ ରାଜ୍ୟସମୂହ ୧୯୪୮-୪୯ରେ ଲୋପପାଇ ଓଡ଼ିଶା ରାଜ୍ୟଭୁକ୍ତ ହେଲା । ଓଡ଼ିଶାର ଏହି ବିପୁଳ ପରିବର୍ତ୍ତନ ଫଳରେ ଓଡ଼ିଶାରେ ନାନାବିଧ ନବ ଉଦ୍ୟମ ବିକଶିତ ହେଲା । ତନ୍ମଧ୍ୟରୁ ୧୯୫୦ ଏପ୍ରିଲ୍ ମାସଠାରୁ ଗଠିତ ମିଉଜିଅମ୍ ଓ ଗବେଷଣାବିଭାଗ ଗୋଟିଏ ଜ୍ୱଳନ୍ତ ଦୃଷ୍ଟାନ୍ତ । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ଦେଶର ସଂସ୍କୃତି ଓ ଇତିହାସ ଆଲୋଚନା ଓ ଗବେଷଣାରେ ମହତାବଙ୍କର ବିଶେଷ ଶ୍ରଦ୍ଧା ଥିଲା । ତେଣୁ ସେ ମିଉଜିଅମ୍ ସହିତ ଗବେଷଣା ସଂପୃକ୍ତ କରି ଏକ ନୂତନ ବିଭାଗ ସୃଷ୍ଟି କରିଥିଲେ ଓ ତହିଁରେ ପୂର୍ବତନ ଦେଶୀୟ ରାଜ୍ୟସମୂହରେ ଥିବା ପ୍ରତ୍ନତତ୍ତ୍ୱବିଭାଗର କର୍ମଚାରୀମାନେ ଏକତ୍ରିତ ହୋଇଥିଲେ । ଫଳରେ ଏହି ବିଭାଗର କର୍ତ୍ତାରୂପେ ମୋତେ କାର୍ଯ୍ୟ କରିବାକୁ ପଡ଼ିଥିଲା । ସରକାରଙ୍କ ଉଦ୍ଦେଶ୍ୟ ଅନୁସାରେ ମିଉଜିଅମ୍ ଓ ଗବେଷଣା ବିଭାଗର ଅଫିସରବୃନ୍ଦ ଉତ୍ସାହ ସହିତ କାର୍ଯ୍ୟ କରି ଓଡ଼ିଶା ଇତିହାସର ଉପକରଣ ଅନୁସନ୍ଧାନରେ ବ୍ରତୀ ହୋଇଥିଲେ । ଓଡ଼ିଶା ସରକାର ଅନୁଗ୍ରହ କରି ଓଡ଼ିଶା ଐତିହାସିକ ଗବେଷଣା ପତ୍ରିକା (Orissa Historical Research Journal)ର ପରିଚାଳନା ଭାର ମିଉଜିଅମର ଅଫିସରମାନଙ୍କ ଉପରେ ନ୍ୟସ୍ତ କରିଥିଲେ । ତେଣୁ ଏଥିରେ ମୁଖ୍ୟତଃ ବିଭାଗୀୟ ଅଫିସରମାନେ ପ୍ରବନ୍ଧାଦି ଲେଖିବାର ସୁଯୋଗ ପାଇଥିଲେ । ଏହି ସମୟରେ ନୂତନ ସଂସ୍କୃତ ଗ୍ରନ୍ଥର ପାଣ୍ଡୁଲିପି ଅନୁସନ୍ଧାନ କରିବାରେ ଉଦ୍ୟମ କରାଯାଇଥିଲା । ମୁଁ ଚେଷ୍ଟା କରି ମଧ୍ୟ 'ଏକାବଳୀ' ଗ୍ରନ୍ଥର ଖଣ୍ଡିଏ ପାଣ୍ଡୁଲିପି ସଂଗ୍ରହ କରିବାରେ ସମର୍ଥ ହୋଇ ନଥିଲି; କିନ୍ତୁ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କର ଚେଷ୍ଟାରେ ବିଶ୍ୱନାଥ କବିରାଜଙ୍କ ରଚିତ 'ଚନ୍ଦ୍ରକଳା ନାଟିକା'* ନାମକ ଗ୍ରନ୍ଥର ହସ୍ତଲିଖିତ ତାଳପତ୍ର ପୋଥି ଆବିଷ୍କୃତ ହୋଇଥିଲା ଓ ଏହି ପୋଥିଟିକୁ ମିଉଜିଅମ୍‌ର ସଂଗ୍ରହାଳୟ ପାଇଁ ସଂଗୃହୀତ ହୋଇଥିଲା । ଏହି ଅପ୍ରତ୍ୟାଶିତ ଆବିଷ୍କାର ଫଳରେ ଭାରତର ସର୍ବତ୍ର ସୁବିଦିତ ଓ ପ୍ରକାଶିତ 'ସାହିତ୍ୟଦର୍ପଣ' ଗ୍ରନ୍ଥର ରଚନାକାଳ ନିର୍ଦ୍ୱନ୍ଦ୍ୱରେ ସ୍ଥିରୀକୃତ ହେଲା । ଏହା ସହିତ ସହୃଦୟାନନ୍ଦ

---

* 'ଚନ୍ଦ୍ରକଳା ନାଟିକା' ଗ୍ରନ୍ଥଟି ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ ଓ ଶ୍ରୀଯୁକ୍ତ ସର୍ବେଶ୍ୱର ଦାସଙ୍କ ଦ୍ୱାରା ସଙ୍କଳିତ ହୋଇ 'ଓଡ଼ିଶା ଐତିହାସିକ ଗବେଷଣା ପତ୍ରିକା'ର ଭାଗ ୬ର ୩ୟ ଓ ୪ର୍ଥ ସଂଖ୍ୟାରେ ୧୯୫୮ରେ ମୁଦ୍ରିତ ହୋଇଅଛି ।

କାବ୍ୟର ରଚୟିତା ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦଙ୍କର ସମୟ ମଧ୍ୟ ସ୍ଥିରୀକୃତ ହେଲା । କାରଣ ଗଙ୍ଗନୃପତି ନରସିଂହ ଦେବ ୪ର୍ଥ (ଖ୍ରୀ: ୧୩୭୮-୧୪୧୪)ଙ୍କ ଖ୍ରୀ: ୧୩୯୬ରେ ପ୍ରଦତ୍ତ ପୁରୀର ଶଙ୍କରାନନ୍ଦ ମଠରେ ତମ୍ରପଟାରେ (୮) ଥିବା ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦଙ୍କ ନାମ ମିଳିବାରୁ କୃଷ୍ଣାନନ୍ଦଙ୍କର ପରିଚୟ ଓ ସମୟ ମଧ୍ୟ ନିର୍ଭୁଲଭାବରେ ସ୍ଥିରୀକୃତ ହେଲା । ତମ୍ରପଟାର ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦ ଓ ସହୃଦୟାନନ୍ଦର ରଚୟିତା ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦ ଯେ ଏକ ବ୍ୟକ୍ତି, ଶଙ୍କରାନନ୍ଦ ମଠରେ ଗଙ୍ଗରାଜବଂଶ ପ୍ରଶସ୍ତିରେ ଥିବା ଶ୍ଳୋକାବଳୀ ମଧ୍ୟରେ ଥିବା ଗୋଟିଏ ଶ୍ଳୋକ ସହୃଦୟାନନ୍ଦର ଗୋଟିଏ ଶ୍ଳୋକ ସହିତ ଏକ ହେବାରୁ ଏ ସନ୍ଦେହର ଆଦୌ ସ୍ଥାନ ରହିଲା ନାହିଁ । ସହୃଦୟାନନ୍ଦର ଗୋଟିଏ ଶ୍ଳୋକ ମଧ୍ୟ 'ସାହିତ୍ୟଦର୍ପଣ'ରେ ଉଦ୍ଧୃତ ଅଛି । ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ 'ଏକାବଳୀ' ଉପରେ ଗୋଟିଏ ପ୍ରବନ୍ଧ ମଧ୍ୟ'ଓଡ଼ିଶା ଐତିହାସିକ ଗବେଷଣାପତ୍ରିକା'ର ଭା ୪ରେ ଲେଖିଅଛନ୍ତି । ଏହି ଦୁଇଟି ପ୍ରବନ୍ଧରେ ଶ୍ରୀଯୁକ୍ତ ରାଜଗୁରୁ ବିଶଦଭାବରେ 'ଏକାବଳୀ' ଓ 'ସାହିତ୍ୟଦର୍ପଣ'ର ସମୟ ନିରୂପଣ କରିବାରେ ସମର୍ଥ ହୋଇଅଛନ୍ତି ।

ଗତ ଅଗଷ୍ଟ ମାସରେ ଡକ୍ଟର ସୁଶୀଲ କୁମାର ଦେଙ୍କର (History of Sanskrit Poetics) ପୁସ୍ତକର ଦ୍ୱିତୀୟ ସଂସ୍କରଣ (୧୯୬୦) ଦେଖିବାର ସୁଯୋଗ ପାଇଲି । ଏଥିସହିତ ମହାମହୋପାଧ୍ୟାୟ ପି.ଭି.କାନେଙ୍କ ଲିଖିତ (History of Sanskrit Poetics), (୧୯୫୧), ପୁସ୍ତକ ମଧ୍ୟ ପାଠ କଲି । ଏଗୁଡ଼ିକ ସହିତ କାଶୀର 'ଚୌଖମ୍ବସଂସ୍କୃତ ଗ୍ରନ୍ଥମାଳା'(୧୯୫୫)ର ଓ ବନାରସୀ ଦାସଙ୍କ ପ୍ରକାଶିତ 'ସାହିତ୍ୟଦର୍ପଣ' ଗ୍ରନ୍ଥଦ୍ୱୟ ମଧ୍ୟ ଦେଖିଲି ।

ବର୍ତ୍ତମାନ ପ୍ରଥମେ 'ଏକାବଳୀ' ଗ୍ରନ୍ଥର ସମୟ ନିରୂପଣ ଓ ତତ୍ପରେ 'ସାହିତ୍ୟଦର୍ପଣ'ର ସମୟ ନିରୂପଣ ତଳେ ଆଲୋଚନା କରୁଛି ।

### ଖ) ବିଦ୍ୟାଧରଙ୍କ ରଚିତ 'ଏକାବଳୀ'ର ସମୟ:

'ଏକାବଳୀ'ର ରଚନାକାଳ ଉପରେ ଡ. ସୁଶୀଲ କୁମାର ଦେ ଲେଖିଅଛନ୍ତି । (ଇଂରାଜୀରୁ ଅନୁବାଦ)

"କେ. ପି. ତ୍ରିବେଦୀ ଓ ଡି.ଆର୍.ଭଣ୍ଡାରକରଙ୍କ ଦ୍ୱାରା, ବିଦ୍ୟାଧରଙ୍କ ରଚିତ 'ଏକାବଳୀ'ର ସମୟ ଯଥୋଚିତ ଭାବରେ ନିରୂପିତ ହୋଇଅଛି । x x x । 'ଏକାବଳୀ' ମଧ୍ୟ ସିଂହ ଭୂପାଳଙ୍କ ଦ୍ୱାରା ଉଦ୍ଧୃତ ହୋଇଛି । ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀର ଶେଷଭାଗରେ

---

(୮) J.A.S.B. 1895 and History of Orissa by R.D.Banerji, 1930 Vol. I. p.284

ମଲ୍ଲିନାଥ 'ଏକାବଳୀ' ଉପରେ ଟୀକା କରିଅଛନ୍ତି । ଆଭ୍ୟନ୍ତରୀଣ ପ୍ରମାଣରୁ ପ୍ରତିପାଦିତ ହୁଏ ଯେ 'ଏକାବଳୀ' ଖ୍ରୀ: ୧୩ଶ ଶତାବ୍ଦୀର ପ୍ରଥମ ପାଦଠାରୁ ୧୪ଶ ଶତାବ୍ଦୀର ଶେଷ ପାଦ ମଧ୍ୟରେ ରଚିତ ହୋଇଥିଲା ।

"ଏହି ନିରୂପିତ ସମୟକୁ ଆହୁରି ସଙ୍କୁଚିତ କରାଯାଇ ଖ୍ରୀ: ୧୩ଶ ଶତାବ୍ଦୀର ଶେଷ ଓ ୧୪ଶ ଶତାବ୍ଦୀର ଆରମ୍ଭ ବୋଲି ଧରାଯାଇ ପାରେ, ଯଦି ପ୍ରଶସ୍ତି ବର୍ଣ୍ଣିତ ରାଜା ନରସିଂହଦେବଙ୍କୁ ଖ୍ରୀ: ୧୨୮୨ ଠାରୁ ୧୩୨୭ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଉଭୟ ନରସିଂହଙ୍କ ମଧ୍ୟରୁ ଜଣକୁ 'ଏକାବଳୀ'ରେ ବର୍ଣ୍ଣିତ ନରସିଂହ ବୋଲି ସ୍ୱୀକାର କରାଯାଏ ।"(୯)

ଡକ୍ଟର ଦେଙ୍କର (History of Sanskrit Poetics) ଗ୍ରନ୍ଥଟି ପ୍ରଥମେ ୧୯୨୩ରେ ମୁଦ୍ରିତ ହୋଇଥିଲା ଓ ଏହାର ଦ୍ୱିତୀୟ ସଂସ୍କରଣ ୧୯୬୦ରେ ମୁଦ୍ରିତ ହୋଇଛି । ତାଙ୍କର ଲେଖାରୁ ମନେହୁଏ ଯେ ୧୯୦୩ରେ 'ବଙ୍ଗୀୟ ଏସିଆଟିକ୍ ସୋସାଇଟି ପତ୍ରିକା'ରେ ମୁଦ୍ରିତ ମନମୋହନ ଚକ୍ରବର୍ତ୍ତୀଙ୍କ ପ୍ରବନ୍ଧ ପ୍ରତି ତାଙ୍କର ଦୃଷ୍ଟି ପଡ଼ି ନଥିଲା । ତ୍ରିବେଦୀ ଓ ଭଣ୍ଡାରକରଙ୍କ ମତ ଉପରେ ଆଲୋଚନା କରି ଚକ୍ରବର୍ତ୍ତୀ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ "ବିଦ୍ୟାଧରଙ୍କ ସମୟ ନରସିଂହ ୨ୟ (୧୨୭୮-୧୩୦୫)ଙ୍କ ସମୟରେ ନ ପଡ଼ି ନରସିଂହ ଦେବ ୧ମ (୧୨୩୮-୧୨୬୪)ଙ୍କ ସମୟରେ ପଡ଼େ ।" ଚକ୍ରବର୍ତ୍ତୀଙ୍କ (୧୦) ମତକୁ ରାଖାଲ ଦାସ ବନ୍ଦୋପାଧ୍ୟାୟ ମଧ୍ୟ ଗ୍ରହଣ କରିଥିଲେ (ଓଡ଼ିଶା ଇତିହାସ ଭା୧ ପୃ.୨୪୭) ଚକ୍ରବର୍ତ୍ତୀଙ୍କ ମତକୁ ମଧ୍ୟ ପ୍ରଫେସର ସୁବ୍‌ବାରାୟ ଗ୍ରହଣ କରିଅଛନ୍ତି (କଳିଙ୍ଗର ଗଙ୍ଗବଂଶ ପୃ. ୧୭୬) । ମନମୋହନ ଚକ୍ରବର୍ତ୍ତୀଙ୍କ ମତ ଖଣ୍ଡନ ନ କରି ତ୍ରିବେଦୀ ଓ ଭଣ୍ଡାରକରଙ୍କ ମତ ଉପରେ ନିର୍ଭର କରିଥିବାରୁ ବିଦ୍ୟାଧରଙ୍କ ସମୟ ନିରୂପଣ ଉପରେ ଡକ୍ଟର ଦେ ଯେଉଁ ମତ ବ୍ୟକ୍ତ କରିଅଛନ୍ତି, ତାହା ଗ୍ରହଣୀୟ ହୋଇପାରୁନାହିଁ, କାରଣ ତାହା କିମ୍ବଦନ୍ତୀମୂଳକ କାଳକ୍ରମ ଉପରେ ଲିଖିତ ।

ଡକ୍ଟର ଦେଙ୍କ ସଦୃଶ ମହାମହୋପାଧ୍ୟାୟ କାନେ ମଧ୍ୟ ଚକ୍ରବର୍ତ୍ତୀଙ୍କ ମତର ଉଲ୍ଲେଖ କରି ନାହାନ୍ତି । ତେଣୁ ୧୯୫୧ରେ ସଂସ୍କରଣରେ ସେ ଲେଖିଅଛନ୍ତି ଯେ "ଖ୍ରୀ: ୧୨୮୫-୧୩୨୫ ମଧ୍ୟରେ 'ଏକାବଳୀ' ରଚିତ ହୋଇଥିଲା ।" (୧୧)

---

୯) Dr. S.K.De- History of Sanskrit Poetics, Vol. I. 1960 pp. 205-06

୧୦). ମନମୋହନ ଚକ୍ରବର୍ତ୍ତୀ - J.A.S.B. 1903, p.145

୧୧) M.M.P.V.Kane - History of Sanskrit Poetics, 1951, p. 282

ଡକ୍ଟର ଦେ ଓ ମହାମହୋପାଧ୍ୟାୟ କାନେ ମନମୋହନ ଚକ୍ରବର୍ତ୍ତୀଙ୍କଦ୍ୱାରା ନିର୍ଦ୍ଧାରିତ ଗଙ୍ଗରାଜାମାନଙ୍କର ରାଜତ୍ୱକାଳ ନ ଜାଣି ହଣ୍ଟରଙ୍କ ପ୍ରକାଶିତ କିମ୍ବଦନ୍ତୀମୂଳକ ଗଙ୍ଗବଂଶୀୟ ରାଜତ୍ୱକାଳ ଉପରେ ନିର୍ଭର କରିଥିବାରୁ ଭ୍ରମରେ ପଡ଼ିଅଛନ୍ତି । ମନମୋହନ ଚକ୍ରବର୍ତ୍ତୀ ସ୍ଥିର କରିଅଛନ୍ତି ଯେ ନରସିଂହଦେବ ୧ମ ଖ୍ରୀଃ ୧୨୩୮ଠାରୁ ୧୨୬୪ ପର୍ଯ୍ୟନ୍ତ ଓ ନରସିଂହଦେବ ୨ୟ ଖ୍ରୀଃ ୧୨୭୮ଠାରୁ ୧୩୦୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଡକ୍ଟର ଦେ ଓ ମହାମହୋପାଧ୍ୟାୟ କାନେ ଉଭୟେ ଭ୍ରମାତ୍ମକ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ।

ବିଦ୍ୟାଧରଙ୍କ ସମୟ ନିରୂପଣ ପାଇଁ ନିମ୍ନୋକ୍ତ ଦୁଇଟି ପ୍ରମାଣ ବିଶେଷ ଉଲ୍ଲେଖଯୋଗ୍ୟ, କାରଣ ଏ ଦୁଇଟିର ଭିତ୍ତି ସମସାମୟିକ ଲିପିତତ୍ତ୍ୱମୂଳକ ।

(୧) ଉଭୟ ଡକ୍ଟର ଦେ ଓ ମହାମହୋପାଧ୍ୟାୟ କାନେ 'ଏକାବଳୀ' ସମ୍ପର୍କରେ ସିଂହ ଭୂପାଳଙ୍କର କଥା ଲେଖିଅଛନ୍ତି । ସିଂହଭୂପାଳ ଲେଖିଅଛନ୍ତି --

"ଭୋ ମ୍ଳେଚ୍ଛରସବାଦିନ୍, ଉତ୍କଳାଧିପତେଃ ଶୃଙ୍ଗାର-ରସ-ବାଦିନଃ ନରସିଂହଦେବସ୍ୟ ଚିତ୍ତମନୁବର୍ତ୍ତମାନେନ ବିଦ୍ୟାଧରେଣ କବିନା ବାଙ୍ମଭ୍ୟନ୍ତରେ କୃତୋଽପି, ଏବଂ ଖଲୁ ସମର୍ଥିତାନ ଏକାବଲ୍ୟାମନେନ (୧୨) ।"

ସିଂହ ଭୂପାଳଙ୍କର ଏହି ଲେଖାରୁ ମନେହୁଏ ଯେ ସେ କୌଣସି ସମାଲୋଚକଙ୍କୁ ଲକ୍ଷ୍ୟ କରି ଏହା ଲେଖିଅଛନ୍ତି । ଏହି ଲେଖାରେ ନରସିଂହଦେବ, ବିଦ୍ୟାଧର ଓ ଏକାବଳୀର ଉଲ୍ଲେଖ ଅଛି । ଏଥିରୁ ସୂଚିତ ହୁଏ ଯେ ସିଂହଭୂପାଳ, ନରସିଂହଦେବ ଓ ବିଦ୍ୟାଧର ସମସ୍ତେ ସମକାଳୀନ ଥିଲେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ, ସିଂହଭୂପାଳଙ୍କର ସମକାଳୀନ ଉତ୍କଳାଧିପତି ଏ ନରସିଂହ ଦେବ କିଏ ? ଏହା ସ୍ଥିର କରିବାକୁ ହେଲେ ସିଂହ ଭୂପାଳଙ୍କର ସମୟ ଜାଣିବା ଏକାନ୍ତ ଆବଶ୍ୟକ ।

ତ୍ରିବେନ୍ଦ୍ରମରୁ ପ୍ରକାଶିତ 'ରସାର୍ଣ୍ଣବ ସୁଧାକର' ପୁସ୍ତକରେ ସିଂହ ଭୂପାଳଙ୍କର ସମୟ ଖ୍ରୀଃ ୧୩୩୦ ବୋଲି ସୂଚିତ ହୋଇଥିଲା । ମହାମହୋପାଧ୍ୟାୟ କାନେ ସିଂହଭୂପାଳଙ୍କ ସମ୍ପର୍କରେ ଲେଖିଅଛନ୍ତି :-- (ଅନୁବାଦ)

---

(୧୨) O.H.R. J.Vol. IV nos 3 & 4 p. 89 and H.P. Sastri - Descriptive catalogue of Sanskrit Mss. Vol. III. (Introduction p. CCCXI.)

'ରସାର୍ଣ୍ଣବ ସୁଧାକର'ର ଲେଖକ ସିଂହଭୂପାଳ ବେଙ୍କଟ୍‌ଗିରିର ରାଜା (ପ୍ରାୟ ଖ୍ରୀ: ୧୩୩୦) ଅନନ୍ତ (ଅନଶୋତ)ଙ୍କର ପୁତ୍ର ଥିଲେ । ସିଂହଭୂପାଳଙ୍କର ଅନ୍ୟନାମ ସର୍ବଜ୍ଞ । ଏ.ଏନ୍.କୃଷ୍ଣ ଆୟାଙ୍ଗାରଙ୍କ ଦ୍ୱାରା ପ୍ରସ୍ତାବିତ ସମୟ ଖ୍ରୀ: ୧୩୪୦-୧୩୬୦ ପ୍ରାୟ ଠିକ୍ ଅଛି ବୋଲି ଧରିବାକୁ ହେବ । କାରଣ ଶ୍ରୀରଙ୍ଗମ୍‌ର ତମ୍ବପଟାରେ ଏ କଥା ଉଲ୍ଲେଖ ଥିବାର ଦେଖାଯାଏ ।" (୧୩)

ଡକ୍ଟର ଦେ ମଧ୍ୟ ଆୟାଙ୍ଗାରଙ୍କର ଏହି ସମୟ ଗ୍ରହଣ କରିଛନ୍ତି । (୧୪)

ସିଂହଭୂପାଳଙ୍କର (ଖ୍ରୀ: ୧୩୪୦-୬୦ ମଧ୍ୟରେ) ଓ ନରସିଂହଦେବ ୩ୟଙ୍କର ସମୟ (ଖ୍ରୀ: ୧୩୨୭-୧୩୫୨) ବେଶ୍ ମେଳ ଖାଉଛି । ଏଣୁ ସିଂହଭୂପାଳଙ୍କର ଲେଖାର ସମୟକୁ ଖ୍ରୀ: ୧୩୪୦-୫୦ ଧରାଗଲେ ନରସିଂହଦେବ ୩ୟ, ବିଦ୍ୟାଧର ଓ ସିଂହଭୂପାଳ ସମସ୍ତେ ଏହି ସମୟରେ ଜୀବିତ ଥିବାର କଥା ପ୍ରମାଣିତ ହୁଏ ।

ବର୍ତ୍ତମାନ ଦେଖାଯାଉ, 'ଏକାବଳୀ' ରେ ବର୍ଣ୍ଣିତ ନରସିଂହଦେବ ୩ୟଙ୍କ ସଂପର୍କରେ 'ଏକବଳୀ'ର ଶ୍ଳୋକାଦିରୁ କୌଣସି ଅଭ୍ୟନ୍ତରୀଣ ପ୍ରମାଣ ମିଳୁଛି କି ନା ।

(୨) ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ ବିଶେଷ ଧନ୍ୟବାଦାର୍ହ ଯେ ପ୍ରଶସ୍ତିବର୍ଣ୍ଣିତ ନରସିଂହଙ୍କର ରାଣୀଙ୍କର ନାମ କମଳା ଥିଲା ଓ ତାଙ୍କୁ ଲକ୍ଷ୍ୟକରି ପ୍ରଶସ୍ତିକାର ବିଦ୍ୟାଧର କେତୋଟି ଶ୍ଳୋକ ରଚନା କରିଥିବାର କଥା ସେ ଉଲ୍ଲେଖ କରିଅଛନ୍ତି ଓ ତାହାର ଲିପିତତ୍ତ୍ୱମୂଳକ ପ୍ରମାଣ ଦେଖାଇଅଛନ୍ତି । (୧୫)

ଶ୍ରୀଯୁକ୍ତ ରାଜଗୁରୁ ଗଙ୍ଗବଂଶର ୪ଜଣ ନରସିଂହଦେବଙ୍କ ରାଜତ୍ୱକାଳ ସହିତ ରାଣୀମାନଙ୍କର ନାମ ଦେଇ ନିମ୍ନୋକ୍ତ ତାଲିକା ଦେଇଥିଲେ ।

| *ରାଜାଙ୍କ ନାମ* | *ରାଣୀଙ୍କ ନାମ* | *ରାଜତ୍ୱକାଳ* |
|---|---|---|
| ୧. ନରସିଂହଦେବ ୧ମ | ସୀତାଦେବୀ | ଖ୍ରୀ: ୧୨୩୮-୬୪ |
| ୨. ନରସିଂହଦେବ ୨ୟ | ସୋଡ଼ଦେବୀ | ଖ୍ରୀ: ୧୨୭୮-୧୩୦୫ |
| ୩. ନରସିଂହଦେବ ୩ୟ | କମଳା ଦେବୀ | ଖ୍ରୀ: ୧୩୨୭-୧୩୫୨ |
| ୪. ନରସିଂହଦେବ ୪ର୍ଥ | ଗଙ୍ଗାଦେବୀ | ଖ୍ରୀ: ୧୩୭୮-୧୪୧୪ |

(୧୩) M.M.Kane - History of Sanskrit poetics pp. 410-411
(୧୪) Dr. De- History of Sanskrit poetics Vol. I 1960. p.239
(୧୫) O.H.R.J. Vol. nos 3 & 4, pp. 89-91.

୧୯୦୩ରେ ମୁଦ୍ରିତ ଗଙ୍ଗ ରାଜବଂଶର ତାଲିକାରେ ମନମୋହନ ଚକ୍ରବର୍ତ୍ତୀ ନରସିଂହ ୧ମ, ନରସିଂହ ୨ୟ ଓ ନରସିଂହ ୩ୟଙ୍କର ରାଣୀମାନଙ୍କର ନାମ ଯଥାକ୍ରମେ ସୀତାଦେବୀ, ଗ୍ରେଡ଼ଦେବୀ ଓ କମଳାଦେବୀ ଥିବାର ଲେଖିଥିଲେ । ସେ ମଧ୍ୟ ନରସିଂହ ୩ୟଙ୍କର ଗଙ୍ଗାଦେବୀ ଓ କୋମୀଦେବୀ ନାମଧେୟ ଅନ୍ୟ ଦୁଇ ରାଣୀଙ୍କ କଥା ଲେଖିଥିଲେ ଓ ନରସିଂହ ୪ର୍ଥଙ୍କ ରାଣୀଙ୍କର ନାମ ଦେଇ ନଥିଲେ । ଶ୍ରୀଯୁକ୍ତ ରାଜଗୁରୁ ଅନୁସନ୍ଧାନଦ୍ୱାରା ସ୍ଥିର କରିଅଛନ୍ତି ଯେ ଗଙ୍ଗାଦେବୀ ନରସିଂହ ୪ର୍ଥଙ୍କର ରାଣୀ ଥିଲେ । ଶ୍ରୀଯୁକ୍ତ ରାଜଗୁରୁଙ୍କଦ୍ୱାରା ନିର୍ବାଚିତ ପ୍ରଶସ୍ତି-ଶ୍ଳୋକଗୁଡ଼ିକ ନରସିଂହଦେବ ୩ୟଙ୍କ ରାଣୀ କମଳାଙ୍କ ପ୍ରତି ଲକ୍ଷ୍ୟ କରି ଲିଖିତ ହୋଇଥିବାର ମନେହୁଏ ଓ ସେଥିରେ ବ୍ୟବହୃତ କମଳା ଶବ୍ଦ ଗୋଟିଏ ଶ୍ଳୋକରେ ଅଛି ଓ ଅନ୍ୟତ୍ର ଅଭିଧାନୋକ୍ତ କମଳା ଶବ୍ଦର ପ୍ରତିଶବ୍ଦ ଅଛି । ''କାନ୍ତାକିଂ'' ଶ୍ଳୋକଟିରେ 'କମଳା' ଶବ୍ଦ ବ୍ୟବହୃତ ହୋଇଅଛି ଓ ଏହାର ଅର୍ଥ କେବଳ ରାଣୀ କମଳା ଅର୍ଥରେ ସହଜରେ ପରିସ୍ଫୁଟ ହୁଏ । ତ୍ରିବେଦୀ ଯେତେବେଳେ ଏହି ଶ୍ଳୋକର ଅର୍ଥ କରିଥିଲେ, ତାଙ୍କୁ ଜଣାନଥିଲା ଯେ ନରସିଂହ ଦେବଙ୍କର ରାଣୀଙ୍କ ନାମ 'କମଳା' ଥିଲା; ସେ ତାଙ୍କ ପୁସ୍ତକର ପୃ ୫୬୨ଷ୍ଟାରେ ମୁଦ୍ରିତ ନୋଟରେ ଲେଖିଅଛନ୍ତି ଯେ ''ଚନ୍ଦ୍ର କଦାପି କମଳର ଆହ୍ଲାଦଦାୟକ ହୁଅନ୍ତି ନାହିଁ; କିନ୍ତୁ ରାଜା ତାଙ୍କ ରାଣୀ 'କମଳା' (ଲକ୍ଷ୍ମୀ)ର ଆହ୍ଲାଦଦାୟକ ଅଟନ୍ତି ।'' ବିଦ୍ୟାଧର 'କମଳୋଲ୍ଲାସନ' ଶବ୍ଦ ବ୍ୟବହାର କରିଅଛନ୍ତି । ସନ୍ଧିବିଚ୍ଛେଦରେ ଏଥିରୁ ଦୁଇଟି ଅର୍ଥ ବାହାରେ, ଯଥା - 'କମଳ + ଉଲ୍ଲାସନ', ଓ 'କମଳା + ଉଲ୍ଲାସନ' -- ଚନ୍ଦ୍ର ଅର୍ଥରେ ଓ ରାଜାଙ୍କ ଅର୍ଥରେ ପ୍ରୟୋଗ କରାଯାଇଅଛି ।

ଏହି ଆଭ୍ୟନ୍ତରୀଣ 'କମଳା' ନାମରୁ 'ଏକାବଳୀ'ର ପ୍ରଶସ୍ତିରେ ବର୍ଣ୍ଣିତ ନରସିଂହଙ୍କୁ ଗଙ୍ଗନୃପତି ନରସିଂହଦେବ ୩ୟ ବ୍ୟତୀତ ଅନ୍ୟ କୌଣସି ନରସିଂହଦେବ ମାନଙ୍କୁ ଚିହ୍ନିତ କରିହେବ ନାହିଁ, କାରଣ ସେମାନଙ୍କର ରାଣୀମାନଙ୍କର ନାମ 'କମଳା' ନୁହେଁ । ନରସିଂହ ଦେବ ୩ୟ ଖ୍ରୀଃ ୧୩୨୬-୧୩୫୨ ପର୍ଯ୍ୟନ୍ତ ରାଜପଣ କରିଥିବାରୁ ଏକାବଳୀର ରଚନା କାଳ ଖ୍ରୀଃ ୧୩୪୦-୫୦ ମଧ୍ୟରେ ନିର୍ଦ୍ଦେଶିତ ହେଲେ ଆମ୍ଭେମାନେ ନରସିଂହଦେବ ବିଦ୍ୟାଧର ଓ ସିଂହ ଭୂପାଳଙ୍କୁ ସମସାମୟିକ ଧରିନେବୁ । ସିଂହ ଭୂପାଳଙ୍କର ସମୟ ଲିପିତତ୍ତ୍ୱରୁ ମିଳେ ଓ କମଳା ନାମରୁ ନରସିଂହ ଦେବ ୩ୟଙ୍କ ନାମ ମଧ୍ୟ ଲିପିତତ୍ତ୍ୱରୁ ମିଳେ । ଏଣୁ ଏହି ସମୟ ନିର୍ଦ୍ଦେଶରେ ଲିପିତତ୍ତ୍ୱମୂଳକ ପ୍ରମାଣ ଥିବାରୁ ଏକାବଳୀର ଏହି ରଚନା କାଳ ଖ୍ରୀଃ ୧୪ଶ ଶତାବ୍ଦୀର ମଧ୍ୟଭାଗ ବୋଲି ସ୍ଥିରୀକୃତ ହେବା ସଙ୍ଗତ ।

'ଓଡ଼ିଶା ଐତିହାସିକ ଗବେଷଣା ପତ୍ରିକା'ର ଭା୮ ର ପୃ୧୧୮-୧୨୭ରେ ଶ୍ରୀଯୁକ୍ତ

କେଦାରନାଥ ମହାପାତ୍ର ବିଦ୍ୟାଧରଙ୍କ 'ଏକାବଳୀ'ରେ ବର୍ଣ୍ଣିତ ରାଜା ନରସିଂହ (King Narasingha Eulogised in Ekabali of Vidyadhara) ନାମଧେୟ ପ୍ରବନ୍ଧରେ ପ୍ରମାଣ କରିବାର ଚେଷ୍ଟା କରିଅଛନ୍ତି ଯେ ଏ ରାଜା, ନରସିଂହ ଦେବ ୧ମ । ତାଙ୍କର ଏହି ସିଦ୍ଧାନ୍ତ ଠିକ୍ ମନମୋହନ ଚକ୍ରବର୍ତ୍ତୀଙ୍କ ସିଦ୍ଧାନ୍ତର ଅନୁରୂପ । ନରସିଂହଦେବ ୧ମଙ୍କ ସହିତ ବଙ୍ଗର ମୁସଲମାନମାନଙ୍କର ଯୁଦ୍ଧ ବିଗ୍ରହର କଥା ଠିକ୍ ସମସାମୟିକ ପ୍ରମାଣ ଦ୍ୱାରା ସମର୍ଥିତ ହୁଏ କେବଳ ମୁସଲମାନ ଇତିହାସରୁ । ଓଡ଼ିଶାରୁ ଯେଉଁସବୁ ପ୍ରମାଣ ମିଳେ, ତାହା ଠିକ୍ ନରସିଂହ ଦେବଙ୍କର ସମସାମୟିକ ନହୋଇ ଅତି ଅଳ୍ପ କାଳ ପରବର୍ତ୍ତୀ । ସେହି ସମୟରୁ ବଙ୍ଗର ମୁସଲମାନ ରାଜାମାନଙ୍କ ସହିତ ଓଡ଼ିଶାର ଗଙ୍ଗବଂଶୀୟ ରାଜାମାନଙ୍କର ଯୁଦ୍ଧ ପରବର୍ତ୍ତୀ ବହୁଶତାବ୍ଦୀ ପର୍ଯ୍ୟନ୍ତ ଲାଗିଥିଲା । କିନ୍ତୁ 'ଏକାବଳୀ' ରଚନାକାଳ ବେଳକୁ ମୁସଲମାନମାନଙ୍କ ସହିତ ଯୁଦ୍ଧର ବିଭୀଷିକା ହ୍ରାସ ପାଇ ଯୁଦ୍ଧ କଥା, ପ୍ରାୟ କିମ୍ବଦନ୍ତୀରେ ପରିଣତ ହୋଇଥିଲା । ଶ୍ରୀଯୁକ୍ତ ମହାପାତ୍ର, 'ଏକାବଳୀ'ର ଯେଉଁ କେତୋଟି ଆଭ୍ୟନ୍ତରୀଣ ପ୍ରମାଣ ଉପରେ ନିର୍ଭର କରିଅଛନ୍ତି ଯଥା 'ବଙ୍ଗ-ସଙ୍ଗର ସୀମନି (ପୃ.୨୦୮) ଯବନାବନି ବଲ୍ଲଭ ନରସିଂହ' 'ଶକାଧୀଶ୍ୱର (ପୃ୩୨୬)' ଓ 'ହମ୍ମୀର' ଇତ୍ୟାଦି, ସେଗୁଡ଼ିକରେ ଐତିହାସିକ ସତ୍ୟ ନିହିତ ଥିଲାପରି ପ୍ରମାଣ ମିଳେ ନାହିଁ । ଏଗୁଡ଼ିକ ନିମ୍ନୋକ୍ତ ଶ୍ଳୋକସଦୃଶ ପ୍ରତୀୟମାନ ହୁଏ: -

ଗୌଡ଼-ଗୁର୍ଜ୍ଜର-କର୍ଣ୍ଣାଟ-ଲଟ-ମାଳବ-ସେବିନା ।
ନରସିଂହ ନୃପେ ଦୃଷ୍ଟେ ଭବନ୍ତି କରହାଟକାଃ । (ପୃ.୧୧୨)

ଏହି ବିରୁଦଗୁଡ଼ିକ ପ୍ରକୃତରେ କୌଣସି ନରସିଂହଙ୍କର ନଥିଲା, ପୂର୍ବୋକ୍ତ ଶ୍ଳୋକରେ ଯେଉଁ ସବୁ ବିଷୟ ମିଳେ, ତାହା ନରସିଂହ ଦେବ ୧ମ ଓ ୨ୟଙ୍କ ରାଜତ୍ୱ ସମୟର, ପରବର୍ତ୍ତୀ କାଳରେ ପ୍ରଦତ୍ତ ଗଙ୍ଗ, ତମ୍ବପଟାରେ ଲିଖିତ ହୋଇନାହିଁ । ମନମୋହନ ଚକ୍ରବର୍ତ୍ତୀ ଲେଖିଅଛନ୍ତି ଯେ "ସଂସ୍କୃତ କବିବୃନ୍ଦ, ପ୍ରଶସ୍ତି ଲେଖିଲାବେଳେ ପୃଷ୍ଠପୋଷକ ରାଜାମାନଙ୍କର ନାମରେ ବିରୁଦପରେ ବିରୁଦ ଜମାକରି ଦିଅନ୍ତି ।" ଚକ୍ରବର୍ତ୍ତୀଙ୍କ ଏହି ଉକ୍ତି ବିଦ୍ୟାଧରଙ୍କ ପକ୍ଷରେ ଠିକ୍ ପ୍ରଯୁଜ୍ୟ । ଏଣୁ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ସହିତ ମୁଁ ଏକମତ ହୋଇପାରୁନାହିଁ । 'ଏକାବଳୀ'ରେ 'କମଳାଦେବୀ'ର ଉଲ୍ଲେଖରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ବିଦ୍ୟାଧରଙ୍କ ପୃଷ୍ଠପୋଷକ ରାଜା ନରସିଂହଦେବ, ପ୍ରକୃତରେ ଐତିହାସିକ ଗଙ୍ଗନୃପତି ନରସିଂହ ଦେବ ୩ୟ ଓ ଏକାବଳୀ ଖ୍ରୀ: ୧୩୩୦ରୁ ୧୩୫୦ ମଧ୍ୟରେ ରଚିତ ହୋଇଥିଲା ।

### ଗ) ସାହିତ୍ୟ-ଦର୍ପଣର ସମୟ:

ବିଶ୍ୱନାଥ କବିରାଜଙ୍କ ରଚିତ 'ସାହିତ୍ୟଦର୍ପଣ'ର ସମୟ ନିରୂପଣ କରିବାକୁ ଯାଇ ଡକ୍ଟର ସୁଶୀଲକୁମାର ଦେ ଲେଖିଅଛନ୍ତି -

''ଏହିସବୁ ବିଷୟ ଆଲୋଚନା ପରେ ଏହା ସମ୍ଭବ ଯେ ବିଶ୍ୱନାଥଙ୍କୁ ଖ୍ରୀ: ୧୨୦୦ ଠାରୁ ୧୩୫୦ ପର୍ଯ୍ୟନ୍ତ ସମୟ ମଧ୍ୟରେ ସ୍ଥାନ ଦେବାକୁ ପଡ଼ିବ । ଏହି ଦୀର୍ଘକାଳ କିଞ୍ଚିତ୍ ସଙ୍କୁଚିତ କରାଯାଇପାରେ । 'ସାହିତ୍ୟ ଦର୍ପଣ'ରେ ବ୍ୟବହୃତ ଆଲାଉଦ୍ଦୀନ ନାମକ ମୁସଲମାନ ରାଜାଙ୍କର ସମୟ ନିର୍ଦ୍ଧାରଣ ଉପରେ, ଓ୍ୟାରଙ୍ଗଲ ଆକ୍ରମଣକାରୀ ସୁଲତାନ ଆଲାଉଦ୍ଦିନ୍ ଖିଲଜୀଙ୍କୁ ଏହି 'ଆଲାଉଦ୍ଦୀନ୍ ସହିତ ଯଦି ଏକ ଧରାଯାଏ, ତେବେ ଏହି ସୁଲତାନ ଖ୍ରୀ: ୧୩୧୬ରେ ପ୍ରାଣତ୍ୟାଗ କରିଥିଲେ, ଏଣୁ ତାଙ୍କ ଜୀବିତାବସ୍ଥାରେ ଯଦି ଏହି ଶ୍ଳୋକ ରଚିତ ହୋଇଥିବାର ଧରାଯାଏ, ତେବେ ଶ୍ଳୋକଟିର ରଚନାକାଳ ଖ୍ରୀ: ୧୩୦୦ ବୋଲି ଧରାଯାଇପାରେ । ଯଦି ଐତିହାସିକ ପ୍ରମାଣ ଉପରେ ନିର୍ଭର କରିବାକୁ ହେବ, ତେବେ ବିଶ୍ୱନାଥଙ୍କୁ ଖ୍ରୀ: ୧୩୦୦ ଠାରୁ ୧୩୫୦ ମଧ୍ୟରେ ବା ମୋଟାମୋଟି ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସ୍ଥାନ ଦେବାକୁ ହେବ ।'' (୧୬)

ଡକ୍ଟର ଦେ, ଯଦି 'ଓଡ଼ିଶା ଐତିହାସିକ ଗବେଷଣା ପତ୍ରିକା' ୧୯୫୮, ଭାଗରେ ପ୍ରକାଶିତ 'ଚନ୍ଦ୍ରକଳା ନାଟିକା' ଦେଖିଥାଆନ୍ତେ, ତେବେ ତାଙ୍କୁ ପୂର୍ବୋକ୍ତ ଭାବରେ ବିଶ୍ୱନାଥଙ୍କ ସମୟ ନିରୂପଣ କରିବାର ପନ୍ଥା ଅବଲମ୍ବନ କରିବାକୁ ପଡ଼ି ନଥାଆନ୍ତା ।

ଅନ୍ୟାନ୍ୟ ପ୍ରକାଶିତ ପୁସ୍ତକ ଯଥା (୧)-- ମହାମହୋପାଧ୍ୟାୟ କାନେଙ୍କ 'ଅଳଙ୍କାର-ଶାସ୍ତ୍ର ଇତିହାସ' (୧୯୫୧), (୨) ଚୌଖମ୍ବା ପ୍ରକାଶିତ 'ସାହିତ୍ୟ ଦର୍ପଣ', (୩) ମୋତିଲାଲ ବନାରସୀ ଦାସ ପ୍ରକାଶିତ 'ସାହିତ୍ୟଦର୍ପଣ' ପୁସ୍ତକଗୁଡ଼ିକରେ ଆଲୋଚିତ ଯୁକ୍ତିଠାରୁ ଡକ୍ଟର ଦେଙ୍କ ଯୁକ୍ତି ଯେ ବଳବତ୍ତର, ତାହା ତଳୋକ୍ତ ଲେଖାରୁ ଜଣାଯିବ ।

୧) ମହାମହୋପାଧ୍ୟାୟ କାନେ ବିଶ୍ୱନାଥଙ୍କ ସାହିତ୍ୟଦର୍ପଣର ଆଲୋଚନାରେ ଲେଖିଅଛନ୍ତି -

''ଖ୍ରୀ. ୧୩୦୦-୧୩୮୦ ମଧ୍ୟରେ ବିଶ୍ୱନାଥଙ୍କର ସମୟ ଯେ ନିରୂପିତ ହୋଇଛି; ଏହା ଅଖଣ୍ଡନୀୟ ଓ ସ୍ୱାଧୀନ ପ୍ରମାଣ ଉପରେ ପ୍ରତିଷ୍ଠିତ (୧୭) ।

---

୧୬) Dr. S.K. De - History of Sanskrit Poetics 1960 Vol.I pp. 213-14.

୧୭) M.M.Kane - do 1951.p.291

୨) କାଶୀର, ଚୌଖମ୍ବା ଗ୍ରନ୍ଥମାଳାରେ ୧୯୫୫ରେ ପ୍ରକାଶିତ 'ସାହିତ୍ୟଦର୍ପଣ' ର ପ୍ରସ୍ତାବନାର ଲେଖକ ଆଚାର୍ଯ୍ୟ କୃଷ୍ଣମୋହନ ଶାସ୍ତ୍ରୀ, ଏହି ପୁସ୍ତକର ପୃ ୧୩-୨୦ରେ 'ସାହିତ୍ୟଦର୍ପଣ' ବିଷୟ ଆଲୋଚନା କରିଛନ୍ତି । ସଂସ୍କୃତ ଲେଖାର ଓଡ଼ିଆ ଅନୁବାଦ ତଳେ ଦିଆଗଲା ।

"ବିଶ୍ୱନାଥଙ୍କର ଜନ୍ମକାଳ ଜଣାନଥିଲେ ମଧ୍ୟ ଏହା ସ୍ଥିର କରିବା କଠିନ ବ୍ୟାପାର ନୁହେ । ସେ ମମ୍ମଟଙ୍କର ପରବର୍ତ୍ତୀ ଓ 'ରସଗଙ୍ଗାଧର' ରଚୟିତା ଜଗନ୍ନାଥଙ୍କର ପୂର୍ବବର୍ତ୍ତୀ । ଏହି ସମୟ ମଧ୍ୟରେ ଏହା ଯୁକ୍ତିସଙ୍ଗତ ଯେ ବିଶ୍ୱନାଥ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ଲୋକ ଥିଲେ, xxx । ଓଡ଼ିଶାର ସିଂହାସନରେ ଅନେକ ନରସିଂହ ଓ ଅନେକ ଭାନୁଦେବ ଅଧିଷ୍ଠିତ ଥିଲେ । ସାନ୍ଧିବିଗ୍ରହିକ ଉପାଧି ସହିତ ନିଜେ ବିଶ୍ୱନାଥ ଓ ତାଙ୍କର ପିତାମହ ନାରାୟଣ ଦାସ, ରାଜା ନରସିଂହମାନଙ୍କର ରାଜସଭା ଅଳଙ୍କୃତ କରିଥିଲେ । ଏହି ନରସିଂହମାନଙ୍କ ମଧ୍ୟରୁ ଜଣେ ନରସିଂହ ଖ୍ରୀଃ ୧୨୮୭ରେ ଓ ଦ୍ୱିତୀୟ ନରସିଂହ ଖ୍ରୀଃ ୧୩୦୭ରେ ସିଂହାସନାରୂଢ଼ ଥିଲେ । ସମ୍ଭବତଃ ବିଶ୍ୱନାଥ 'ନରସିଂହ ବିଜୟ' ନାମକ କାବ୍ୟ ନରସିଂହ ୨ୟଙ୍କୁ ଲକ୍ଷ୍ୟକରି ଲେଖିଥିଲେ । ତାଙ୍କର ପିତାମହ ଖ୍ରୀଃ ୧୩୦୬ ପୂର୍ବରୁ ନରସିଂହଦେବଙ୍କର ସଭା ପଣ୍ଡିତ ଥିଲେ xxx । ବିଶ୍ୱନାଥଙ୍କର ପିତା ଚନ୍ଦ୍ରଶେଖର, ଭାନୁଦେବଙ୍କର ସାନ୍ଧିବିଗ୍ରହିକ ଥିଲେ । ନିଃଶଙ୍କ ଭାନୁଦେବ ନରସିଂହ ୨ୟଙ୍କର ପୁତ୍ର ଥିଲେ ଓ ବିଶ୍ୱନାଥଙ୍କର ପୃଷ୍ଠପୋଷକ ଥିଲେ"(୧୮) ।

ପୂର୍ବୋକ୍ତ ଲେଖାରୁ ମନେହୁଏ ଯେ, ଲେଖକ ହଣ୍ଟରଙ୍କ ବଂଶତାଲିକା ଉପରେ ନିର୍ଭର କରିଅଛନ୍ତି ।

୩) ମୋତିଲାଲ ବନାରସୀଦାସଙ୍କ ପ୍ରକାଶିତ ସାହିତ୍ୟଦର୍ପଣ ପୁସ୍ତକରେ, ହିନ୍ଦୀରେ ଥିବା ମୁଖବନ୍ଧର ଓଡ଼ିଆ ଅନୁବାଦ ତଳେ ଦିଆଗଲା ।

"ସାହିତ୍ୟଦର୍ପଣ"ର ରଚୟିତା ବିଶ୍ୱନାଥ କବିରାଜ ଖ୍ରୀଃ ୧୪ଶ ଶତାବ୍ଦୀରେ ଜୀବିତ ଥିଲେ । ସେ ଉତ୍କଳୀୟ ବ୍ରାହ୍ମଣ ଥିଲେ । ତାଙ୍କର ପିତାଙ୍କର ନାମ ଚନ୍ଦ୍ରଶେଖର । ତାଙ୍କର ପୂର୍ବପୁରୁଷମାନେ ଜ୍ଞାନ ଓ ବିନୟରେ ଧୁରନ୍ଧର ଥିଲେ । ତାଙ୍କ ବଂଶର ଅନେକେ ରାଜସଭାରେ ବଡ଼ ବଡ଼ ସ୍ଥାନ ଅଧିକାର କରିଥିଲେ । ବିଶ୍ୱନାଥ ନିଜେ ସାନ୍ଧିବିଗ୍ରହିକ (ମନ୍ତ୍ରୀ) ଥିଲେ । ଏହିସବୁ କଥା ସାହିତ୍ୟ ଦର୍ପଣରେ ଉଲ୍ଲିଖିତ ଅଛି । ଉଦ୍ଧୃତାଂଶଗୁଡ଼ିକରୁ ଦେଖାଯାଏ ଯେ ବିଶ୍ୱନାଥ ବା ସାହିତ୍ୟ ଦର୍ପଣ ସଂପର୍କରେ କୌଣସି ନିଶ୍ଚୟାତ୍ମକ

---

୧୮) ଚୌଖମ୍ବା 'ସାହିତ ଦର୍ପଣ' ୧୯୫୫ ପ୍ରସ୍ତାବନା ପୃ. ୧୮-୧୯

ବିଶ୍ୱାସଯୋଗ୍ୟ ପ୍ରମାଣ ପ୍ରଦର୍ଶିତ ହୋଇନାହିଁ । ଏହି କାରଣରୁ କେତେକ ଅକାଟ୍ୟ ଲିପିତତ୍ତ୍ୱ ଓ ସାହିତ୍ୟିକ ପ୍ରମାଣ ବଳରେ ଏ ବିଷୟରେ ନୂତନ ଆଲୋକପାତ କରିବାର ଚେଷ୍ଟା କରୁଅଛି ।

ପୂର୍ବେ ବର୍ଣ୍ଣିତ ହୋଇଛି ଯେ 'ଚନ୍ଦ୍ରକଳା ନାଟିକା'ର ଆବିଷ୍କାର ଓ ମୁଦ୍ରଣ ଓ ତତ୍ ସହିତ ସହୃଦୟାନନ୍ଦ ରଚୟିତା ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦଙ୍କର ସମୟ ନିରୂପଣ ଦ୍ୱାରା 'ବିଶ୍ୱନାଥ' ଓ 'ସାହିତ୍ୟଦର୍ପଣ' ଉପରେ ପ୍ରଭୂତ ଆଲୋକପାତ ହୋଇଅଛି ।

ନରସିଂହଦେବ ୪ର୍ଥ (ଖ୍ରୀ: ୧୩୭୮-୧୪୧୪)ଙ୍କ 'କେନ୍ଦୁଳି (୧୯) ତମ୍ବପଟା' (ଖ୍ରୀ: ୧୩୮୪) ରେ ଲିଖିତ ରାଜକର୍ମଚାରୀବୃନ୍ଦଙ୍କ ମଧ୍ୟରେ କୃଷ୍ଣାନନ୍ଦଙ୍କର ନାମୋଲ୍ଲେଖ ନାହିଁ; କିନ୍ତୁ ଖ୍ରୀ: ୧୩୯୬ରେ ପ୍ରଦତ୍ତ ପୁରୀର ଶଙ୍କରାନନ୍ଦ ମଠର (୨୦) ତମ୍ବାପଟାର ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦଙ୍କର ନାମୋଲ୍ଲେଖ ଅଛି । କୃଷ୍ଣାନନ୍ଦ କପିଞ୍ଜଳ କୁଳରେ ଜନ୍ମଗ୍ରହଣ କରିଥିଲେ । ବିଶ୍ୱନାଥ ଓ ତାଙ୍କର ପୂର୍ବପୁରୁଷମାନେ ମଧ୍ୟ କପିଞ୍ଜଳ କୁଳୋଦ୍ଭବ ଥିଲେ । ଏଥିରୁ ମନେହୁଏ ଯେ କୃଷ୍ଣାନନ୍ଦ ବିଶ୍ୱନାଥଙ୍କ ଦୂର ବା ନିକଟ ସମ୍ପର୍କୀୟ ଆତ୍ମୀୟ ଥିଲେ ।

ନରସିଂହ ୩ୟ (ଖ୍ରୀ: ୧୩୨୭-୧୩୫୨) ଓ ଭାନୁଦେବ ୩ୟ (ଖ୍ରୀ: ୧୩୫୨-୧୩୭୮) ଙ୍କର କୌଣସି ତମ୍ବପଟା ଆବିଷ୍କୃତ ହୋଇନାହିଁ; କିନ୍ତୁ ବିଶ୍ୱନାଥଙ୍କର ଲେଖାରୁ ଜଣାଯାଏ ଯେ ତାଙ୍କର ପିତା ସାନ୍ଧିବିଗ୍ରହିକ ଚନ୍ଦ୍ରଶେଖର, ରାଜାଭାନୁଦେବ ୩ୟଙ୍କର ସଭା ପଣ୍ଡିତ ଥିଲେ । ଚନ୍ଦ୍ରଶେଖର ଗୋଟିଏ ଶ୍ଳୋକରେ ଭାନୁଦେବଙ୍କୁ 'ଉମାବଲ୍ଲଭ' ବା ରାଣୀ ଉମାଙ୍କର ସ୍ୱାମୀ ବୋଲି ବର୍ଣ୍ଣନା କରିଅଛନ୍ତି । ବିଶ୍ୱନାଥ ନିଜେ ମଧ୍ୟ 'ଉମାବଲ୍ଲଭ'ର ବ୍ୟାଖ୍ୟା 'ସାହିତ୍ୟଦର୍ପଣ'ର ୨ୟ ଅଧ୍ୟାୟରେ ନିମ୍ନୋକ୍ତ ଭାବରେ ଲେଖିଅଛନ୍ତି --

"ଅତ୍ର ପ୍ରକରଣେନାଭିଧୟା 'ଉମାବଲ୍ଲଭ' ଶବ୍ଦସ୍ୟୋମାନାମ୍ନୀ-ମହାଦେବୀ-ବଲ୍ଲଭ-ଭାନୁଦେବ-ନୃପତି ରୂପୋଽର୍ଥୋନିୟନ୍ତ୍ରିତେ ବ୍ୟଞ୍ଜନୟୈବ ଗୌରୀବଲ୍ଲଭ ରୂପୋଽର୍ଥେ ବୋଧ୍ୟତେ ।"

'ସାହିତ୍ୟଦର୍ପଣ'ର ଏହି ଲେଖା ଉପରେ ହରପ୍ରସାଦ ଶାସ୍ତ୍ରୀଙ୍କ ମତ ନିମ୍ନରେ ଉଦ୍ଧୃତ ହେଲା ।

---

(୧୯) ଏହି ତମ୍ବପଟାଟିକୁ ୧୮୯୫ ମନମୋହନ ଚକ୍ରବର୍ତ୍ତୀ ଏସିଆଟିକ୍ ସୋସାଇଟି ପତ୍ରିକାରେ, ତ୍ରିମାଳୀମଠର ତମ୍ବପଟା ବୋଲି ଲେଖିଥିଲେ; କିନ୍ତୁ ପରେ ତମ୍ବପଟାଟି, କେନ୍ଦୁଳି ଗ୍ରାମରୁ ମିଳିଥିବାରୁ ଶ୍ରୀଯୁକ୍ତ ରାଜଗୁରୁ ତମ୍ବପଟାର ନାମ 'କେନ୍ଦୁଳି ତମ୍ବପଟା' ରଖି ଓଡ଼ିଶା ଐତିହାସିକ ଗବେଷଣାପତ୍ରିକାରେ ପ୍ରକାଶିତ କରିଅଛନ୍ତି ।

(୨୦) J.A.S.B. 1895

"ବିଶ୍ୱନାଥଙ୍କର ସମୟ ନିରୂପଣ କରିବା ଏକ କଷ୍ଟସାଧ୍ୟ ବ୍ୟାପାର । ତାଙ୍କର ପିତା ଚନ୍ଦ୍ରଶେଖର ଏକ ଶ୍ଳୋକରେ ଓଡ଼ିଶାର ଭାନୁଦେବଙ୍କୁ ପ୍ରଶଂସା କରି ତାଙ୍କର ରାଣୀଙ୍କ କଥା ଉଲ୍ଲେଖ କରିଅଛନ୍ତି (ଉମାନାମ୍ନୀ ମହାଦେବୀ ତଦ୍‌ବଲ୍ଲଭ ଭାନୁଦେବ୍ ନୃପତି-ବୃତ୍ତି ୨-୨୬) । ଓଡ଼ିଶାର ରାଜ୍ୟ, ନରସିଂହ ୪ର୍ଥଙ୍କ ପର୍ଯ୍ୟନ୍ତ (୧୩୮୫) ସବୁ ରାଜାଙ୍କର ରାଣୀମାନଙ୍କର ନାମ ପାଇଥାଉଁ; କିନ୍ତୁ ତହିଁରେ 'ଉମା' ନାମରେ କୌଣସି ରାଣୀଙ୍କର ନାମ ନାହିଁ । ଏଥିରୁ ଏହା ପ୍ରମାଣିତ ହୁଏନାହିଁ ଯେ, ସେପରି ନାମଧେୟ କୌଣସି ରାଣୀ ନଥିଲେ । ସେ ସମୟରେ ରାଜାମାନଙ୍କର ବହୁ ପତ୍ନୀ ରହୁଥିଲେ । କବି ଚନ୍ଦ୍ରଶେଖର ଏସିଆଟିକ୍ ସୋସାଇଟି (୧୮୯୫)ରେ ପ୍ରକାଶିତ ତମ୍ବାପଟାରେ ପରବର୍ତ୍ତୀ ରାଜାଙ୍କର ମାତାଙ୍କ ନାମ ବୋଧହୁଏ ଲେଖି ନଥିଲେ ।" (୨୧)

ହରପ୍ରସାଦ ଶାସ୍ତ୍ରୀଙ୍କର ଅନୁମାନ ବାସ୍ତବରେ ପରିଣତ ହୋଇଅଛି । କେତେବର୍ଷ ପୂର୍ବେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର-ବେଢ଼ାରେ ଥିବା 'ପାର୍ବତୀ ମନ୍ଦିର'ରେ ଭାନୁଦେବଙ୍କ ସମୟରେ ଉମାଦେବୀଙ୍କର ଏକ ଶିଳାଲିପି (୨୨) ଆବିଷ୍କୃତ ହୋଇଅଛି । ଶ୍ରୀଯୁକ୍ତ ରାଜଗୁରୁ ମଧ୍ୟ ଶକାବ୍ଦ ୧୩୦୧ = ଖ୍ରୀ: ୧୩୭୯ରେ ପ୍ରଦତ୍ତ ଉମାଦେବୀଙ୍କର ଆଉ ଏକ ଲିପି ସୀମାଚଳ ମନ୍ଦିରରେ ଥିବାର କଥା ଲେଖି (୨୩) ଅଛନ୍ତି । ଶିଳାଲିଖିତ ବିଶ୍ୱନାଥଙ୍କ ବ୍ୟାଖ୍ୟାରୁ ପ୍ରମାଣିତ ହୁଏ ଯେ 'ଉମାବଲ୍ଲଭ' ଶବ୍ଦର ଅନ୍ୟ ଅର୍ଥ ଗଙ୍ଗନୃପତି ଭାନୁଦେବ ୩ୟ (ଖ୍ରୀ: ୧୩୫୨-୭୮) ।

ବିଶ୍ୱନାଥଙ୍କର ପିତା ଚନ୍ଦ୍ରଶେଖର, ଭାନୁଦେବଙ୍କ ପରେ ଜୀବିତ ଥାଇ ନରସିଂହ ୪ର୍ଥଙ୍କର ସାନ୍ଧିବିଗ୍ରହିକ ଥିଲେ କି ନା ଜାଣିବାର ଉପାୟ ନାହିଁ । ଚନ୍ଦ୍ରଶେଖର ସାନ୍ଧିବିଗ୍ରହିକ ଥିବାର କଥା କେବଳ 'ସାହିତ୍ୟଦର୍ପଣ'ରୁ ପ୍ରମାଣ ମିଳେ, ତାଙ୍କ ସଂପର୍କରେ କୌଣସି ଲିପି ଆବିଷ୍କୃତ ହୋଇନାହିଁ । ଚନ୍ଦ୍ରଶେଖରଙ୍କ ପରେ କପିଞ୍ଜଳକୁଳରେ, କୃଷ୍ଣାନନ୍ଦ ସାନ୍ଧିବିଗ୍ରହିକ ଥିବାର ପ୍ରମାଣ, ଶଙ୍କରାନନ୍ଦ ମଠର ତମ୍ବାପଟାରୁ ମିଳେ । ସେ 'ସହୃଦୟାନନ୍ଦ' କାବ୍ୟର ରଚୟିତା ଥିଲେ । ସହୃଦୟାନନ୍ଦ କାବ୍ୟର ୨ୟ ଅଧ୍ୟାୟର ଗୋଟିଏ ଶ୍ଳୋକ, ସାମାନ୍ୟ ପରିବର୍ତ୍ତିତ ହୋଇ ଶଙ୍କରାନନ୍ଦ ମଠର ତମ୍ବାପଟାରେ ଉଦ୍ଧୃତ ଅଛି । ଏଣୁ ମନେହୁଏ ଯେ ନରସିଂହଦେବ ୪ର୍ଥଙ୍କ ପ୍ରଶସ୍ତି ରଚନାରେ କୃଷ୍ଣାନନ୍ଦଙ୍କର ହାତ ଥିଲା । ଏହି ଶ୍ଳୋକଟି କେହୁଲି ତମ୍ବାପଟା ପ୍ରବନ୍ଧରେ ୧୧୩ ସଂଖ୍ୟକ ଶ୍ଳୋକ ବୋଲି ଶ୍ରୀଯୁକ୍ତ ରାଜଗୁରୁ

୨୧) H.P.Sastri - Descriptive catalogue of Sanskrit Mss Vol. pp. ccc VII-VIII

୨୨) O.H.R.J.Vol. III no 2p.140

୨୩) Ebid Vol. VI, app Chandrakal Natika p. VI.

ଲେଖିଅଛନ୍ତି । ଏଥିରୁ ପ୍ରମାଣିତ ହେଉଅଛି ଯେ ଖ୍ରୀ: ୧୩୯୬ ପୂର୍ବରୁ 'ସହୃଦୟାନନ୍ଦ' କାବ୍ୟ ରଚିତ ହୋଇଥିଲା । 'ସାହିତଦର୍ପଣ'ର ୮ମ ପରିଚ୍ଛେଦ ୩ୟ ଶ୍ଳୋକରେ ସହୃଦୟାନନ୍ଦର 'ସୃଗୀ ମୁଖେନ' ଇତ୍ୟାଦି ଶ୍ଳୋକଟି ଉଦ୍ଧୃତ ଅଛି ଓ ଏହି ଶ୍ଳୋକଟି 'ସହୃଦୟାନନ୍ଦ' କାବ୍ୟର ୩ୟ ଅଧ୍ୟାୟର ୫୨ ସଂଖ୍ୟକ ଶ୍ଳୋକ ।

କୃଷ୍ଣାନନ୍ଦଙ୍କ ପୂର୍ବରୁ ବା ପରେ ଜୀବିତ କାଳରେ ବିଶ୍ୱନାଥ କେବେ ସାନ୍ଧିବିଗ୍ରହିକ ପଦରେ ନିଯୁକ୍ତ ହୋଇଥିଲେ, ତାହା ଜାଣିବାର ଉପାୟ ନାହିଁ; କିନ୍ତୁ 'ଚନ୍ଦ୍ରକଳା ନାଟିକା'ର ପ୍ରସ୍ତାବନାରେ ବିଶ୍ୱନାଥ ସାନ୍ଧିବିଗ୍ରହିକ ଥିବାର କଥା ଲିଖିତ ଅଛି । ବିଶ୍ୱନାଥଙ୍କର 'ନରସିଂହ ବିଜୟ' (ଷୋଡ଼ଶ ଭାଷାରେ ଲିଖିତ କରମ୍ଭକ) ନିଶ୍ଚୟ ନରସିଂହ ୪ର୍ଥଙ୍କ ରାଜତ୍ୱ କାଳରେ ଲିଖିତ ହୋଇଥିଲା, ଅର୍ଥାତ୍ ଖ୍ରୀ: ୧୪୧୪ ପୂର୍ବରୁ । 'ନରସିଂହ ବିଜୟ' ଗ୍ରନ୍ଥର ପାଣ୍ଡୁଲିପି ମିଳି ନଥିବାରୁ, ତହିଁରେ ବିଶ୍ୱନାଥଙ୍କର ସାନ୍ଧିବିଗ୍ରହିକ ପଦବୀ ଅଛି କି ନା ତାହା ଜାଣିବାର ଉପାୟ ନାହିଁ ।

'ଚନ୍ଦ୍ରକଳା ନାଟିକା'ର ପ୍ରସ୍ତାବନାରେ (୨୪) ଲିଖିତ ଅଛି ଯେ, ନାଟିକାଟି ତତ୍କାଳୀନ ରାଜଧାନୀ 'ବାରଣସୀ କଟକ' (ଆଧୁନିକ କଟକ)ରେ ଖ୍ରୀ: ୧୪୧୪-୧୫ରେ ଅଭିନୀତ ହୋଇଥିଲା । 'ଚନ୍ଦ୍ରକଳା ନାଟିକା'ର ବହୁ ଶ୍ଳୋକ 'ସାହିତ୍ୟଦର୍ପଣ'ରେ ଉଦ୍ଧୃତ ହୋଇଥିବାରୁ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ 'ସାହିତ୍ୟଦର୍ପଣ'ର ରଚନାକାଳ ଉପରେ ନିମ୍ନୋକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି : --

''ସାହିତ୍ୟଦର୍ପଣ''ରେ 'ଚନ୍ଦ୍ରକଳା ନାଟିକା'ର ଲେଖା ଥରକୁ ଥର ଉଦ୍ଧୃତ ହୋଇଥିବାରୁ, ଏହା ସ୍ପଷ୍ଟ ଅନୁମିତ ହେଉଅଛି ଯେ, ବିଶ୍ୱନାଥ କବିରାଜ ଭାନୁଦେବ ୪ର୍ଥଙ୍କ ରାଜତ୍ୱକାଳର ଶେଷଭାଗରେ ଅର୍ଥାତ୍ ଖ୍ରୀ: ୧୪୨୦-୩୦ ମଧ୍ୟରେ ଏ ଗ୍ରନ୍ଥ ରଚନା କରିଥିଲେ ।

ଶ୍ରୀଯୁକ୍ତ ରାଜଗୁରୁଙ୍କର ଏହି ମତକୁ ଆହୁରି ସଙ୍କୁଚିତ କରାଯାଇ ଦଶବର୍ଷରୁ କମ୍ ସମୟ ମଧ୍ୟରେ 'ସାହିତଦର୍ପଣ'ର ରଚନାକାଳ ନିରୂପିତ ହୋଇପାରିବ । କାରଣ 'ସାହିତ୍ୟଦର୍ପଣ' ଲେଖିବା ପରେ ବିଶ୍ୱନାଥ 'ପ୍ରାକୃତପ୍ରକାଶ ଦର୍ପଣ' ନାମକ ଆଉ ଗୋଟିଏ ଗ୍ରନ୍ଥ ମଧ୍ୟ ଲେଖିଥିଲେ । ଏଣୁ ମୋର ମନେହୁଏ ଯେ 'ସାହିତ୍ୟଦର୍ପଣ' ଖ୍ରୀ: ୧୪୧୫-୨୦ ମଧ୍ୟରେ ଲିଖିତ ହୋଇଥିଲା ଓ ଏଥିସହିତ 'ପ୍ରାକୃତପ୍ରକାଶଦର୍ପଣ' ମଧ୍ୟ ଲିଖିତ ହୋଇଥିଲା ।

(୨୪) O.H.R.J. Vol. VI, nos. 2 & 3 app. p.I

ଭାନୁଦେବ ୪ର୍ଥଙ୍କର ରାଜତ୍ୱର ଶେଷ ୧୨ ବର୍ଷ କାଳ ବହୁବିଧ ଗୋଳମାଳରେ ଅତୀତ ହୋଇଥିଲା । ପ୍ରଥମେ ଖ୍ରୀ: ୧୪୨୧-୨୨ରେ ମାଳବର ହୋସାଙ୍ଗସାହ ଛଦ୍ମବେଶରେ ଓଡ଼ିଶା ଆକ୍ରମଣ କରି ରାଜା ଭାନୁଦେବଙ୍କୁ ବନ୍ଦୀ କରିଥିଲେ ଓ ପରେ ତାଙ୍କଠାରୁ ହାତୀ ଉପହାର ପାଇ ରାଜ୍ୟର ଶେଷ ସୀମାରେ ମୁକ୍ତ କରି ମାଳବକୁ ପ୍ରତ୍ୟାବୃତ୍ତ ହୋଇଥିଲେ । ତତ୍ପରେ ଓଡ଼ିଶାରେ ରାଷ୍ଟ୍ରୀୟ ଅଭ୍ୟନ୍ତରୀଣ ଗୋଳମାଳ ପ୍ରବଳ ହୋଇ ଶେଷରେ ଖ୍ରୀ: ୧୪୩୫ ରାଜା ନିଃଶଙ୍କ ଭାନୁଦେବ ରାଜ୍ୟରୁ ବିତାଡ଼ିତ ହୋଇଥିଲେ ଓ ସୂର୍ଯ୍ୟବଂଶୀୟ ସେନାପତି କପିଳେଶ୍ୱର ଦେବ ଓଡ଼ିଶାର ସିଂହାସନ ଅଧିକାର କରିଥିଲେ । ଏହି ସମୟ ମଧ୍ୟରେ ବିଶ୍ୱନାଥ ଜୀବିତ ଥିଲେ କି ନା, ତାହା ମଧ୍ୟ କହି ହେବନାହିଁ । ଯଦି ଜୀବିତ ଥିଲେ, ତେବେ ତାଙ୍କ ସଦୃଶ ଉଚ୍ଚ କ୍ଷମତାପନ୍ନ ରାଜକର୍ମଗ୍ରରୀଙ୍କ ପକ୍ଷରେ ବିଦ୍ୟାଚର୍ଚ୍ଚା କରିବାର ପରିସ୍ଥିତି ଥିଲା ବୋଲି ମନେ କରିବା ବିଡ଼ମ୍ବନା ମାତ୍ର । ଏହି ସବୁ କାରଣରୁ 'ସାହିତ୍ୟଦର୍ପଣ'ର ରଚନାକାଳ ଖ୍ରୀ: ୧୪୨୦ ପୂର୍ବରୁ ସମ୍ଭବପର ବୋଲି ମନେହୁଏ ।

'ଚନ୍ଦ୍ରକଳାନାଟିକା'ରେ ନିଃଶଙ୍କଭାନୁଙ୍କର ନାମ ମିଳିବା ପୂର୍ବରୁ ଓ ଦକ୍ଷିଣଭାରତୀୟ ଲିପିମାଳାରେ ନିଃଶଙ୍କଭାନୁଙ୍କର ନାମ ମିଳିବା ପୂର୍ବରୁ ଓ କୃଷ୍ଣାନନ୍ଦଙ୍କର ସହୃଦୟାନନ୍ଦ କାବ୍ୟର ରଚନାକାଳ ନିରୂପିତ ହେବାପୂର୍ବରୁ, ଜାମ୍ମୁରୁ ପ୍ରାପ୍ତ 'ସାହିତ୍ୟଦର୍ପଣ'ର ହସ୍ତଲିଖିତ ଗ୍ରନ୍ଥରେ ଷ୍ଟିନ (Stin) ସାହେବଙ୍କ ସମ୍ବତ୍ ୧୪୪୦ ପାଠ ସାହିତ୍ୟଦର୍ପଣର ସମୟ ଉପରେ ଆଲୋଚନା କରିବା ପାଇଁ ଅତିଶୟ ପ୍ରତିବନ୍ଧକ ହୋଇଥିଲା, ଯାହାର ଗଣନାନୁସାରେ ଜାମ୍ମୁରୁ ପ୍ରାପ୍ତ 'ସାହିତ୍ୟଦର୍ପଣ'ର ପାଣ୍ଡୁଲିପିର ସଂବତ୍ ୧୪୪୦ = ଖ୍ରୀ: ୧୩୮୪ ବୋଲି ସର୍ବତ୍ର ଗୃହୀତ ହୋଇଥିଲା । ଜାମ୍ମୁରୁ ପ୍ରାପ୍ତ ହସ୍ତଲିଖିତ ଗ୍ରନ୍ଥାଦିର ଉପକ୍ରମଣିକାରେ ଷ୍ଟିନ୍ ସାହେବ ଯାହା ଇଂରାଜୀରେ ଲେଖିଥିଲେ, ତାହାର ଅନୁବାଦ ତଳେ ପ୍ରଦତ୍ତ ହେଲା ।

''ଷଷ୍ଠ ସ୍ତମ୍ଭରେ ପାଣ୍ଡୁଲିପି ଲିଖିତ ହେବାର କାଳ ପ୍ରଦର୍ଶିତ ହୋଇଛି, ଯେଉଁଠାରେ କି ପାଣ୍ଡୁଲିପିର ଲିଖନକାଳ ଲିଖିତ ଅଛି । ଏହି ଅଙ୍କଗୁଡ଼ିକୁ ସର୍ବତ୍ର ବିକ୍ରମସଂବତ୍ ଧରିବାକୁ ହେବ । ପାଣ୍ଡୁଲିପିରେ ଯେଉଁଠାରେ ଅନ୍ୟ ଶବ୍ଦ ବ୍ୟବହୃତ ହୋଇଛି, ତହିଁରେ ସ୍ପଷ୍ଟଭାବରେ ତାହାର ଉଲ୍ଲେଖ ଅଛି ।''

ଏହି ପାଣ୍ଡୁଲିପିରେ ଶକାବ୍ଦ ବା ସଂବତ୍ କ'ଣ ଲିଖିତ ଅଛି, ତାହା ଜାଣିବା ବିଶେଷ ଦରକାର । ମୁଁ ଚିଠିପତ୍ର ଲେଖିଥିଲି, ମାତ୍ର କାହାରିଠାରୁ ଜାମ୍ମୁ ବା କାଶ୍ମୀରରୁ ଉତ୍ତର ପାଇଲି ନାହିଁ ।

(୨୫) Ibid Introduction p. x.

ମହାମହୋପାଧ୍ୟାୟ କାନେ ଓ ଡକ୍ଟର ସୁଶୀଲ କୁମାର ଦେ ଉଭୟେ ଷ୍ଟିନଙ୍କ ମତ ଉଲ୍ଲେଖ କରିଅଛନ୍ତି । ଡକ୍ଟର ଦେଙ୍କ ମତ ତଳେ ଉଦ୍ଧୃତ ହେଲା ।

"ଅନ୍ୟ ଗୋଟିଏ ଅତ୍ୟାଧିକ ସୁନିର୍ଦ୍ଦିଷ୍ଟ ସମୟ ଷ୍ଟିନ୍ ସାହେବଙ୍କ ଦ୍ୱାରା ଜାମ୍ମୁରେ ଆବିଷ୍କୃତ "ସାହିତ୍ୟଦର୍ପଣ"ର ହସ୍ତଲିଖିତ ଗ୍ରନ୍ଥ, ଯାହାକି ସଂବତ୍ ୧୪୪୦= ଖ୍ରୀ: ୧୩୮୪ରେ ଲିଖିତ ହୋଇଥିଲା । ଏହା ନିଶ୍ଚିତଭାବରେ ଓ୍ୱେବର, ବୁଗଲିଂ ଓ ହରିଚନ୍ଦ୍ର ଶାସ୍ତ୍ରୀଙ୍କ ଦ୍ୱାରା ସ୍ଥିରୀକୃତ (ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗ) ସମୟକୁ ଦୃଢ଼ଭାବରେ ଖଣ୍ଡିତ କରେ । ଶେଷୋକ୍ତ ବ୍ୟକ୍ତି ମଧ୍ୟ ବଙ୍ଗୀୟ କବିଙ୍କ ସହିତ * ଚଣ୍ଡୀଦାସଙ୍କୁ ଅଭିନ୍ନ ବିଗ୍ରହକରି ଏକ ଅଶୋଭନୀୟ ଭୁଲ୍ କରିଅଛନ୍ତି । ଏଠାରେ ଏହା ଉଲ୍ଲେଖ କରାଯାଇପାରେ ଯେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଆରମ୍ଭରେ କୁମାର ସ୍ୱାମୀ ସାହିତ୍ୟଦର୍ପଣ ନାମ ଓ ତହିଁରୁ ଲେଖା ଉଦ୍ଧାର କରିଅଛନ୍ତି ।" (୨୬)

ସହୃଦୟାନନ୍ଦ କାବ୍ୟ ରଚୟିତା କୃଷ୍ଣାନନ୍ଦଙ୍କର ଲିପିତତ୍ତ୍ୱମୂଳକ ଖ୍ରୀ: ୧୩୯୬ର ପ୍ରମାଣ ସମ୍ମୁଖରେ ଷ୍ଟିନସାହେବଙ୍କ ପାଠ କଦାପି ଠିକ୍ ବୋଲି ଗୃହୀତ ହୋଇନପାରେ । ଓଡ଼ିଶାର ତତ୍‌କାଳୀନ ଲିପିସମୂହରେ ଶକାବ୍ଦର ବହୁଳ ବ୍ୟବହାର ଦେଖାଯାଏ ଏବଂ ଏଥିରୁ ଅନୁମିତ ହୁଏ ଯେ ଜାମ୍ମୁର ପାଣ୍ଡୁଲିପି ଯେଉଁ ସାହିତ୍ୟଦର୍ପଣର ପାଣ୍ଡୁଲିପିରୁ ନକଲ କରାଯାଇଥିଲା, ତହିଁରେ ଶକାବ୍ଦ ବ୍ୟବହୃତ ହୋଇଥିଲା । ଏଣୁ ଷ୍ଟିନ ସାହେବଙ୍କ ଅନୁମାନ ନିଶ୍ଚୟ ଭ୍ରମାତ୍ମକ ବୋଲି ମନେହୁଏ ।

ଜଗନମୋହନ ଶର୍ମା ବା ଓ୍ୱେବର ସାହେବଙ୍କର ଲେଖା ଦେଖିବାର ସୁଯୋଗ ମୋର ଘଟିନାହିଁ । ସେମାନେ କେଉଁ ପ୍ରଣାଳୀ ବଳରେ ସାହିତ୍ୟଦର୍ପଣର ସମୟ ଖ୍ରୀଷ୍ଟୀୟ ୧୫ଶତାବ୍ଦୀର ମଧ୍ୟଭାଗ ବୋଲି ସ୍ଥିର କରିଥିଲେ, ତାହା ଜାଣିବାରୁ ବଞ୍ଚିତ ହୋଇଛି । ସେ ଯାହାହେଉ, ବର୍ତ୍ତମାନ ପ୍ରମାଣିତ ହେଉଛି ଯେ ସାହିତ୍ୟଦର୍ପଣର ସମୟ ଖ୍ରୀଷ୍ଟୀୟ ୧୫ଶ ଶତକର ପ୍ରଥମ ପାଦ । ଏଣୁ ଜଗମୋହନ ଶର୍ମା ଓ ଓ୍ୱେବରଙ୍କ ବୈଜ୍ଞାନିକ ଆଲୋଚନାର ମୂଳରେ ସତ୍ୟ ନିହିତ ଥିଲାପରି ପ୍ରତୀୟମାନ ହୁଏ ।



କୋଣାର୍କ, ତୃତୀୟ ବର୍ଷ, ୧ମ ଓ ୨ୟ ସଂଖ୍ୟା

---

* ହରପ୍ରସାଦ ଶାସ୍ତ୍ରୀ ମଧ୍ୟ ଅନୁମାନ କରିଥିଲେ ଯେ ଚଣ୍ଡୀଦାସ ବଙ୍ଗୀୟ ବ୍ରାହ୍ମଣକୁଳୋଦ୍‌ଭବ ଥିଲେ, କାରଣ ସେ ବଙ୍ଗୀୟ ମୁଖକୁଳ ବା ମୁଖାର୍ଜୀ ବ୍ରହ୍ମଣ ସଂପ୍ରଦାୟଭୁକ୍ତ ଥିଲେ । (Vide Descriptive catalogue of Sanskrit Mss. Vol.IV preface p. CCLXVI)

(୨୬) Dr. S.K.De - History of Sanskrit Poetics, Vol.I. 1960, p. 213.

# ଓଡ଼ିଶାରେ ଶାକ୍ତ-ପରମ୍ପରା: ଭାସ୍କର୍ଯ୍ୟ ଓ ସ୍ଥାପତ୍ୟରେ

ଶାକ୍ତ ଉପାସନାର ମୂଳ ଯଜୁର୍ବେଦୀୟ କଣ୍ୱସଂହିତାର ଏକ ମନ୍ତ୍ରରୁ ମିଳେ -- ଆଜିକାଲି ମଧ୍ୟ ବୈଦିକ ପଞ୍ଚଦେବତା -- ଗଣେଶ, ଭାସ୍କର, ବିଷ୍ଣୁ, ଶିବ ଓ ଦୁର୍ଗାପୂଜାର ମନ୍ତ୍ରରେ ବୈଦିକ ମନ୍ତ୍ର "ଅମ୍ବେ ଅମ୍ବିକେ ଅମ୍ବାଳିକେ ଇତ୍ୟାଦି" ମନ୍ତ୍ର ପଠିତ ହୁଏ । ଓଡ଼ିଶାରେ ବହୁକାଳ ବୈଦିକ ପୂଜା ଚଳି ଆସିଥିବାରୁ ମନେହୁଏ ଯେ ଶକ୍ତି ପୂଜା ଓଡ଼ିଶାର ଏକ ପ୍ରାଚୀନ ଅନୁଷ୍ଠାନ । କେବଳ ସେତିକି ନୁହେଁ, ଓଡ଼ିଶାରେ ପୂର୍ବୋକ୍ତ ପଞ୍ଚଦେବ ତାଙ୍କର ପଞ୍ଚକ୍ଷେତ୍ର ମଧ୍ୟ ଭାରତ ବିଦିତ -- ପଞ୍ଚକ୍ଷେତ୍ର ମଧ୍ୟରୁ ପ୍ରଥମ ଦୁର୍ଗାକ୍ଷେତ୍ର ବିରଜା କ୍ଷେତ୍ର, ଦ୍ୱିତୀୟ ବିଷ୍ଣୁକ୍ଷେତ୍ର ପୁରୀ, ତୃତୀୟ ସୂର୍ଯ୍ୟକ୍ଷେତ୍ର କୋଣାର୍କ, ଚତୁର୍ଥ ଶିବ କ୍ଷେତ୍ର ଭୁବନେଶ୍ୱର ଓ ପଞ୍ଚମ ଗଣେଶ କ୍ଷେତ୍ର ମହାବିନାୟକ । ବୈତରଣୀ କୂଳବର୍ତ୍ତୀ ବିରଜା କ୍ଷେତ୍ରର ନାମ ମହାଭାରତରେ ଉଲ୍ଲେଖ ଥିବାର ଦେଖାଯାଏ ।

ବିରଜାଦେବୀଙ୍କର ଧ୍ୟାନରୁ ଜଣାଯାଏ ଯେ ଏହି ମୂର୍ତ୍ତିଟି ଦ୍ୱିଭୂଜା ଦୁର୍ଗା ମୂର୍ତ୍ତି । ଦ୍ୱିଭୂଜା ଦୁର୍ଗା ମୂର୍ତ୍ତି ସାଧାରଣତଃ ଦେଖିବାକୁ ମିଳେନାହିଁ । ଏଣୁ ଧ୍ୟାନର ଦ୍ୱିଭୂଜା ଦୁର୍ଗା ମୂର୍ତ୍ତିର ପରିକଳ୍ପନା ଯେ ଅତି ପ୍ରାଚୀନ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ପ୍ରାଚୀନ ବିରଜା ମନ୍ଦିର ଓ ମୂର୍ତ୍ତିର ଅସ୍ତିତ୍ୱ ଯାଜପୁରରେ ନାହିଁ । ଆଧୁନିକ ମନ୍ଦିରରେ ଏକ ଦୁର୍ଗା ମୂର୍ତ୍ତି ବିରଜା ଦେବୀ ନାମରେ ପୂଜିତ ହୁଅନ୍ତି ।

ଯାଜପୁରରେ ଅଧିକାଂଶ ପ୍ରାଚୀନ କୀର୍ତ୍ତି ପରବର୍ତ୍ତୀ କାଳରେ ବିଧ୍ୱସ୍ତ ହୋଇଥିଲେ ମଧ୍ୟ ଯେ କେତୋଟି ପ୍ରାଚୀନ କୀର୍ତ୍ତି ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଭୂଗର୍ଭରୁ ଉଦ୍ଧାର କରାଯାଇଛି, ସେଗୁଡ଼ିକ ହେଉଛି ଓଡ଼ିଶାର ପ୍ରାଚୀନ ଭାସ୍କର୍ଯ୍ୟର ନିଦର୍ଶନ ମାତୃକା ମୂର୍ତ୍ତି । ଯାଜପୁରର ସବ୍‌ଡିଭିଜନ୍ ଅଫିସରଙ୍କ ହତାରେ ଅତିକାୟ ଦୁଇଟି ମାତୃକା ମୂର୍ତ୍ତି - ବାରାହୀ ଓ ଇନ୍ଦ୍ରାଣୀ ସ୍ଥାପିତ ଅଛି ଓ ବୈତରଣୀ କୂଳବର୍ତ୍ତୀ ଦଶାଶ୍ୱମେଧ ଘାଟରେ ସପ୍ତମାତୃକା ମୂର୍ତ୍ତି ଗୋଟିଏ ଆଧୁନିକ ଘରେ ସ୍ଥାପିତ ହୋଇ ପୂଜା ପାଉଅଛନ୍ତି ।

ଯାଜପୁରରେ ପ୍ରାଚୀନ ଦୁର୍ଗାମୂର୍ତ୍ତି ଆବିଷ୍କୃତ ହୋଇ ନଥିଲେ ମଧ୍ୟ ମନ୍ଦିରର ପାର୍ଶ୍ୱଦେବତା ହିସାବରେ ଭୁବନେଶ୍ୱରର ବୈତାଳ ମନ୍ଦିରର ଉତ୍ତର ପାର୍ଶ୍ୱରେ ଏକ ପ୍ରାଚୀନ

ମହିଷାସୁର ମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି ସ୍ଥାପିତ ଅଛି । ଏହି ମୂର୍ତ୍ତି ଓ ମନ୍ଦିରର ଗଠନକାଳ ଖ୍ରୀଷ୍ଟୀୟ ୭ମ ଓ ୮ମ ଶତାବ୍ଦୀ ବୋଲି ସ୍ଥିରୀକୃତ ହୋଇଅଛି । ଏଣୁ ଯାଜପୁରରେ ଯେ ପ୍ରାଚୀନ ଦୁର୍ଗା ମୂର୍ତ୍ତି ଥିଲା, ଏଥିରେ କିଛି ସନ୍ଦେହ ନାହିଁ । ପରବର୍ତ୍ତୀକାଳରେ ନିର୍ମିତ ଦୁର୍ଗାମୂର୍ତ୍ତି ପାର୍ଶ୍ୱଦେବତା ହିସାବରେ ଓ ପୂଜିତା ଦେବୀ ହିସାବରେ ଓଡ଼ିଶାରେ ନାନାସ୍ଥାନରେ ମିଳେ । ଓଡ଼ିଶାର ପ୍ରାଚୀନ କୀର୍ତ୍ତି ଅନୁସନ୍ଧାନ ସମୟରେ କଟକ ଜିଲ୍ଲାର ମାହାଙ୍ଗା ନିକଟବର୍ତ୍ତୀ ନୂଆଗାଁରେ ଯେଉଁ ମହିଷାସୁର ମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି ଦେଖିଥିଲି, ସେପରି ଅତିକାୟ ଦୁର୍ଗାମୂର୍ତ୍ତି ଓଡ଼ିଶାର ଅନ୍ୟତ୍ର ଦେଖିନାହିଁ । ଆଉ ଗୋଟିଏ ବଡ଼ ମହିଷାସୁରମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି ମହାନଦୀରୁ ବାହାରିଥିବା ପ୍ରାଚୀନଦୀ କୂଳର ଏକ ଗ୍ରାମରେ ପାଇଥିଲି । ଏହି ଦୁଇଟି ମୂର୍ତ୍ତିଯାକର ଗଠନକାଳ ପ୍ରାୟ ସମସାମୟିକ ଖ୍ରୀଷ୍ଟୀୟ ୯ମ ଶତାବ୍ଦୀ ।

ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଚଣ୍ଡୀ ପୁରାଣରେ ଦୁର୍ଗାଙ୍କର ବିଷୟ ବିଶଦ ଭାବରେ ବର୍ଣ୍ଣିତ ଅଛି । ଚଣ୍ଡୀରେ ବର୍ଣ୍ଣିତ ଅଛି ଯେ, ଦେବତାମାନଙ୍କର ଶକ୍ତି --

୧. ବୈଷ୍ଣବୀ, ୨. ବାରାହୀ, ୩. ବ୍ରାହ୍ମୀ, ୪. କୌମାରୀ, ୫. ମାହେଶ୍ୱରୀ, ୬. ନାରସିଂହୀ, ୭. ଗ୍ରମୁଣ୍ଡା । ଦେବୀଙ୍କୁ ସାହାଯ୍ୟ କରିବା ପାଇଁ ଦେବତାମାନେ ନାରୀ ରୂପରେ ଯୁଦ୍ଧରେ ଯୋଗଦାନ କରିଥିଲେ । ଏହି ଦେବତାମାନଙ୍କର ଶକ୍ତିସବୁ ମାତୃକା ନାମରେ କଥିତ ହେବାର କଥା ଚଣ୍ଡୀରେ ଲିଖିତ ନଥିଲେ ମଧ୍ୟ ମତ୍ସ୍ୟ ପୁରାଣରେ (ଖୁବ୍ ସମ୍ଭବତଃ) ବର୍ଣ୍ଣିତ ଅଛି ଯେ, ଏହି ଶକ୍ତି ମୂର୍ତ୍ତିଗୁଡ଼ିକ ବାମ କୋଳରେ ମାନବ ଶିଶୁସନ୍ତାନ ସବୁ ଧାରଣ କରିଥିଲେ । ଦେବୀ ମୂର୍ତ୍ତିଗୁଡ଼ିକରେ ଶିଶୁସନ୍ତାନମାନଙ୍କର ସମାବେଶରେ ମୂର୍ତ୍ତିଗୁଡ଼ିକ ମାତୃକା ମୂର୍ତ୍ତି ନାମରେ ଅଭିହିତ ହୋଇଥିଲେ ।

ଯାଜପୁରରେ ମିଳିଥିବା ସବୁ ମାତୃକାମୂର୍ତ୍ତିର ମାନବାକୃତି ଶିଶୁସନ୍ତାନ କୋଳରେ ଖୋଦିତ ଅଛି । ସବଡିଭିଜନ୍ ଅଫିସରଙ୍କ ହତାରେ ଥିବା ବାରାହୀ ମୂର୍ତ୍ତିଟିର ମୁଖ ବରାହ ସଦୃଶ ଓ ଯେପରି ତା'ର ସମସ୍ତ ଅଙ୍ଗ ନାରୀସଦୃଶ । ଏହି ମୂର୍ତ୍ତିଟିର ଦୃଷ୍ଟିଭଙ୍ଗୀ ଏପରି ଭାବରେ ଖୋଦିତ ଅଛି ଯେ, ପଶୁମୁଖାକୃତି ମୂର୍ତ୍ତିର ନୟନରେ ବାତ୍ସଲ୍ୟଭାବ ସୁନ୍ଦର ଭାବରେ ଫୁଟିଉଠିଛି । ତେଣୁ ଭାସ୍କର କଳାକୁଶଳତାରେ କେତେଦୂର ପ୍ରବୀଣ ଥିଲା, ତାହା ଏହି ମୂର୍ତ୍ତି ଦେଖିବାମାତ୍ରେ ଜଣାଯାଏ । ଅନ୍ୟାନ୍ୟ ମାତୃକା ମୂର୍ତ୍ତିରେ ମଧ୍ୟ ଶିଶୁସନ୍ତାନ ଅଛି । ପୁରାଣ ସାହିତ୍ୟରେ ଯେଉଁ ବର୍ଣ୍ଣନା ପୌରାଣିକ କବି କରିଥିଲେ, ଓଡ଼ିଶାର ଭାସ୍କର ତାହା ମାତୃକା ମୂର୍ତ୍ତିର ଭାସ୍କର୍ଯ୍ୟରେ ବିପୁଳ ଭାବରେ ଫୁଟାଇ ନିଜର ଦକ୍ଷତା ଅର୍ଜନ କରିଛି ।

ଯାଜପୁର ବ୍ୟତୀତ ଧର୍ମଶାଳାରେ ମଧ୍ୟ ଗୋଟିଏ ପ୍ରାଚୀନ ମାତୃକା ମୂର୍ତ୍ତିର ମନ୍ଦିର ଥିଲା । ସେ ମନ୍ଦିରର ଚିହ୍ନବର୍ଣ୍ଣ ଅଦ୍ୟାପି ମିଳେନାହିଁ । ମାତ୍ର ମାତୃକା ମୂର୍ତ୍ତିଗୁଡ଼ିକ ନଷ୍ଟ ନ ହୋଇ ଅକ୍ଷୁଣ୍ଣ ଅଛି । ଏହି ମୂର୍ତ୍ତିଗୁଡ଼ିକ ମଧ୍ୟରୁ ୩ଟି ମୂର୍ତ୍ତି ସଂଗୃହୀତ ହୋଇ ଓଡ଼ିଶାର ମିଉଜିୟମ୍‌ରେ ସୁରକ୍ଷିତ ଅଛି । ଆଉସବୁ ମୂର୍ତ୍ତି ସେ ସ୍ଥାନରେ ଅଛି । ତାହା ସଂଗ୍ରହ କରିବାର ଉପାୟ ନଥିଲା । ଧର୍ମଶାଳା ସଦୃଶ ପୁରୀର ମାର୍କଣ୍ଡେଶ୍ୱର ପୋଖରୀର ଦକ୍ଷିଣ-ପୂର୍ବ କୋଣରେ ସପ୍ତମାତୃକା ମୂର୍ତ୍ତିଗୁଡ଼ିକର ସମସ୍ତ ମୂର୍ତ୍ତି ଲେଖକ ୧୯୨୭ରେ ଆବିଷ୍କାର କରିଥିଲା । ଏହି ମୂର୍ତ୍ତିଗୁଡ଼ିକର କଥା ମୋର ଗୁରୁଦେବ ସ୍ୱର୍ଗୀୟ ରମାପ୍ରସାଦ ଚନ୍ଦ ମହାଶୟ ତାଙ୍କର (Exploration in Orissa) ପୁସ୍ତକରେ ଲେଖିଅଛନ୍ତି । ଏଠାରେ ସପ୍ତମାତୃକା ମୂର୍ତ୍ତି ସର୍ବତ୍ର ଏକ ଦିଗରେ ବୀରେଶ୍ୱର ଶିବ ଓ ଅନ୍ୟ ଦିଗରେ ଗଣେଶ ମୂର୍ତ୍ତି ସ୍ଥାପିତ ଅଛି । ଏହିସବୁ ମୂର୍ତ୍ତିଗୁଡ଼ିକର ମୁଖମଣ୍ଡଳର ଭଙ୍ଗୀ ଅତି ସୁନ୍ଦର -- ମାତୃସ୍ନେହରେ ପରିପୂରିତ ।

ଭୁବନେଶ୍ୱରର ବୈତାଳ ଦେଉଳରେ ମଧ୍ୟ ସପ୍ତମାତୃକା ମୂର୍ତ୍ତି ସ୍ଥାପିତ ଅଛି । ଏହି ମୂର୍ତ୍ତିଗୁଡ଼ିକର ସମୟ ପୂର୍ବେ ବର୍ଣ୍ଣିତ ଅଛି ।

ଓଡ଼ିଶାରେ ଶାକ୍ତ ପରମ୍ପରାର ଆଉ ଏକ ଅଭିନବ କ୍ଷେତ୍ର ହେଉଛି ଭୁବନେଶ୍ୱରର ଠିକ୍ ପୂର୍ବ ଦିଗରେ ଅବସ୍ଥିତ ହିରିପୁର ଗ୍ରାମର ଚୌଷଠୀ ଯୋଗିନୀ ଦେବୀମନ୍ଦିର । ଏଠାରେ ଏକ ଉନ୍ମୁକ୍ତ ଗୋଲାକାର ମନ୍ଦିରର ଭିତର କାନ୍ଥରେ ୬୪ଟି ଦେବୀ ମୂର୍ତ୍ତି ସ୍ଥାପିତ ଅଛି ଓ ମନ୍ଦିରର ବାହାର କାନ୍ଥରେ ନବକାତ୍ୟାୟନୀ ନାମରେ ୯ଟି ମୂର୍ତ୍ତି ଅଛି । ଦୁର୍ଗାପୂଜାର ମନ୍ତ୍ରରେ ୬୪ ଯୋଗିନୀଙ୍କର କଥା ଉଲ୍ଲେଖ ଅଛି, ମାତ୍ର ବହୁ ଚେଷ୍ଟାକରି ୬୪ ଯୋଗିନୀମାନଙ୍କର ନାମ କୌଣସି ମୁଦ୍ରିତ ଗ୍ରନ୍ଥ ବା ପୋଥିରୁ ପାଇପାରିନଥିଲି । ହିରିପୁରର ମୂର୍ତ୍ତିଗୁଡ଼ିକର ସମୟ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ପୂର୍ବବର୍ତ୍ତୀ ।

ହିରିପୁର ବ୍ୟତୀତ ବଲାଙ୍ଗିର ଜିଲ୍ଲାର ରାଣୀପୁର ଝରିଖୋଲଠାରେ ଅନ୍ୟ ଏକ ଚୌଷଠୀ ଯୋଗିନୀ ମନ୍ଦିର ଅଛି । କିନ୍ତୁ ଏହି ମନ୍ଦିରର ଗଠନକାଳ ହିରିପୁରର ଗଠନ କାଳର ପରବର୍ତ୍ତୀ ।

ମଧ୍ୟଭାରତରେ ଜବଲପୁର ନିକଟବର୍ତ୍ତୀ ଭେଡ଼ାଘାଟ ଓ ଅନ୍ୟ ଏକ ସ୍ଥାନର ମଧ୍ୟ ଚୌଷଠୀ ମନ୍ଦିରର ମୂର୍ତ୍ତି ଅଛି ।

ବହୁବର୍ଷ ପୂର୍ବେ ଓଡ଼ିଶାର ମାତୃକା ମୂର୍ତ୍ତି ଉପରେ 'ଉତ୍କଳ ସାହିତ୍ୟ'ରେ ଏକ ପ୍ରବନ୍ଧ ଲେଖିଥିଲି । ସେଥିରେ ବହୁ ଗ୍ରନ୍ଥର କଥା ଓ ମୂର୍ତ୍ତିର କଥା ଲେଖିଥିଲି । ସେ ପ୍ରବନ୍ଧର ନକଲ ମୋ ପାଖରେ ବର୍ତ୍ତମାନ ନାହିଁ । ସେତେବେଳକୁ ହରିପୁରର ଚୌଷଠୀ ଯୋଗିନୀର ମନ୍ଦିର ଓ ଧର୍ମଶାଳର ମାତୃକା ମୂର୍ତ୍ତିଗୁଡ଼ିକ ଆବିଷ୍କୃତ ହୋଇ ନଥିଲା ।

ଦୁର୍ଗାଙ୍କର ସ୍ତୁତିମୂଳକ 'ଅମ୍ବେ ଅମ୍ବିକେ ଅମ୍ବାଲିକେ ଇତ୍ୟାଦି' ବୈଦିକ ମନ୍ତ୍ର ସଦୃଶ ଯଜୁର୍ବେଦରେ 'ଗ୍ରାମଦେବତା'ଙ୍କ ଉପରେ ଆଉ ଗୋଟିଏ ମନ୍ତ୍ର ଅଛି । ତାହାର ପାଠ ତଳେ ଉଦ୍ଧୃତ ହେଲା --

''ଯଦ୍‌ଗ୍ରାମେ ଯଦରଣ୍ୟେ ଯାସ୍ମଭାୟଂ ଯଦିନ୍ଦ୍ରିୟେ'' ଇତ୍ୟାଦି ଏହି ମନ୍ତ୍ରଟି ଗ୍ରାମଦେବତାଙ୍କ ଉଦ୍ଦେଶ୍ୟରେ ଏବେ ମଧ୍ୟ ପୁରୋହିତମାନଙ୍କ ଦ୍ୱାରା ପଠିତ ହୁଏ । ଏଥିରୁ ସୂଚିତ ହୁଏ ଯେ ଗ୍ରାମଦେବତା ଭାରତରେ ଏକ ଅତି ପ୍ରାଚୀନ ଅନୁଷ୍ଠାନ, ଯାହାକି ଆଜି ପର୍ଯ୍ୟନ୍ତ ଲୋକମାନେ ପୂଜା କରି ଆସୁଅଛନ୍ତି ।

ବୈଦିକ ଏହି ମନ୍ତ୍ରର ପ୍ରଭାବ ପରବର୍ତ୍ତୀ କାଳରେ ପୁରାଣରେ ମଧ୍ୟ ପଡ଼ିଥିଲା । ଭାଗବତ ପୁରାଣର ୧୦ମ ସ୍କନ୍ଧ, ପୂର୍ବାର୍ଦ୍ଧର ୨ୟ ଅଧ୍ୟାୟ ୧୦-୧୨ ଶ୍ଳୋକରେ ଲିଖିତ ଅଛି --

ଅର୍ଚ୍ଚିଷ୍ୟନ୍ତି ମନୁଷ୍ୟାସ୍ତ୍ୱଂ ସର୍ବକାମ ବରେଶ୍ୱରୀମ୍ ।
ଧୂପୋପହାର ବଳିଭିଃ ସର୍ବକାମ ବର ପ୍ରଦାମ । ୧୦
ନାମଧେୟାନି କୁର୍ବନ୍ତି ସ୍ଥାନାନିଗମନାଭୁବି ।
ଦୁର୍ଗେତି ଭଦ୍ରକାଳୀତି ବିଜୟା ବୈଷ୍ଣବୀତିଚ ।। ୧୧
କୁମୁଦା ଚଣ୍ଡିକା କୃଷ୍ଣା ମାଧବୀ କନ୍ୟକେତିଚ ।
ମାୟା ନାରୟଣୀଶାନୀ ଶାରଦେ ଅମ୍ବିକେତିନ ।

ଶ୍ରୀକୃଷ୍ଣ ଓ ଦୁର୍ଗାଙ୍କର ଜନ୍ମ ପୂର୍ବରୁ ଶ୍ରୀକୃଷ୍ଣ ଓ ଦୁର୍ଗାଙ୍କ ମଧ୍ୟରେ ଯେଉଁ କଥୋପକଥନ ହୋଇଥିଲା ଓ ଯୋଗମାୟା ଦୁର୍ଗାଙ୍କ କଂସ ହତ୍ୟା କରିବା ପାଇଁ ଶ୍ରୀକୃଷ୍ଣ ଯୋଗମାୟା ଦୁର୍ଗାଙ୍କୁ ଯେଉଁ ପୁରସ୍କାର ଯାଚିଥିଲେ, ତାହା ପୂର୍ବୋକ୍ତ ଶ୍ଳୋକରେ ବର୍ଣ୍ଣିତ ଅଛି । ଓଡ଼ିଆ ଭାଗବତକାର ଜଗନ୍ନାଥ ଦାଶ ଏହି ଶ୍ଳୋକଗୁଡ଼ିକର ଓଡ଼ିଆ ଅନୁବାଦ ତଳଲିଖିତ ରୂପେ ଦେଇଅଛନ୍ତି; (ଭାଗବତ ଦଶମସ୍କନ୍ଧ, ୩ୟ ଅଧ୍ୟାୟ ୪୭-୫୬)

ଲୋକେ ହୋଇବୁ ତୁହି ଜାତ । ଜଗତେ ହୋଇବୁ ବିଖ୍ୟାତ ।।
ଲୋକେ କରିବେ ତୋତେ ପୂଜା । ଅନେକେ ଦେବେ ବଳି ଭୋଜା ।।
ଭକ୍ତକୁ ହୋଇବୁ ପ୍ରସନ୍ନ, । ଅନେକେ ନେବେ ତୋର ନାମ ।।
ଜୟା ବିଜୟା ଉଗ୍ରକାଳୀ, । ମଙ୍ଗଳା ଚଣ୍ଡିକା କଙ୍କାଳୀ ।।
ଦୁର୍ଗା, ଅମ୍ବିକା, ନାରାୟଣୀ । ଏକୁ ଆରକେ ନାମ ଭଣି ।।
ଗ୍ରାମ ଗ୍ରାମକେ କରି ସ୍ଥାନ । ପୂଜନ୍ତେ ହୋଇବୁ ପ୍ରସନ୍ନ ।।
ଅନ୍ତତା କରିବ କେ କେତେ । ଅନେକ ନାମ ତୋ ଜଗତେ ।।
ପୂଜା କରିବେ ସର୍ବ ଜନ । ସ୍ତୁତି ପଠନ ମନ୍ତ୍ର ଧ୍ୟାନ ।।
ଶୁଣ ବଚନ ଆଦିମାତା । ଫେଡ଼ ଦେବକୀ ଦୁରବସ୍ଥା ।।

ଭାଗବତର ଦ୍ୱାରିକା ଲୀଳାରେ ମଧ୍ୟ ରୁକ୍ମିଣୀ ବିବାହ ସମ୍ପର୍କରେ ଗ୍ରାମ ଦେବତାର ବର୍ଣ୍ଣନା ମିଳେ, ଯାହାକି ତତ୍‌କାଳୀନ ବିବାହ ସମୟରେ ମଧ୍ୟ ଚଳୁଥିଲା । ଏବେ ବିବାହର ପୂର୍ବଦିନ ଓଡ଼ିଶାରେ ମଙ୍ଗଳନ ଦିନ 'ଦିଅବନ୍ଦାଣ' ପ୍ରଥା ଅଛି, ଯହିଁରେ କେବଳ ସ୍ତ୍ରୀଲୋକମାନେ ଯୋଗ ଦିଅନ୍ତି । ଏହି ଦିଅଁବନ୍ଦାଣ ଗ୍ରାମଦେବତାଠାରେ ହୁଏ । ଠିକ୍ ଏହି ପ୍ରଥା ରୁକ୍ମିଣୀ ବିବାହ ସମୟ ମଧ୍ୟରେ ଚଳୁଥିଲା ।

ଅନ୍ତପୁରାନ୍ତର ଚରୀ ମନିହତ୍ୱ ବନ୍ଧୁଂ ସ୍ୱା
ମୁଦ୍‌ବହେ କଥମିତି ପ୍ରବଜା ମ୍ୟୁପାୟଂ
ପୂର୍ବେଦ୍ୟୁରସ୍ତି ମହତୀ କୂଳଦେବୀ ଯାତ୍ରା
ଯସ୍ୟାମ୍ବହି ନବବଧୂ ଗିରିଜା ମୁପେୟାତ୍

ଭାଗବତର 'ପୂର୍ବେଦ୍ୟୁ ରସ୍ତି' କଥାରୁ ବୈଦିକ ଯୁଗର ପ୍ରଭାବ ସ୍ପଷ୍ଟ ଜଣାଯାଏ ।

ଓଡ଼ିଶାରେ ପ୍ରଚଳିତ ଶାକ୍ତ ପରମ୍ପରା ସମ୍ପର୍କରେ ଯତ୍‌କିଞ୍ଚିତ୍ ଆଲୋଚନା ଏଠାରେ କରାଯାଇଛି । ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ ଓଡ଼ିଶାର ପରମ୍ପରା ମୂଳ ବୈଦିକ ଯୁଗ, ଯାହାର ପ୍ରଭାବ ଅଦ୍ୟାପି ପ୍ରଚଳିତ ଅଛି ।



କଳିଙ୍ଗ, ୧୯୬୪ ଅକ୍ଟୋବର

# ଶ୍ରୀଧର ସ୍ୱାମୀ ଓ ବଳଦେବ ବିଦ୍ୟାଭୂଷଣ
## (ଦୁଇଜଣ ଭାରତ-ବିଦିତ ଓଡ଼ିଆ ବୈଷ୍ଣବ ଭାଷ୍ୟକାର)

ବିଂଶ ଶତାବ୍ଦୀର ଦୁଇଜଣ ବିଖ୍ୟାତ ଧର୍ମ ସାହିତ୍ୟର ଐତିହାସିକ ଡକ୍ଟର ଜେ.ଏନ୍.ଫରକ୍‌ହାର (J.N.Farquhar) ଓ ଡକ୍ଟର ସୁଶୀଲ କୁମାର ଦେଙ୍କ ନାମ ଚିରସ୍ମରଣୀୟ ରହିବ ଯେ ସେମାନେ ଶ୍ରୀଧର ସ୍ୱାମୀ ଓ ବଳଦେବ ବିଦ୍ୟାଭୂଷଣଙ୍କ ଉପରେ ପ୍ରଭୂତ ଆଲୋକପାତ କରିଅଛନ୍ତି । ଏଥିସହିତ 'ବିଶ୍ୱକୋଷ'ର ସମ୍ପାଦକ ସ୍ୱର୍ଗୀୟ ନଗେନ୍ଦ୍ରନାଥ ବସୁ ଓ 'ଶ୍ରୀକ୍ଷେତ୍ର'ର ଲେଖକ ସୁନ୍ଦରନନ୍ଦ ବିଦ୍ୟାଭୂଷଣଙ୍କ ନାମ ମଧ୍ୟ ସେମାନଙ୍କର ବଙ୍ଗଳାର ଲେଖାପାଇଁ ଉଲ୍ଲେଖଯୋଗ୍ୟ । ଅଳ୍ପ କେତେକ ମାସ ପୂର୍ବେ ଏହି ବିଶିଷ୍ଟ ବୈଷ୍ଣବ ଲେଖକମାନଙ୍କର ଇତିହାସ ସଙ୍କଳନ ପ୍ରତି ମୋର ଦୃଷ୍ଟି ଆକୃଷ୍ଟ ହେବାରୁ ମୁଁ ଯାହା ସଂଗ୍ରହ କରିପାରିଛି, ତାହାର ବିବରଣ ତଳେ ଲେଖୁଅଛି ।

### ୧. ଶ୍ରୀଧର ସ୍ୱାମୀ

ବଙ୍ଗଳା ଭାଷାରେ ମୁଦ୍ରିତ 'ବିଶ୍ୱକୋଷ'ର ଶ୍ରୀଧର ସ୍ୱାମୀଙ୍କ ଉପରେ ଗୋଟିଏ ମାତ୍ର ପରିଚ୍ଛେଦ ଲିଖିତ ଅଛି । ସେଥିରୁ ଜଣାଯାଏ ଯେ ଶ୍ରୀଧର ସ୍ୱାମୀଙ୍କର ଗୁରୁଙ୍କର ନାମ ପରମାନନ୍ଦ ଥିଲା ଓ ସେ ଭାଗବତର ଭାଷ୍ୟ ଲେଖିଥିଲେ । ତତ୍‌ସହିତ ସେ ମଧ୍ୟ ଭଗବତ୍ ଗୀତାର ଭାଷ୍ୟ ମଧ୍ୟ ଲେଖିଥିଲେ । ବିଶ୍ୱକୋଷରୁ ଏତିକିମାତ୍ର ବିଷୟ ଜଣାଯାଏ ।

ୟୁରୋପୀୟ ପଣ୍ଡିତମାନଙ୍କ ମଧ୍ୟରେ ଡାକ୍ତର ଫରକ୍‌ହାର ତାଙ୍କର ଗ୍ରନ୍ଥ - Outline of the Religious Literature of India ପୁସ୍ତକରେ ନିମ୍ନଲିଖିତ ମତବ୍ୟକ୍ତ କରିଅଛନ୍ତି । ଏହି ପୁସ୍ତକଟି ୧୯୨୦ରେ ଅକସ୍‌ଫୋର୍ଡ଼ କମ୍ପାନୀଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା ।

"ସମ୍ଭବତଃ ଖ୍ରୀଷ୍ଟୀୟ ୧୪୦୦ ଅବ୍ଦରେ ପୁରୀର ଶଙ୍କର ସମ୍ପ୍ରଦାୟ ମଠର ମହନ୍ତ ଶ୍ରୀଧର ସ୍ୱାମୀ ଭାଗବତ ପୁରାଣର 'ଭାଗବତ-ଭାବାର୍ଥ-ଦୀପିକା' ନାମକ ଭାଷ୍ୟ ରଚନା କରିଥିଲେ । ଏହି ଭାଷ୍ୟଟି ଭାଗବତ ଉପରେ ସର୍ବଶ୍ରେଷ୍ଠ ଓ ପ୍ରସିଦ୍ଧ ପ୍ରାମାଣିକ ଗ୍ରନ୍ଥ । ସେ ସ୍ପଷ୍ଟତଃ ଜଣେ ଅଦ୍ଭୂତକର୍ମା ପଣ୍ଡିତ ଥିଲେ ଓ ତାଙ୍କର ଅତିଶୟ ବିଶ୍ୱାସଯୋଗ୍ୟ ସଂସ୍କୃତିମୂଳକ (tradition) ବିଷୟମାନ ଜାଣିବାର ସୁଯୋଗ ଥିଲା । ସେ ତାଙ୍କର ଭାଷ୍ୟରେ ଲେଖିଅଛନ୍ତି ଯେ ପ୍ରସିଦ୍ଧ ପୁରାଣ ଭାଗବତ ବୋପଦେବଙ୍କ ଦ୍ୱାରା ଲିଖିତ ହୋଇ ନଥିଲା ।

ବୋପଦେବଙ୍କ ଲେଖାର୍ ପ୍ରଚଳନ କଥାରୁ ସ୍ପଷ୍ଟ ଜଣାଯାଉଅଛି ଯେ ସେ ଖ୍ରୀଷ୍ଟାବ୍ଦ ୧୩୦୦ର ପରବର୍ତ୍ତୀ, ଯେତେବେଳେ କି ବୋପଦେବଙ୍କର ଆବିର୍ଭାବ ହୋଇଥିଲା । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଶେଷବେଳକୁ ତାଙ୍କର ଭାଷ୍ୟ ସର୍ବତ୍ର ସୁବିଦିତ ହୋଇଥିଲା । ଶ୍ରୀଧରଙ୍କର ଜୀବନକାଳ ଯୁକ୍ତିଯୁକ୍ତ ଭାବରେ ଖ୍ରୀ: ୧୪୦୦ ବୋଲି ଧରାଯାଇପାରେ । ତାଙ୍କର ପୁରାଣ ବ୍ୟାଖ୍ୟା ଅଦ୍ୱୈତତତ୍ତ୍ୱଦର୍ଶୀ, କାରଣ ସେ ଶଙ୍କର ସମ୍ପ୍ରଦାୟର ଶିଷ୍ୟ । ଭାଗବତ ଗ୍ରନ୍ଥ ଏକେଶ୍ୱରବାଦ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଶ୍ରୀଧର ସ୍ୱାମୀଙ୍କର 'ଦୀପିକା' ମୁଖ୍ୟଭାବରେ ଏକ ପ୍ରମାଣମୂଳକ ଗ୍ରନ୍ଥ ବୋଲି ପରିଗଣିତ ହୁଏ ।'' (ପୃ.୨୯୭)

ଡାକ୍ତର ଫରକ୍‌ହାରଙ୍କ ପରେ ଡାକ୍ତର ସୁଶୀଲ କୁମାର ଦେ ଶ୍ରୀଧର ସ୍ୱାମୀଙ୍କର ଉପରେ ଆଲୋଚନା କରିଅଛନ୍ତି । ତାଙ୍କଦ୍ୱାରା ଲିଖିତ 'ବଙ୍ଗଳାର ଚୈତନ୍ୟ ପୂର୍ବବର୍ତ୍ତୀ ବୈଷ୍ଣବ ଧର୍ମ' ପ୍ରବନ୍ଧରେ ସେ ପ୍ରଥମେ ଆଲୋଚନା କରନ୍ତି । ଏହି ପ୍ରବନ୍ଧଟି ୧୯୩୩ରେ Festchrift Moniy Winternity ପୃ.୧୯୫୦ାରୁ ପୁସ୍ତକରେ ମୁଦ୍ରିତ ହୋଇଥିଲା । ତତ୍ପରେ ଡାକ୍ତର ଦେ ମହାଶୟ ଏହି ପ୍ରବନ୍ଧକୁ ପରିବର୍ଦ୍ଧିତ କରି ''ବଙ୍ଗଳାରେ ବୈଷ୍ଣବ ଧର୍ମ ଓ ତାହାର ପ୍ରସାରର ପ୍ରାଚୀନ ଇତିହାସ'' (Early History of the Vaisnava faith and movement in Bengal) ପୁସ୍ତକରେ ୧୯୪୨ ରେ ଅନ୍ତର୍ଭୁକ୍ତ କରିଥିଲେ (ଯାହା କି ମୁଁ ପଢ଼ିବାର ସୁବିଧା ପାଇନାହିଁ); କିନ୍ତୁ ୧୯୬୧ ରେ ମୁଦ୍ରିତ ଏହି ଗ୍ରନ୍ଥର ୨ୟ ସଂସ୍କରଣ ମୁଁ ପାଠ କରିଛି । ଏହି ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ଉପରେ ଡାକ୍ତର ଦେ ମହାଶୟ ଯାହା ଲେଖିଅଛନ୍ତି, ତାହା ତଳେ ଉଦ୍ଧୃତ ହେଲା ।

''ଏହା ଖୁବ୍ ସମ୍ଭବପର ଯେ ମାଧବଚନ୍ଦ୍ର ପୁରୀ ଓ ତାଙ୍କର ଶିଷ୍ୟ ଈଶ୍ୱର ପୁରୀ ଉଭୟେ ଶଙ୍କରାଚାର୍ଯ୍ୟ ସଂପ୍ରଦାୟଭୁକ୍ତ ସନ୍ୟାସୀ ଥିଲେ, ଯେଉଁ ସଂପ୍ରଦାୟଭୁକ୍ତ ଥିଲେ ଶ୍ରୀଧର ସ୍ୱାମୀ ମଧ୍ୟ । ଶ୍ରୀଧର ସ୍ୱାମୀ ତାଙ୍କର ପ୍ରସିଦ୍ଧ ଶ୍ରୀମଦ୍‌ଭାଗବତର ଭାଷ୍ୟରେ ଶଙ୍କରର ପ୍ରଚାରିତ ଅଦ୍ୱୈତ ମତ ସହିତ ଭାଗବତର ତନ୍ମୟ ଭାବ ଏକତ୍ରିତ କରିଥିଲେ । x x x x ଜ୍ଞାନ ଓ ଭକ୍ତିର ଏକତ୍ରୀକରଣର ମୂଲ୍ୟ ଯାହାହେଉ ପଛକେ କିମ୍ବଦନ୍ତୀରୁ ପ୍ରତିପାଦିତ ହୁଏ ଯେ ଶ୍ରୀଧର ସ୍ୱାମୀଙ୍କର ଭାଷ୍ୟ ବାରଣାସୀର * ସଂପ୍ରଦାୟ ଉପରେ ଏକ ପ୍ରବଳ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ।'' (ପୃ.୧୭-୧୯)

---

* ଡାକ୍ତର ଦେଙ୍କର ବାରଣସୀର ଉଲ୍ଲେଖରୁ ସୂଚିତ ହୁଏ ଯେ ସେ ଏକଥା ଚନ୍ଦ୍ରଦତ୍ତଙ୍କ ସଂସ୍କୃତ ଭକ୍ତମାଳ ଗ୍ରନ୍ଥରୁ ପାଇଥିଲେ । ଭକ୍ତମାଳ ଗ୍ରନ୍ଥଟି ବମ୍ବାଇ ଭେଙ୍କଟେଶ୍ୱର ପ୍ରେସ୍‌ରେ ୧୯୨୨ ରେ ମୁଦ୍ରିତ । ସେଥିରେ ଶ୍ରୀଧର ସ୍ୱାମୀଙ୍କ ସମ୍ପର୍କରେ ଅନେକ ଅତିମାନୁଷ ଘଟଣା ବର୍ଣ୍ଣିତ ଅଛି । ଉକ୍ତ ମାଳଗ୍ରନ୍ଥର ରଚନାକାଳ ଖୁବ୍ ବେଶୀରେ ଖ୍ରୀ: ୧୮ଶ ଶତାବ୍ଦୀ । ତେଣୁ ଏହି କିମ୍ବଦନ୍ତୀ, ଯାହା ଚନ୍ଦ୍ରଦତ୍ତ ଲେଖିଛନ୍ତି, ସେ ଅତି ଆଧୁନିକ ।

"ଶ୍ରୀଧରଙ୍କର ଭକ୍ତିମୂଳକ ଭାଷ୍ୟକୁ ଭକ୍ତିଭାବାପନ ସନ୍ନ୍ୟାସୀମାନେ ଗ୍ରହଣ କରିଥିଲେ ଓ ସେମାନେ ହିଁ ବୈଷ୍ଣବ ଭକ୍ତି ପ୍ରଚାରର ମୂଳଭିତ୍ତି ବଙ୍ଗଳାରେ ସ୍ଥାପନ କରିଥିଲେ ଓ ଏହି ମୂଳଭିତ୍ତିର ପ୍ରଥମ ଭିତ୍ତି ପ୍ରସ୍ତର ଥିଲା ଶ୍ରୀମଦ୍ ଭାଗବତ । ନିଜେ ଚୈତନ୍ୟଦେବ ଏହି ସମ୍ପ୍ରଦାୟର ସନ୍ନ୍ୟାସୀ ଥିଲେ । ସେ ନିଜର ଭକ୍ତି, ସାଧନା ଓ ଅନୁଭୂତି ଉପରେ ପ୍ରତିଷ୍ଠାପିତ କରି ଏହି ଧର୍ମ ପ୍ରଚାରକୁ ଏକ ନୂତନ ମାର୍ଗରେ ପରିଚାଳିତ କରିଥିଲେ ।" (ପୃ.୨୩)

ଡାକ୍ତର ଦେ ମହାଶୟ ଶ୍ରୀଧର ସ୍ୱାମୀଙ୍କର ସମୟ ନିରୂପଣ କରିବାକୁ ଯାଇ ପୃ.୧୭ର ପାଦ ଟୀକାରେ ଲେଖିଅଛନ୍ତି ଯେ "ଶ୍ରୀଧର ବୋପଦେବଙ୍କର ନାମ କରିଥିବାରୁ ତାଙ୍କର ସମୟ ଖ୍ରୀ: ୧୩୦୦ ପୂର୍ବବର୍ତ୍ତୀ ହୋଇ ନପାରେ ।"

ବଙ୍ଗଳାର ବୈଷ୍ଣବ ଧର୍ମର ଇତିହାସ ଆଲୋଚନା କରିବାକୁ ଯାଇ ଡାକ୍ତର ଦେ ମହାଶୟ ଶ୍ରୀଧର ସ୍ୱାମୀଙ୍କୁ ଯେଉଁ ମହନୀୟ ସ୍ଥାନ ଦେଇଅଛନ୍ତି, ତାହା ତାଙ୍କର ପାଣ୍ଡିତ୍ୟର ପରିଚାୟକ ।

ବୈଷ୍ଣବ ଗ୍ରନ୍ଥ ସୁପ୍ରସିଦ୍ଧ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥର ଲେଖକ କୃଷ୍ଣଦାସ କବିରାଜ ଗୋସ୍ୱାମୀ । ସେ ଗ୍ରନ୍ଥଟିକୁ ବଙ୍ଗଳା ପଦ୍ୟରେ ଲେଖିଅଛନ୍ତି । "ଚୈତନ୍ୟ ଚରିତାମୃତ" ଗ୍ରନ୍ଥ ଖ୍ରୀ ୧୬୧୫ରେ ଲିଖିତ ହୋଇଥିଲା । ଶ୍ରୀକୃଷ୍ଣ-ଚୈତନ୍ୟ-ମହାପ୍ରଭୁଙ୍କ ଉପରେ ଶ୍ରୀଧର ସ୍ୱାମୀଙ୍କର ପ୍ରଭାବ କିପରି ପଡ଼ିଥିଲା, ତାହା ଏହି ଗ୍ରନ୍ଥରେ ନିମ୍ନୋକ୍ତ ଭାବରେ ଲିଖିତ ଅଛି -

"ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତ ଜାନି ।
ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।"

'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ସ୍ୱୟଂ ଚୈତନ୍ୟ ମହାପ୍ରଭୁଙ୍କ ମୁଖରେ ଶ୍ରୀଧର ସ୍ୱାମୀଙ୍କର ଗୁଣାବଳୀ ଯେପରି ବର୍ଣ୍ଣିତ ହୋଇଥିବା (ଅନ୍ତତଃ ଖ୍ରୀ: ୧୬୧୪ ଠାରୁ) ସତ୍ତ୍ୱେ ଓଡ଼ିଶାରେ ଶ୍ରୀଧର ସ୍ୱାମୀ ଏପରି ଭାବରେ ବିସ୍ମୃତ ହୋଇଅଛନ୍ତି, ତାଙ୍କର ଇତିହାସ ଅଦ୍ୟାପି ଲୁପ୍ତପ୍ରାୟ ହୋଇଅଛି । ଡାକ୍ତର ଫରକ୍‌ହାର କେବଳ ତାଙ୍କର ପରିଚୟ ଦେଇଅଛନ୍ତି ଯେ ସେ ପୁରୀର ଗୋବର୍ଦ୍ଧନ ମଠର ମହନ୍ତ ଥିଲେ । ଏ ପରିଚୟରୁ ତାଙ୍କୁ ଓଡ଼ିଆ ବୋଲି ଜାଣିବାର ବିନ୍ଦୁମାତ୍ର ସୁଯୋଗ ନାହିଁ; କିନ୍ତୁ ଡାକ୍ତର ଦେ ମହାଶୟ ତାଙ୍କର କିଛିମାତ୍ର ପରିଚୟ ପାଇ ନଥିଲେ ।

ଡାକ୍ତର ଫରକ୍‌ହାର ଶ୍ରୀଧର ସ୍ୱାମୀଙ୍କର ସମୟ ନିରୂପଣ କରିବାକୁ ଯାଇ ଲେଖିଅଛନ୍ତି ଯେ, ସେ ଖ୍ରୀ: ୧୩୦୦ରେ ଜୀବିତ ଥିଲେ । ଡାକ୍ତର ଦେ ଲେଖିଅଛନ୍ତି ଯେ ଶ୍ରୀଧର ସ୍ୱାମୀ ଖ୍ରୀ: ୧୩୦୦ର ପୂର୍ବବର୍ତ୍ତୀ ନଥିଲେ । ଦୁଇ ପଣ୍ଡିତଙ୍କର ମତରେ ଏକଶତ ବର୍ଷର ବ୍ୟବଧାନ ରହିଅଛି । ମୋର ମତ ଏହି ଯେ ଶ୍ରୀଧର ସ୍ୱାମୀଙ୍କର ସମୟ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀର ମଧ୍ୟଭାଗରୁ ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀର ପ୍ରଥମପାଦ ମଧ୍ୟରେ ନିରୂପିତ କରାଯାଇପାରେ । ଅବଶ୍ୟ ଖ୍ରୀ: ୧୩୦୦ରୁ ଖ୍ରୀ: ୧୪୦୦ ବର୍ଷ ମଧ୍ୟରେ ଓଡ଼ିଶାର ଇତିହାସରେ ଗଙ୍ଗନୃପତିମାନଙ୍କର ରାଜତ୍ୱ ନିରଙ୍କୁଶ ଥିବ; କିନ୍ତୁ ଖ୍ରୀ: ୧୪ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାରେ କେହି ବଡ଼ କବି ବା ଲେଖକଙ୍କର ନାମ ଜଣାଯାଇନାହିଁ; କିନ୍ତୁ ଖ୍ରୀ: ୧୩୫୦ ଠାରୁ ଖ୍ରୀ: ୧୪୨୫ ମଧ୍ୟରେ ଓଡ଼ିଶା ଇତିହାସରେ ଅନ୍ତତଃ ତିନିଜଣ ବଡ଼ କବିଙ୍କର ଗ୍ରନ୍ଥ ପ୍ରକାଶିତ ହୋଇଛି । ତନ୍ମଧ୍ୟରୁ ବିଦ୍ୟାଧରକୃତ 'ଏକାବଳୀ' ଏକ ଅଳଙ୍କାର ଗ୍ରନ୍ଥ, ସାନ୍ଧିବିଗ୍ରହିକ କୃଷ୍ଣାନନ୍ଦକୃତ ସହୃଦୟାନନ୍ଦ ଓ ବିଶ୍ୱନାଥ କବିରାଜକୃତ 'ସାହିତ୍ୟଦର୍ପଣ' । ଏହା ବ୍ୟତୀତ ବିଶ୍ୱନାଥଙ୍କ ବଂଶରେ ମଧ୍ୟ ବଡ଼ ବଡ଼ କବି ଥିବାର କଥା ଜଣାଯାଏ । ଏହି ସମୟରେ ଶ୍ରୀଧର ସ୍ୱାମୀଙ୍କର ଆବିର୍ଭାବ ଖୁବ୍ ସମ୍ଭବପର । ଖ୍ରୀ: ୧୩୬୧ରେ ଫିରୋଜସାହଙ୍କର ଓଡ଼ିଶା ଆକ୍ରମଣ ପରେ ଓଡ଼ିଶାରେ ଯେଉଁ ଶିଥିଳତା ମୁଣ୍ଡ ଟେକି ଉଠୁଥିଲା, ତାହା ଏକାବେଳକେ ଧ୍ୱସ୍ତ ହୋଇ ନବୀନ ଉତ୍ସାହରେ ଦେଶ ଉଦ୍‌ବୁଦ୍ଧିତ ହୋଇଥିଲା, ଯାହାର ଫଳରେ ସାହିତ୍ୟ ଓ ଜ୍ଞାନମାର୍ଗର ନୂତନ ନୂତନ ପନ୍ଥା ବିକଶିତ ହୋଇଥିଲା । କେବଳ ଏତିକି ନୁହେଁ, ଶ୍ରୀ ଚୈତନ୍ୟ ଖ୍ରୀ: ୧୫୧୦ରେ ଓଡ଼ିଶାକୁ ନିଜର କର୍ମକ୍ଷେତ୍ର ରୂପେ ବାଛି ନେଇ ନୀଳାଚଳକୁ ଆସିଥିଲେ । ସେତେବେଳେ ଓଡ଼ିଶାର ରାଜା ଥିଲେ ପ୍ରତାପରୁଦ୍ରଦେବ । ତାଙ୍କର ଜଣେ ସେନାପତି ଥିଲେ ଜୀବଦେବ ଆଚାର୍ଯ୍ୟ । ଜୀବଦେବଙ୍କର ଲେଖା ଦୁଇଟି ଗ୍ରନ୍ଥ ଆବିଷ୍କୃତ ହୋଇଛି -- ଗୋଟିଏ "ଭକ୍ତିଭାଗବତ ମହାକାବ୍ୟ" ଓ ଅନ୍ୟଟି "ଭକ୍ତିବୈଭବ ନାଟକ" । ଶ୍ରୀଧର ସ୍ୱାମୀଙ୍କ ଭକ୍ତିମୂଳକ ଟୀକା ପ୍ରଚରିତ ହେବାପରେ ଓଡ଼ିଶାରେ ହିଁ ଭାଗବତ ପୁରାଣର ବିଷୟ ଉପରେ ସାହିତ୍ୟ ଗଢ଼ି ଉଠିଥିଲା । ଏ ଦୁଇଟି ଗ୍ରନ୍ଥ ଚୈତନ୍ୟଙ୍କ ଆଗମନ ଆଗରୁ ଲିଖିତ ଓ ପ୍ରଚରିତ ହୋଇଥିଲା । ଏଠାରେ ରାୟ ରାମାନନ୍ଦଙ୍କର କଥା ଉଲ୍ଲେଖଯୋଗ୍ୟ । ଭାଗବତ ଧର୍ମତତ୍ତ୍ୱ ପ୍ରଚର ପାଇଁ ସାହିତ୍ୟ ସୃଷ୍ଟି କରିଥିଲା ପ୍ରଥମେ ଓଡ଼ିଶା । ଏହାହିଁ ଓଡ଼ିଶାର ଇତିହାସରେ ଏହି ଯୁଗର ବିଶେଷତ୍ୱ ।

ସାଧାରଣତଃ ସନ୍ନ୍ୟାସୀମାନେ ସେମାନଙ୍କର ଗ୍ରନ୍ଥରେ ନିଜର ବଂଶ ବା ବସତିର ପରିଚୟ ଦିଅନ୍ତି ନାହିଁ । ଶ୍ରୀଧର ସ୍ୱାମୀଙ୍କ ପକ୍ଷରେ ମଧ୍ୟ ଏହା ସତ୍ୟ ହେଲେ ମଧ୍ୟ

ତାଙ୍କର ବାସସ୍ଥାନ ଓ ବଂଶ ପରିଚୟ କିମ୍ବଦନ୍ତୀ ଆକାରରେ ଅଦ୍ୟାପି ଓଡ଼ିଶାରେ ରହିଅଛି । ଶ୍ରୀଧର ସ୍ୱାମୀଙ୍କର ବଂଶଧରମାନେ ମଧ୍ୟ ଏପରି ଅବସ୍ଥାରେ ଅଛନ୍ତି ଯେ ସେମାନେ ନିଜର ବଂଶଗୌରବ କଥା ପ୍ରଚାର କରିବା ପାଇଁ ପ୍ରାୟ ଉଦାସୀନ । ଏକ ଘଟଣାରେ ଶ୍ରୀଧର ସ୍ୱାମୀଙ୍କର ବାସସ୍ଥାନ ଓ ବଂଶର ପରିଚୟ ଆକସ୍ମିକ ଭାବରେ ଜଣାଯାଇଥିଲା ପ୍ରାୟ ୬୦ ବର୍ଷ ପୂର୍ବେ -- ସେତେବେଳେ ରେମୁଣାରୁ ବି.ଏ. ପାଶକରି ଚନ୍ଦ୍ରମୋହନ ମହାରଣା ଶିକ୍ଷା ବିଭାଗରେ ଚାକିରି କରୁଥିଲେ । ଦିନେ ଜଣେ ଯୁବକ ତାଙ୍କଠାରେ ଏକ ଚାକିରି ପ୍ରାର୍ଥୀ ହୋଇ ଉପସ୍ଥିତ ହେଲା । ମହାରଣା ତାଙ୍କୁ ହତାଦର ଭାଷାରେ କଥାବାର୍ତ୍ତା କରିବାରୁ ଯୁବକ କ୍ରୋଧାନ୍ୱିତ ହୋଇ କହି ପକାଇଲା "ଆଜ୍ଞା ମୁଁ ଗରିବ -- ଅଶିକ୍ଷିତ ହୋଇପାରେ, ମାତ୍ର ମୋର ବଂଶ ଗୌରବ ଅଛି । ମୁଁ ଶ୍ରୀଧର ସ୍ୱାମୀଙ୍କ ବଂଶଧର ?" ଶ୍ରୀଧର ସ୍ୱାମୀଙ୍କ ନାମ ଶୁଣି ମହାରଣା ମହାଶୟ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାଙ୍କ ସଂପର୍କରେ ଅନ୍ୟାନ୍ୟ ପ୍ରଶ୍ନ ପଚାରିବାରୁ ଯାହା ଶୁଣିଲେ, ସେଥିରୁ ସେ ଜାଣିଲେ ଯେ ଶ୍ରୀଧର ସ୍ୱାମୀଙ୍କ ବଂଶଧର ଅଦ୍ୟାପି ମରାଇଗାଁ ଗ୍ରାମରେ ବସବାସ କରି ରହିଅଛନ୍ତି । ମରାଇଗାଁ ରେମୁଣା କ୍ଷୀରଚୋରା ଗୋପୀନାଥ ମନ୍ଦିରର ଉତ୍ତର ଦିଗରେ ପ୍ରାୟ ୩ ମାଇଲ ଦୂରବର୍ତ୍ତୀ ଏକ ଗ୍ରାମ । ରେମୁଣା ବାଲେଶ୍ୱର ସହରର ପଶ୍ଚିମରେ ୫/୬ ମାଇଲ ଦୂରରେ ଅବସ୍ଥିତ । ସ୍ୱର୍ଗୀୟ ଚନ୍ଦ୍ରମୋହନ ମହାରଣା ତତ୍‌କାଳୀନ ମାସିକ ପତ୍ରିକା 'ମୁକୁର'ରେ ଶ୍ରୀଧର ସ୍ୱାମୀଙ୍କର ବାସସ୍ଥାନ ମରାଇଗ୍ରାମରେ ଥିବା କଥା ଏକ ପ୍ରବନ୍ଧରେ ଲେଖିଥିଲେ । ତାହା ମୁଁ ପଢ଼ିଥିଲି । ମୋ ପାଖରେ 'ମୁକୁର' ଥିଲା; ମାତ୍ର ବର୍ତ୍ତମାନ ପାଉନାହିଁ । ସୋଣ ନଦୀର ଉତ୍ତରାଞ୍ଚଳ ଓ ବୁଢ଼ାବଳଙ୍ଗ ନଦୀର ଦକ୍ଷିଣାଞ୍ଚଳ ଗ୍ରାମସମୂହ ବୁଢ଼ାବଳଙ୍ଗ; ଗଙ୍ଗାହାର ଓ ସୋଣନଦୀ ସମୂହ ଦ୍ୱାରା ପରିବେଷ୍ଟିତ । ଏ ଅଞ୍ଚଳରେ ଅଦ୍ୟାପି ମଧ୍ୟ ମଟର ଯିବା‌ଆସିବା ପାଇଁ ଖରାଦିନିଆ ରାସ୍ତା ଅଛି କି ନା ମୋତେ ଜଣାନାହିଁ । ମରାଇଗାଁର ଅଦୂରବର୍ତ୍ତୀ ଗ୍ରାମଗୁଡ଼ିକରେ ବହୁ ଅଥର୍ବବେଦୀୟ ବ୍ରାହ୍ମଣମାନଙ୍କର ବସତି ଅଛି । ଏସବୁ ବ୍ରାହ୍ମଣ କେବଳ ଅଥର୍ବବେଦୀୟ ପୈପଲାଦ ଶାଖା ଭୁକ୍ତ । ପୈପଲାଦ ଶାଖାରୁ ଗୋପାଳ ତାପିନୀ, ଶ୍ରୀକୃଷ୍ଣ ତାପିନୀ ସବୁ ଲିଖିତ ଅଛି । ଓଡ଼ିଶାର ସବୁ ବେଦର ବ୍ରାହ୍ମଣମାନେ ବିବାହ ଓ ବ୍ରତ ସଭାରେ ଯେଉଁ ବେଦମନ୍ତ୍ର ପାଠ କରନ୍ତି, ସେସବୁ ତାପିନୀ ଅନ୍ତର୍ଭୁକ୍ତ । ଏହି ତାପିନୀ ଗ୍ରନ୍ଥଗୁଡ଼ିକ ବୈଷ୍ଣବଧର୍ମର ମୂଳଭିତ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଶଙ୍କରାଚାର୍ଯ୍ୟ ତାଙ୍କର ଭାଷ୍ୟସମୂହରେ ଯେଉଁ ଅଥର୍ବ ବେଦର କଥା ଉଲ୍ଲେଖ କରିଅଛନ୍ତି, ତାହା କେବଳ ପୈପଲାଦି ଶାଖାଭୁକ୍ତ । ପୈପଲାଦ ଶାଖାର ଅଥର୍ବବେଦୀୟ ମନ୍ତ୍ର ପୋଥି ଓଡ଼ିଶାରେ ଥିବାର କଥା କାହାରିକୁ

ଜଣା ନଥିଲା । କଲିକତା ସଂସ୍କୃତ କଲେଜର ବେଦ ଅଧ୍ୟାପକ ସ୍ୱର୍ଗୀୟ ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟଙ୍କ ଯତ୍ନରେ ଭାରତର ଏହି ସୁଦୁର୍ଲ୍ଲଭ ଗ୍ରନ୍ଥ ଓଡ଼ିଶାରୁ ଆବିଷ୍କୃତ ହୋଇଛି । ମରାଇଗାଁ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ସ୍ୱର୍ଗୀୟ ଭଟ୍ଟାଚାର୍ଯ୍ୟ କେତେଖଣ୍ଡି ପୋଥି ଖ୍ରୀ: ୧୯୫୯ରେ ସଂଗ୍ରହ କରିଥିଲେ । ବଙ୍ଗ ସରକାରଙ୍କ ଯତ୍ନରେ ଏହି ଅଥର୍ବବେଦୀୟ ପୈପଲାଦ ଶାଖାର ମନ୍ତ୍ରସବୁ ମୁଦ୍ରିତ ହେଉଅଛି । ଏହି ପରିବେଶରୁ ଜଣାଯାଉଅଛି ଯେ ଶ୍ରୀଧର ସ୍ୱାମୀ ସନ୍ନ୍ୟାସ ହେବାପୂର୍ବରୁ ଅଥର୍ବବେଦୀୟ ମନ୍ତ୍ରବାଦରେ ପ୍ରବଣତା ଲାଭ କରିଥିଲେ । ବାରିପଦା ନିବାସୀ ଅଥର୍ବବେଦୀୟ ସ୍ୱର୍ଗୀୟ ମୋହନ ଚରଣ ପଣ୍ଡାଙ୍କ ସୌଜନ୍ୟରୁ ଜାଣିଲି ଯେ ତାଙ୍କର ମାମୁଘର ଗାଁର ନାଁ ମରାଇଗାଁ । ତହୁଁ ତାଙ୍କୁ ଶ୍ରୀଧର ସ୍ୱାମୀଙ୍କ କଥା ପଚାରିବାରୁ ସେ କହିଲେ ଯେ, ଶ୍ରୀଧର ସ୍ୱାମୀଙ୍କର ବଂଶଧର ଅଦ୍ୟାପି ସେ ଗ୍ରାମରେ ଅଛନ୍ତି । ତାଙ୍କର ନାମ କହିବାରୁ ତାଙ୍କୁ ପତ୍ର ଲେଖିଲି ଓ ତାଙ୍କଠାରୁ ଉତ୍ତର ମଧ୍ୟ ପାଇଲି । ତାଙ୍କ ସହିତ ସାକ୍ଷାତ କରିବାପାଇଁ ଚିଠି ଲେଖିବାରୁ ସେ ଚିଠି ନଦେଇ ବାରିପଦା ଆସିଲେ । ମାତ୍ର ମୁଁ ସେତେବେଳେ କଟକରେ ଥିବାରୁ ତାଙ୍କ ସହିତ ଦେଖାକରି କଥାବାର୍ତ୍ତା ହୋଇପାରିଲି ନାହିଁ । ସେ ଭଦ୍ରଲୋକଙ୍କ ନାମ ଶଶୀଭୂଷଣ ଶତପଥୀ । ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ କେତୋଟି କିମ୍ବଦନ୍ତୀ ଶୁଣିଛି । ମାତ୍ର ସେଗୁଡ଼ିକ ଉପରେ ବିଶେଷ ଆସ୍ଥା ସ୍ଥାପନ କରିବା ଭଳି ପ୍ରମାଣ ନ ପାଇବା ଯାଏଁ, ଏଠାରେ ଉଲ୍ଲେଖ କଲିନାହିଁ ।

ରେମୁଣାର ପ୍ରତ୍ନତତ୍ତ୍ୱ ବା ଇତିହାସ ବିଶେଷଭାବରେ ଆଲୋଚିତ ହୋଇନାହିଁ । କେବଳ ନରସିଂହଦେବ ୨ୟଙ୍କ ଖ୍ରୀ: ୧୨୯୬ରେ ପ୍ରଦତ୍ତ ଏକ ତାମ୍ରପଟାରେ ରେମୁଣା କଟକର କଥା ଉଲ୍ଲେଖ ଅଛି । ମନମୋହନ ଚକ୍ରବର୍ତ୍ତୀ ଲେଖିଅଛନ୍ତି ଯେ ରେମୁଣା ଦଣ୍ଡପାଟ ଅଧୀନରେ ୨୮ଟିରୁ ଅଧିକ 'ବିଶି' ଥିବାର କଥା ମାଦଳାପାଞ୍ଜିର 'ଦେଶଖଞ୍ଜା' ପୋଥିରୁ ସେ ପାଇଥିଲେ । ଏଥିରୁ ଏତିକି ଜଣାଯାଉଅଛି ଯେ ଖ୍ରୀ: ୧୩ଶ ଶତାବ୍ଦୀର ପ୍ରାରମ୍ଭରୁ ରେମୁଣା ଏକ ପ୍ରସିଦ୍ଧ ସ୍ଥାନ ଥିଲା । ରେମୁଣାର ଚତୁଃପାର୍ଶ୍ୱବର୍ତ୍ତୀ ପରିସ୍ଥିତିରୁ ଜଣାଯାଏ ଯେ ସେ ସ୍ଥାନ ଦିନେ ଉତ୍ତର ଓଡ଼ିଶାରେ ପ୍ରସିଦ୍ଧ ଥିଲା । ତାହାର ନିଦର୍ଶନସ୍ୱରୂପ ବର୍ତ୍ତମାନ ରେମୁଣା ଆଖପାଖ ଅଞ୍ଚଳରେ ତିନୋଟି ବୃହତ୍‌କାୟ ପୁଷ୍କରିଣୀ ରହିଅଛି । ତନ୍ମଧ୍ୟରୁ ଗୋଟିଏ ପୁଷ୍କରିଣୀର ନାମ 'ବରଜ' ବା 'ବ୍ରଜ ପୋଖରୀ' । ଏହା କ୍ଷୀରଚୋରା ଗୋପୀନାଥ ମନ୍ଦିରର ଅତି ନିକଟବର୍ତ୍ତୀ । ଗଙ୍ଗରାଜତ୍ୱ ସମୟରେ ରେମୁଣା ଉତ୍ତର ଭାରତକୁ ଯିବାଆସିବା ପଥରେ ଅବସ୍ଥିତ ଥିଲା । ଚୈତନ୍ୟ-ଚରିତାମୃତ ଗ୍ରନ୍ଥରୁ ଜଣାଯାଏ ଯେ ମାଧବେନ୍ଦ୍ର ପୁରୀ ବୃନ୍ଦାବନରୁ ଶ୍ରୀକ୍ଷେତ୍ରକୁ ଆସିବା ପଥରେ ରେମୁଣାରେ ରହିଥିଲେ ଓ ଫେରନ୍ତାପଥରେ

ରେମୁଣାରେ ମଧ୍ୟ ରହିଥିଲେ । ରେମୁଣାରୁ ଉତ୍ତର ଦିଗକୁ ଯେଉଁ ପଥ ବିସ୍ତୃତ ଥିଲା, ତାହା ମରାଇଗାଁ ଗ୍ରାମରେ ଯାଇଥିଲା । ରେମୁଣାର ଗୋପୀନାଥଙ୍କର ନାମ କ୍ଷୀରଚୋରା ଗୋପୀନାଥ ହୋଇଛି ମାଧବେନ୍ଦ୍ର ପୁରୀଙ୍କ ଲାଗି । ଏକଥା ଚୈତନ୍ୟ-ଚରିତାମୃତରେ ଅଛି । ଏଣୁ ରେମୁଣାର ଗୋପୀନାଥ ମୂର୍ତ୍ତି ମାଧବେନ୍ଦ୍ରପୁରୀଙ୍କ ବହୁ ପୂର୍ବରୁ ଓଡ଼ିଶାରେ ପ୍ରସିଦ୍ଧିଲାଭ କରିଥିଲା । କେବଳ ରେମୁଣାର ଗୋପୀନାଥ ମୂର୍ତ୍ତି ନୁହେଁ, ରେମୁଣାଠାରୁ ଜଗନ୍ନାଥ ସଡ଼କ କଡ଼ରେ ପୁରୀ ପର୍ଯ୍ୟନ୍ତ ବହୁ ଗୋପୀନାଥ ମୂର୍ତ୍ତିର ନିଦର୍ଶନ ମିଳିଅଛି । ଓଡ଼ିଶାରେ ଏହି ଗୋପୀନାଥ ମୂର୍ତ୍ତି ପୂଜା ଭାଗବତ ଧର୍ମର ଆଉ ଏକ ଜ୍ୱଳନ୍ତ ନିଦର୍ଶନ । ଏହି ଗୋପୀନାଥ ମୂର୍ତ୍ତିର ପୂଜା କି ପ୍ରକାରେ ହେଉଥିଲା, ମୂର୍ତ୍ତି କି ମନ୍ତ୍ରରେ ପୂଜିତ ହେଉଥିଲା ତାହାର ବିଶ୍ୱାସଯୋଗ୍ୟ ପ୍ରମାଣ ପାଇପାରିନାହିଁ । ଶ୍ରୀଧର ସ୍ୱାମୀଙ୍କର ଆବିର୍ଭାବ ପୂର୍ବରୁ ଓଡ଼ିଶାରେ ଗୋପୀନାଥ ମୂର୍ତ୍ତିର ଆରାଧନା ପ୍ରଚଳିତ ଥିଲା । ଶ୍ରୀଧର ସ୍ୱାମୀ ଯେ ମରାଇଗାଁ ନିକଟବର୍ତ୍ତୀ ଅଥର୍ବବେଦୀ ବ୍ରାହ୍ମଣମାନଙ୍କ ଦ୍ୱାରା ଓ ଗୋପୀନାଥ ମୂର୍ତ୍ତିଦ୍ୱାରା ଭାଗବତଧର୍ମରେ ଆକୃଷ୍ଟ ହୋଇଥିଲେ, ଏଥିରେ ସନ୍ଦେହ କରିବାର କିଛି ବାଧା ନଥିଲେ ମଧ୍ୟ କୌଣସି ସମସାମୟିକ ପ୍ରମାଣ ମିଳିନାହିଁ । ଏତିକିମାତ୍ର କଥା କିମ୍ବଦନ୍ତୀରୁ ଜଣାଯାଉଅଛି ଯେ ଶ୍ରୀଧରସ୍ୱାମୀଙ୍କର ବସତି ମରାଇଗାଁରେ ଥିଲା ଓ ସେ ଯଜୁର୍ବେଦୀୟ କାଣ୍ୱଶାଖାଭୁକ୍ତ ଶତପଥି ବ୍ରାହ୍ମଣ ବଂଶଜ ଥିଲେ । ଶ୍ରୀଧର ସ୍ୱାମୀଙ୍କ ସଦୃଶ ବଳଦେବ ବିଦ୍ୟାଭୂଷଣଙ୍କର ଜନ୍ମସ୍ଥାନ ରେମୁଣା ନିକଟବର୍ତ୍ତୀ ଏକ ଗ୍ରାମ ଥିଲା । ମାତ୍ର ତାହା କେଉଁ ଗ୍ରାମ, ସେ କଥା ନିଶ୍ଚିତଭାବରେ ଜଣାଯାଇନାହିଁ। ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ଶ୍ରୀଧର ସ୍ୱାମୀ ପ୍ରଭାବିତ କରିଥିବାରୁ ଚୈତନ୍ୟ ମହାପ୍ରଭୁ ଯେଉଁ ନୂତନ ଭାବପ୍ରବଣ ବୈଷ୍ଣବ ଧର୍ମ ସ୍ଥାପନ କରିଥିଲେ; ତାଙ୍କ ସଦୃଶ ବଳଦେବ ବିଦ୍ୟାଭୂଷଣ ମଧ୍ୟ ଚୈତନ୍ୟ ପ୍ରଚାରିତ ଧର୍ମମାର୍ଗ ଯାହାର ପ୍ରସାରର କେନ୍ଦ୍ରସ୍ଥଳୀ ନବଦ୍ୱୀପ ବୃନ୍ଦାବନ ଓ ଶ୍ରୀକ୍ଷେତ୍ର ଥିଲା, ତାହାର ଦାର୍ଶନିକ ତତ୍ତ୍ୱର ବ୍ୟାଖ୍ୟା କରିଥିଲେ ।

## ୨. ବଳଦେବ ବିଦ୍ୟାଭୂଷଣ:

ବଙ୍ଗଳାରେ ଲିଖିତ 'ବିଶ୍ୱକୋଷ'ର ୧୨ଶ ଭାଗର ପୃ.୧୬୯ରେ ବଳଦେବ ବିଦ୍ୟାଭୂଷଣଙ୍କ ସମ୍ପର୍କରେ ଅନେକ କଥା ଲିଖିତ ଅଛି, ଯାହାର ବିଶଦ ବିବରଣ ପରେ ବର୍ଣ୍ଣିତ ହେଉଛି । 'ବିଶ୍ୱକୋଷ'ରେ ବର୍ଣ୍ଣିତ ବିବରଣର ବିଶେଷତ୍ୱଗୁଡ଼ିକ ଏଠାରେ ଲେଖାଯାଇଛି । 'ବିଶ୍ୱକୋଷ'ରେ ବର୍ଣ୍ଣିତ ଅଛି ଯେ "ବଳଦେବ ବିଦ୍ୟାଭୂଷଣ ଜଣେ ବଙ୍ଗୀୟ ପ୍ରସିଦ୍ଧ ପଣ୍ଡିତ ଥିଲେ । (ପୃ.୬୯) । ଏହି କଥାରେ ଯେ ଆଦୌ ସତ୍ୟ ନାହିଁ ତାହା ତଳେ ବର୍ଣ୍ଣିତ ହେଉଛି । ବଳଦେବ ବିଦ୍ୟାଭୂଷଣ ପ୍ରକୃତ ଜଣେ ଓଡ଼ିଆ ବ୍ରାହ୍ମଣ ଥିଲେ ।

ଡାକ୍ତର ଫରକ୍‌ହାର ବଳଦେବ ବିଦ୍ୟାଭୂଷଣଙ୍କ ଉପରେ ଅତି ଅଳ୍ପ କଥା ଲେଖିଅଛନ୍ତି ଯାହା ତଳେ ଉଦ୍ଧୃତ ହେଲା ।

''ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ବଳଦେବ 'ବେଦାନ୍ତ ସୂତ୍ର'ର 'ଗୋବିନ୍ଦଭାଷ୍ୟ' ନାମକ ଏକ ଭାଷ୍ୟ ନିଜ ସମ୍ପ୍ରଦାୟ ପାଇଁ ଲେଖିଥିଲେ । ଏହି ଭାଷ୍ୟରେ ସେ 'ଅଚିନ୍ତ୍ୟଭେଦାଭେଦ' ନାମକ ଦାର୍ଶନିକ ତତ୍ତ୍ୱ ଆଲୋଚନା କରିଥିଲେ, ଯଦ୍ଦ୍ୱାରା ଈଶ୍ୱର ଆତ୍ମାର ସମ୍ପର୍କ ଚିନ୍ତାର ବର୍ହିଭୂତ ବୋଲି ପ୍ରତିପାଦିତ ହୋଇଅଛି ।'' (ପୃ.୩୧୧)

ଡାକ୍ତର ସୁଶୀଲ କୁମାର ଦେ ବଳଦେବ ବିଦ୍ୟାଭୂଷଣଙ୍କ କଥା ଅନେକ ଥର ଉଲ୍ଲେଖ କରିଅଛନ୍ତି ଓ ପୃ.୧୬ରେ ଲେଖିଅଛନ୍ତି ଯେ ''ବଳଦେବ ଓଡ଼ିଶାବାସୀ ଥିଲେ ଓ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଲୋକ ଥିଲେ ।''

ସ୍ୱର୍ଗୀୟ ସୁନ୍ଦରାନନ୍ଦ ବିଦ୍ୟାବିନୋଦଙ୍କର 'ଶ୍ରୀକ୍ଷେତ୍ର' ପୁସ୍ତକର ୩ୟ ସଂସ୍କରଣ ବଙ୍ଗଳା ସନ ୧୩୫୮ (ଖ୍ରୀ: ୧୯୫୧)ରେ ମୁଦ୍ରିତ ହୋଇଥିଲା । ଏହି ପୁସ୍ତକରେ ସେ ବଳଦେବ ବିଦ୍ୟାଭୂଷଣଙ୍କ ସମ୍ପର୍କରେ ବିଶଦ ବିବରଣ ଦେଇଅଛନ୍ତି । ସେ ଲେଖିଅଛନ୍ତି ଯେ ''ବଳଦେବ ବିଦ୍ୟାଭୂଷଣ ଖ୍ରୀ: ୧୮ଶ ଶତାବ୍ଦୀରେ ରେମୁଣା ନିକଟବର୍ତ୍ତୀ ଏକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜନ୍ମକାଳ ସମ୍ପର୍କରେ କିଛି ନିଶ୍ଚିତ କଥା ଜଣା ନାହିଁ । ସେ ବ୍ୟାକରଣ, ଅଳଙ୍କାରଶାସ୍ତ୍ର ଇତ୍ୟାଦି ଚିଲିକାର ଅପରପାର୍ଶ୍ୱବର୍ତ୍ତୀ ଏକ ପ୍ରସିଦ୍ଧ ପଣ୍ଡିତଙ୍କଠାରୁ ଶିକ୍ଷା କରିଥିଲେ । ତପରେ ସେ ନ୍ୟାୟ ଓ ବେଦ ପାଠ କରି ବେଦାନ୍ତ ଶିକ୍ଷା କରିବାକୁ ମହୀଶୂର ଯାଇଥିଲେ । ସେ ତତ୍ତ୍ୱବାଦୀ ସମ୍ପ୍ରଦାୟରେ ଦୀକ୍ଷିତ ହୋଇଥିଲେ ଓ ଅନେକ ପଣ୍ଡିତମାନଙ୍କ ସହିତ ଯୁକ୍ତିତର୍କ କରି ସୁଖ୍ୟାତି ଅର୍ଜନ କରିଥିଲେ । ସେ ପୁରୀର ତତ୍ତ୍ୱବାଦୀ ମଠରେ ଅବସ୍ଥାନ କରୁଥିଲେ । କିୟତ୍‌କାଳ ପରେ ସେ ରସିକାନନ୍ଦ ଦେବ ଗୋସ୍ୱାମୀଙ୍କର ଶିଷ୍ୟ ରାଧାଦାମୋଦରଙ୍କ ଦ୍ୱାରା ଦୀକ୍ଷିତ ହୋଇଥିଲେ । ସେ ଷଟ୍‌-ସନ୍ଦର୍ଭର ଟୀକା କରିଥିଲେ । ସେ ଜୟପୁର ରାଜ୍ୟର ଗାଲତା ସଭାରେ ବିଦ୍ୟାଭୂଷଣ ଉପାଧି ପାଇଥିଲେ ଓ ସେଠାରେ 'ଗୋବିନ୍ଦ ଭାଷ୍ୟ' ରଚନା କରିଥିଲେ । କେହି କେହି କହନ୍ତି ଯେ ସେ ବିଶ୍ୱନାଥ-ଚକ୍ରବର୍ତ୍ତୀଙ୍କଠାରୁ 'ଭାଗବତ' ପାଠ କରିଥିଲେ । ପରେ ସେ ଏକାନ୍ତୀ ହୋଇ 'ଏକାନ୍ତୀ-ଗୋବିନ୍ଦ ଦାସ' ନାମ ଗ୍ରହଣ କରିଥିଲେ ।''

ମୁଁ ବଳଦେବ ବିଦ୍ୟାଭୂଷଣଙ୍କର ଇତିହାସ ସଂଗ୍ରହ ପାଇଁ ବହୁବର୍ଷ ଆଗରୁ ଯତ୍ନ କରୁଥିଲି; କିନ୍ତୁ ତାଙ୍କ ଉପରେ କୌଣସି ବିଶ୍ୱାସଯୋଗ୍ୟ କଥା ପାଇପାରି ନଥିଲି । ଏପରିକି

ଗୋପୀବଲ୍ଲଭପୁର ମଠରୁ ତାଙ୍କ ସମ୍ପର୍କରେ କୌଣସି ତଥ୍ୟ ସଂଗ୍ରହ କରିପାରି ନଥିଲି -- କେବଳ ଏତିକି ଜାଣିଥିଲି ଯେ ସେ ଶ୍ୟାମାନନ୍ଦ ସମ୍ପ୍ରଦାୟଭୁକ୍ତ ଥିଲେ ଓ ବ୍ରହ୍ମସୂତ୍ରର 'ଅଚିନ୍ତ୍ୟ-ଭେଦାଭେଦ' ଭାଷ୍ୟ ରଚନା କରିଥିଲେ । ମୋର ବନ୍ଧୁ ଶ୍ରୀ କୁଳମଣି ମହାନ୍ତି ବାରିପଦାରୁ ୧୯୬୨ରେ ବୃନ୍ଦାବନ ଯାଇଥିଲେ । ତାଙ୍କୁ ଅନୁରୋଧ କରିଥିଲି ଯେ ସେ ବଳଦେବ ବିଦ୍ୟାଭୂଷଣଙ୍କ ସମ୍ପର୍କରେ ବୃନ୍ଦାବନରେ ପ୍ରଚଳିତ କିମ୍ବଦନ୍ତୀ ଯାହା ପାଇବେ, ତାହା ମୋ ଲାଗି ଲେଖିଆଣିବେ । କୁଳମଣିବାବୁଙ୍କ ଲେଖାରୁ କେତେକ ନୂତନ ତଥ୍ୟ ସଂଗ୍ରହ କରିଥିଲି ଓ ଜୟପୁରର ଗାଲତା ସଭାର କଥା ଜାଣିଥିଲି । ତପରେ ୧୯୬୫ ସେପ୍ଟେମ୍ବରରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରର 'ଭକ୍ତବିନୋଦ ଆଶ୍ରମ'ରୁ ପ୍ରକାଶିତ ଗ୍ଡ଼ିଖଣ୍ଡ ବହି ପାଇଲି, ଯାହାର ଲେଖକ ବଳଦେବ ବିଦ୍ୟାଭୂଷଣ । ସେଗୁଡ଼ିକ ବଙ୍ଗଳାରୁ ଅନୁବାଦିତ ହୋଇଥିଲେ ମଧ୍ୟ ସେଥିରେ ବଳଦେବ ବିଦ୍ୟାଭୂଷଣଙ୍କର ଇତିହାସ କଥକ ପରିମାଣରେ ଅଛି; ମାତ୍ର ତହିଁରେ ଦିଆଯାଇଥିବା ସମୟରେ ଭୁଲ୍ ଅଛି । ଏହି ପୁସ୍ତକଗୁଡ଼ିକରେ ବଳଦେବ ବିଦ୍ୟାଭୂଷଣ ଜାତିରେ ଖଣ୍ଡାୟତ ଥିବାର କଥା ଲେଖା ଅଛି; କିନ୍ତୁ ଅନ୍ୟ ଲେଖାରୁ ଜଣାଯାଏ ଯେ ସେ ବ୍ରାହ୍ମଣ ଥିଲେ । ବ୍ରହ୍ମପୁରର ଭକ୍ତିବିନୋଦ ଆଶ୍ରମରୁ ପ୍ରକାଶିତ ବହିଗୁଡ଼ିକର ଲେଖକ ଥିଲେ ଭକ୍ତିବିନୋଦ ଠାକୁର । ବହିଗୁଡ଼ିକ ବଙ୍ଗଳାରେ ମୁଦ୍ରିତ ହୋଇଥିଲା ।

ତତ୍ପରେ ୧୯୬୫ ଅକ୍ଟୋବରରେ ମୋର ବନ୍ଧୁ ଭକ୍ତିବିନୋଦ ଠାକୁରଙ୍କ ପୁତ୍ର ଶ୍ରୀ ଲଳିତ ପ୍ରସାଦ ଦତ୍ତ - ଯେ କି ବର୍ତ୍ତମାନ ବାବାଜୀ ହୋଇ ଶ୍ରୀ ଲଳିତ ପ୍ରସାଦ ନାମ ଗ୍ରହଣ କରିଅଛନ୍ତି ଓ ଭକ୍ତିବିନୋଦ ଠାକୁରଙ୍କ ଜନ୍ମସ୍ଥାନ ଉଲାବୀର ନଗରରେ ନଦିଆ ଜିଲ୍ଲାରେ ଅବସ୍ଥାନ କରୁଅଛନ୍ତି । ସେ ଦୟାପୂର୍ବକ ଖ୍ରୀ: ୧୮୬୫ରେ ମୁଦ୍ରିତ 'ସଜ୍ଜନ-ତୋଷଣୀ' ପତ୍ରିକାରେ ପ୍ରକାଶିତ ବଳଦେବ ବିଦ୍ୟାଭୂଷଣଙ୍କର ଜୀବନୀ ଉପରେ ଏକ ଉପାଦେୟ ବଙ୍ଗଳା ଲେଖାର ନକଲ ମୋତେ ପଠାଇଲେ । ଏହି ଲେଖାର ଲେଖକ ହେଉଛନ୍ତି ଗୋପୀବଲ୍ଲଭପୁରର ସ୍ୱର୍ଗୀୟ ବିଶ୍ୱମ୍ଭର ନନ୍ଦ ଦେବ ଗୋସ୍ୱାମୀ, ଯେ କି ଜଣେ ଖ୍ୟାତନାମା ପଣ୍ଡିତ ଥିଲେ । ବିଶ୍ୱମ୍ଭର ନନ୍ଦ ଥିଲେ ଗୋପୀବଲ୍ଲଭପୁର ମଠର ମହନ୍ତବଂଶୀୟ । ଏଣୁ ଶ୍ୟାମାନନ୍ଦ ସମ୍ପ୍ରଦାୟର ଇତିହାସ ଉପରେ ତାଙ୍କର କଥା ବିଶେଷ ପ୍ରମାଣମୂଳକ ବୋଲି ମୁଁ ଗ୍ରହଣ କରିଅଛି ।

'ସଜ୍ଜନ-ତୋଷିଣୀ'ରେ ପ୍ରକାଶିତ ବଳଦେବ ବିଦ୍ୟାଭୂଷଣଙ୍କର ଜୀବନୀର ଓଡ଼ିଆ ଅନୁବାଦ କରି ତାହାପରେ ପ୍ରକାଶିତ କରିବାର ଇଚ୍ଛା ଅଛି । ସେହି ଲେଖାର ସାରାଂଶ ତଳେ ବିବୃତ ହେଲା । ବିଶ୍ୱମ୍ଭର ନନ୍ଦ ଦେବ ଗୋସ୍ୱାମୀଙ୍କର ଲେଖା ୮୦ ବର୍ଷ ପୂର୍ବବର୍ତ୍ତୀ

ହୋଇଥିବାରୁ ସେ ଯେଉଁ କିମ୍ବଦନ୍ତୀ ଉପରେ ନିର୍ଭର କରିଥିଲେ, ତହିଁରେ ସତ୍ୟ ନିହିତ ଥିବାର ଅନୁମିତ ହୁଏ । ଯେତେବେଳେ କୌଣସି ସମସାମୟିକ ଲେଖା ମିଳୁନାହିଁ, ସେତେବେଳେ କିମ୍ବଦନ୍ତୀ ଇତିହାସ ସଂକଳନର ଏକମାତ୍ର ଉପାୟ ମାତ୍ର ।

ବିଶ୍ୱମ୍ଭର ନନ୍ଦଙ୍କ ଲେଖାରୁ ଜଣାଯାଏ ଯେ ବଳଦେବ ବିଦ୍ୟାଭୂଷଣ ବ୍ରାହ୍ମଣ ବଂଶଜ ଥିଲେ ଓ ଭକ୍ତିବିନୋଦ ଠାକୁରଙ୍କ ଲେଖାରୁ ଜଣାଯାଏ ଯେ ସେ ଖଣ୍ଡାୟତ ବଂଶଜ ଥିଲେ । ଏ ଦୁଇଟିରୁ କେଉଁଟି ସତ୍ୟ ? ବିଶ୍ୱମ୍ଭର ନନ୍ଦ ଶ୍ୟାମାନନ୍ଦ ସମ୍ପ୍ରଦାୟଭୁକ୍ତ ଥିବାରୁ ଓ ବଳଦେବ ସେହି ସମ୍ପ୍ରଦାୟଭୁକ୍ତ ଥିବାରୁ ବିଶ୍ୱମ୍ଭର ନନ୍ଦଙ୍କର ଲେଖା ଅଧିକ ବିଶ୍ୱାସଯୋଗ୍ୟ । ବଳଦେବ ବିଦ୍ୟାଭୂଷଣ ଦୀର୍ଘକାଳ ବୃନ୍ଦାବନ ଓ ତତ୍‌ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ରହିଥିଲେ । ଏହି ଅବସ୍ଥାନ କାଳରେ ଜୟପୁର ରାଜ୍ୟର ଅନ୍ତର୍ଭୁକ୍ତ ଗାଲତା ଗାଦିର ସଭାରେ ଯେ ଯୋଗ ଦେଇଥିବାର କଥା ବିଶ୍ୱମ୍ଭର ନନ୍ଦ ଦେବ ଗୋସ୍ୱାମୀ ଲେଖିଅଛନ୍ତି । ଗାଲତା ଗାଦିର ଆଲୋଚନାର କଥା ତଳେ ଲିଖିତ ହେଲା ।

'ବୃନ୍ଦାବନ ବା ତତ୍‌ପାର୍ଶ୍ୱବର୍ତ୍ତୀ ବ୍ରଜମଣ୍ଡଳର କୌଣସି ସ୍ଥାନରେ ଅବସ୍ଥାନ କରିବା ସମୟରେ ଦାକ୍ଷିଣାତ୍ୟର ଶ୍ରୀ ସମ୍ପ୍ରଦାୟର ବୈଷ୍ଣବମାନେ ଜୟପୁର ରାଜ୍ୟ ଅନ୍ତର୍ଗତ 'ଗାଲତା' ଗାଦିକୁ ଆସିଥିଲେ ଓ ସେଠାରେ ଶ୍ରୀଚୈତନ୍ୟ ସମ୍ପ୍ରଦାୟ ବୈଷ୍ଣବମାନେ ରାଧାକୃଷ୍ଣ ମୂର୍ତ୍ତି ପୂଜା କରିବାରେ ଆପତ୍ତି ଉଠାଇଥିଲେ ଓ ଶ୍ରୀଚୈତନ୍ୟ ସମ୍ପ୍ରଦାୟର ନିବନ୍ଧ ବା ବ୍ରହ୍ମସୂତ୍ରର ଭଗବତ୍ ଗୀତା ଓ ବଂଶୋପନିଷଦର ସାମ୍ପ୍ରଦାୟିକ ଭାଷ୍ୟ ଦେଖାଇ ଧର୍ମମତ ପ୍ରମାଣ କରିବାକୁ ହେବ । ଏଥିପାଇଁ ଜୟପୁରର ମହାରାଜା ସବାଇ ଜୟସିଂହ ବୃନ୍ଦାବନର ସନ୍ନ୍ୟାସୀମାନଙ୍କ ପାଖିକୁ ଲୋକ ପଠାଇଲେ । ତହୁଁ ବଳଦେବ ବିଦ୍ୟାଭୂଷଣ ଜୟପୁର ଯାଇ ଗାଲତା ସଭାରେ ପ୍ରସ୍ଥାନତ୍ରୟୀର ଭାଷ୍ୟ ଦେଖାଇ ଧର୍ମ ସମ୍ପ୍ରଦାୟର ମତ ସ୍ଥାପନ କଲେ ଓ ପ୍ରତିଦ୍ୱନ୍ଦ୍ୱୀ ବୈଷ୍ଣବ ସମ୍ପ୍ରଦାୟ ସବୁ ତାହା ସ୍ୱୀକାର କଲେ । ବିଦ୍ୟାଭୂଷଣଙ୍କର ଭାଷ୍ୟଗୁଡ଼ିକର ନାମ 'ଗୋବିନ୍ଦ ଭାଷ୍ୟ' ଓ ବ୍ରହ୍ମସୂତ୍ରର ଭାଷ୍ୟରେ ସେ 'ଅଚିନ୍ତ୍ୟ ଭେଦାଭେଦ' ମତ ସ୍ଥାପିତ କରିଅଛନ୍ତି ।

କିମ୍ବଦନ୍ତୀଗୁଡ଼ିକରୁ ଜୟପୁରର ମହାରାଜା ସବାଇ ଜୟସିଂହ ଓ ଗାଲତା ଗାଦିର କଥା ଜଣାଯାଏ; ମାତ୍ର କୌଣସିଟିରେ ସମୟସୂଚକ ପ୍ରମାଣ ମିଳେନାହିଁ । ବୈଷ୍ଣବ ସନ୍ନ୍ୟାସୀମାନେ ସମୟ ପ୍ରତି ବିଶେଷ ଦୃଷ୍ଟି ଦିଅନ୍ତି ନାହିଁ; କିନ୍ତୁ ଜୟପୁର ରାଜ୍ୟର ଇତିହାସରୁ ବଳଦେବ ବିଦ୍ୟାଭୂଷଣଙ୍କର ସମୟ ନିରୂପଣ ଅତି ସହଜର ହୋଇଅଛି ।

ରାଜପୁତନାର ଜୟପୁର ରାଜ୍ୟର ପ୍ରାଚୀନ ନାମ ଅମ୍ବେର ଥିଲା, କାରଣ ସେଠାରେ ରାଜଧାନୀ ଥିଲା । ଜୟ ସିଂହ ୨ୟ ଅମ୍ବେରରେ ଖ୍ରୀ: ୧୬୯୯ରେ ସିଂହାସନରେ ବସିଥିଲେ ।

ସେ ମୋଗଲ ଦରବାରରୁ ସବାଇ (୧.୧/୪) ଉପାଧି ପାଇ ସବାଇ ଜୟ ସିଂହ ୨ୟ ନାମରେ ଇତିହାସରେ ପରିଚିତ । ସେ ଖ୍ରୀ. ୧୭୨୮ରେ ରାଜ୍ୟର ରାଜଧାନୀ ଅମ୍ବେରରୁ ଜୟପୁରକୁ ଉଠାଇ ଆଣିଲେ ଓ ତଦନୁସାରେ ରାଜ୍ୟର ନାମ ମଧ୍ୟ ଜୟପୁର ହେଲା । ଜୟପୁର ରାଜଧାନୀର ଅଦୂରବର୍ତ୍ତୀ ଏକ ପାହାଡ଼ର ନାମ 'ଗାଲତା' ପାହାଡ଼ । ସେ ସେଠାରେ ଗୋବିନ୍ଦଜୀଙ୍କର ମନ୍ଦିର ସ୍ଥାପନ କରିଥିଲେ । ଏଣୁ ବୈଷ୍ଣବମାନେ ତାକୁ 'ଗାଲତା ଗାଦି' କହନ୍ତି । ଦାକ୍ଷିଣାତ୍ୟର ବୈଷ୍ଣବମାନେ କେବେ ଜୟପୁର ଆସିଥିଲେ ତାହା ଜଣାଯାଏ ନାହିଁ । ଯଦି ରାଜଧାନୀର ବିକାଶ ପାଇଁ ୮/୧୦ବର୍ଷ ଲାଗିଥାଏ, ତେବେ ଗାଲତା ସମ୍ମିଳନୀ ଖ୍ରୀ: ୧୭୩୫ ଠାରୁ ଖ୍ରୀ: ୧୭୪୦ ମଧ୍ୟରେ ଧରାଯାଇପାରେ । ସବାଇ ଜୟ ସିଂହ ୨ୟ ଖ୍ରୀ: ୧୭୪୩ରେ ଇହଲୀଳା ସାଙ୍ଗ କରିଥିଲେ । ଏଣୁ ଗାଲତା ସମ୍ମିଳନୀକୁ ଖ୍ରୀ: ୧୭୪୦ ଧରାଗଲେ ଇତିହାସରେ ସେପରି କିଛି ବ୍ୟତିକ୍ରମ ହେବନାହିଁ । ଖ୍ରୀ: ୧୭୪୦ ବେଳକୁ ବଳଦେବ ବିଦ୍ୟାଭୂଷଣ ଯୁବକ ଥିଲେ । ତେଣୁ ତାଙ୍କର ଜନ୍ମକାଳ ଖ୍ରୀ: ୧୭୧୦ ଧରାଯାଇପାରେ । ବର୍ତ୍ତମାନ ଦେଖାଯାଉ ସେ କେତେ କାଳ ବଞ୍ଚିଥିଲେ । ଡାକ୍ତର ସୁଶୀଲ କୁମାର ଦେ ଲେଖିଅଛନ୍ତି ଯେ ବଳଦେବ ବିଦ୍ୟାଭୂଷଣ ଖ୍ରୀ: ୧୭୬୫ରେ ରୂପଗୋସ୍ୱାମୀଙ୍କର 'ସ୍ତବାବଳୀ'ର 'ଉତ୍କଳିକାବଲ୍ଲରୀ' ଟୀକା ଲେଖିଥିଲେ । ଏଣୁ ସେ ଖ୍ରୀ: ୧୭୬୫ ଯାଏଁ ଜୀବିତ ଥିଲେ। ବିଶ୍ୱମ୍ଭରୀ ନନ୍ଦ ଲେଖିଅଛନ୍ତି ଯେ ଶହେ ବର୍ଷ ଯାଏଁ ବଞ୍ଚିଥିବା ଲୋକ ବଳଦେବ ବିଦ୍ୟାଭୂଷଣଙ୍କୁ ଦେଖିଥିଲେ ଅର୍ଥାତ୍ ଖ୍ରୀ: ୧୮୮୫-୧୦୦ ଖ୍ରୀ: ୧୭୮୫ ଓ ତହିଁରେ ୧୦ ବର୍ଷ ଯୋଗକଲେ ଖ୍ରୀ: ୧୭୯୫ ପର୍ଯ୍ୟନ୍ତ ବଳଦେବ ବିଦ୍ୟାଭୂଷଣ ଜୀବିତ ଥିବାର ଅର୍ଥାତ୍ ୮୫ ବର୍ଷ ପର୍ଯ୍ୟନ୍ତ ଜୀବିତ ଥିବାର ଅନୁମାନ କରାଯାଇପାରେ । ଯାହାହେଉ ବଳଦେବ ବିଦ୍ୟାଭୂଷଣ ଦୀର୍ଘଜୀବୀ ଥିଲେ ।

ବଳଦେବ ବିଦ୍ୟାଭୂଷଣ ୨୪ଟି ଗ୍ରନ୍ଥର ଟୀକା କରିଅଛନ୍ତି । ସେ ସମସ୍ତ ଗ୍ରନ୍ଥ ବୈଷ୍ଣବ ସମ୍ପ୍ରଦାୟର ଉପାଦେୟ ଗ୍ରନ୍ଥ ।

ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ମରାଇଗାଁ ଆବିଷ୍କୃତ ହେଲାପରି ରେମୁଣା ଓ ତନ୍ନିକଟବର୍ତ୍ତୀ ଶିକ୍ଷିତ ଗ୍ରାମବାସୀମାନେ ଚେଷ୍ଟା କଲେ ବଳଦେବ ବିଦ୍ୟାଭୂଷଣଙ୍କର ଜନ୍ମସ୍ଥାନ ନିଶ୍ଚୟ ଆବିଷ୍କୃତ ହୋଇପାରିବ ।



ଝଙ୍କାର, ୧୭/୧୦

# ତାଳଚେର ଇତିହାସ ଓ ତାଳଚେର ଅଞ୍ଚଳର ଐତିହାସିକ ଉପାଦାନ

୧୯୩୪ ରେ ତାଳଚେରର ସ୍ୱନାମପ୍ରସିଦ୍ଧ ପଣ୍ଡିତ ସ୍ୱର୍ଗୀୟ ଘନଶ୍ୟାମ ମିଶ୍ର କବିଭୂଷଣ ତାଳଚେର ଇତିହାସ ପୁସ୍ତକାକାରରେ ମୁଦ୍ରିତ କରି ଧନ୍ୟବାଦାର୍ହ ହୋଇଥିଲେ । ତାଳଚେରର ଇତିହାସ ସଂକଳନ ପାଇଁ ତାଙ୍କର ଉଦ୍ୟମ ଅତୀବ ପ୍ରଶଂସନୀୟ । ସେ ନିବେଦନରେ ଲେଖିଅଛନ୍ତି --

"କ୍ଷୁଦ୍ର ତାଳଚେର କଥା ତେଣିକି ଥାଉ, ସମଗ୍ର ଗଡ଼ଜାତ-ଭୂଖଣ୍ଡର ପ୍ରକୃତ ଇତିହାସ ସଙ୍କଳନ କରିବା କେଡ଼େ ସୁକଠିନ, ତାହା ଇତିହାସ ତତ୍ତ୍ୱବେତ୍ତାମାନଙ୍କ ନିକଟରେ ଅଧିକ ଲେଖିବା ଅନାବଶ୍ୟକ । ଆମ୍ଭେ ଗତ ୨୫ ବର୍ଷ ହେଲା ସ୍ଥାନୀୟ ଇତିହାସ ସଂଗ୍ରହ ଚେଷ୍ଟାରେ ଲାଗି ଆଜି 'ସଫଳକାମ' ହୋଇଅଛୁଁ । ପ୍ରଥମେ ବାବୁ ଜଗବନ୍ଧୁ ଘୋଷ ଦେୱାନଙ୍କର ସନ ୧୮୯୨ ମସିହାର ରିପୋର୍ଟ, ଯାହାକି ମହାମାନ୍ୟ ଗଭର୍ଣ୍ଣମେଣ୍ଟଙ୍କ ପ୍ରଶ୍ନମତେ ପଠାଯାଇଅଛି, ଅଫିସରୁ ତାହା ପାଇବାରୁ ଏହି ଇତିହାସ ସଂଗ୍ରହର ରାସ୍ତା ପାଇପାରିଲା ପରେ ଯାହା ଯାହା ସନ୍ଦେହ ହୋଇଅଛି, ତାହା ଦୂର ହେବାନିମନ୍ତେ ଯାହା ଯାହା ଅନୁସନ୍ଧାନ କରିଅଛୁଁ, ତାହା ପାଇ ପାରିଅଛୁଁ । ଏହି ଇତିହାସ ସଂଗ୍ରହ ଏବଂ ସନ୍ଦେହ ଅପନୋଦନ ନିମନ୍ତେ ଆମ୍ଭେ ସିଂହଭୂମ୍, ବଣାଇ, ବାମଣ୍ଡା, ପାଲଲହଡ଼ା, ଅନୁଗୋଳ, ଢେଙ୍କାନାଳ ଏବଂ ହିନ୍ଦୋଳ ଯାଇ ବହୁ ସାହାଯ୍ୟ ପାଇଅଛୁ ।"

ଲେଖକମହୋଦୟଙ୍କ ଏହି ଲେଖାରୁ ଦେଖାଯାଉଛି ଯେ ସେ ପାର୍ବତ୍ୟାଞ୍ଚଳ ବ୍ରାହ୍ମଣୀ ନଦୀର ଉପତ୍ୟକାରେ ଅବସ୍ଥିତି ସମସ୍ତ ତତ୍କାଳୀନ ଦେଶୀୟ ରାଜ୍ୟ ଭ୍ରମଣ କରିଥିଲେ । ଏଣୁ ତାଳଚେର ଇତିହାସରେ ଏହି ସମସ୍ତ ଅଞ୍ଚଳର ଇତିହାସ ପ୍ରାଚୀନ କାଳରୁ ଆଧୁନିକ କାଳ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି ବୋଲି ଧରିନେବାକୁ ହେବ । ଏହି ପ୍ରବନ୍ଧରେ ମୋର ଆଲୋଚ୍ୟ ବିଷୟ ଏହି ଯେ ପାର୍ବତ୍ୟାଞ୍ଚଳ ବ୍ରାହ୍ମଣୀ ଉପତ୍ୟକା ଆଧୁନିକ ସଙ୍କଳିତ ଇତିହାସ ସହିତ ପ୍ରତ୍ନତାତ୍ତ୍ୱିକ ଇତିହାସ ମଧ୍ୟରେ ଯେ ଆଦୌ ସାମଞ୍ଜସ୍ୟ ନାହିଁ, ତାହା ପାଠକମାନଙ୍କ ଆଗରେ ଉପସ୍ଥାପିତ କରିବା ଯେତେ ଆବଶ୍ୟକ, ଓଡ଼ିଶାର ପ୍ରାଚୀନ ଇତିହାସ ଲେଖିବା ପାଇଁ ପ୍ରତ୍ନତତ୍ତ୍ୱର ଉପାଦାନ ପ୍ରତି ଦୃଷ୍ଟିଦେବା ସେତେ ଆବଶ୍ୟକ ।

୧୯୨୮ ଆଗରୁ ବ୍ରାହ୍ମଣୀ ଉପତ୍ୟକାର ଅଞ୍ଚଳ ଦେଶୀୟ ରାଜ୍ୟସମୂହରେ ବିଭକ୍ତ ହୋଇଥିଲା । ଏହିସବୁ ରାଜ୍ୟରେ ଥିବା ପ୍ରତ୍ନସମ୍ପଦ ପ୍ରତି କାହାରି ଦୃଷ୍ଟି ପଡ଼ି ନଥିଲା; ମୋର ବନ୍ଧୁ ଶ୍ରୀ ସୁଧାକର ପଟ୍ଟନାୟକ ପ୍ରଥମେ ସ୍ତମ୍ଭବଂଶୀୟ ତମ୍ବାପଟାରେ ଲିଖିତ ଥିବା 'କୋଦାଳକ' ମଣ୍ଡଳର ରାଜଧାନୀ କୋଦାଳକ ଯେ ଢେଙ୍କାନାଳ ରାଜ୍ୟର 'କୋଆଲୁ' ବୋଲି ଚିହ୍ନିତ କରିଥିଲେ; କିନ୍ତୁ ତତ୍‌ପ୍ରତି ପ୍ରାୟ କାହାରି ଦୃଷ୍ଟି ପଡ଼ି ନଥିଲା ବା ନାହିଁ । ମୁଁ ୧୯୨୮ରେ ତାଳଚେରରୁ କୋଆଲୁ ଦେଖିବାକୁ ଯାଇ ପଟ୍ଟନାୟକ ମହାଶୟଙ୍କର ଉକ୍ତିରେ ସତ୍ୟତା ଥିବାର ପ୍ରମାଣ ପାଇଥିଲି; କିନ୍ତୁ ସେତେବେଳେ ତାଳଚେରର ଅଦୂରବର୍ତ୍ତୀ ସରାଙ୍ଗ ଗ୍ରାମରେ ଢେଙ୍କାନାଳ ସୀମାରେ ବ୍ରାହ୍ମଣୀ ନଦୀଗର୍ଭରେ ଦୀର୍ଘକାୟ ଅନନ୍ତଶାୟୀ ବିଷ୍ଣୁ ମୂର୍ତ୍ତି ଖୋଦିତ ଥିବାର କଥା ଶୁଣି ନ ଥିବାରୁ ଦେଖିପାରି ନଥିଲି । ତତ୍ପରେ ୧୯୪୬ରେ ଅନୁଗୋଳରୁ ଶ୍ରୀରାଧାମୋହନ ଗଡ଼ନାୟକ ଓ ମୋର ଜ୍ୟେଷ୍ଠ ଜାମାତା ଶ୍ରୀ ନାରାୟଣୀ ମହାପାତ୍ରଙ୍କ ସହିତ ସରାଙ୍ଗର ବିଷ୍ଣୁମୂର୍ତ୍ତି ଦେଖିବାର ସୁଯୋଗ ପାଇଥିଲି । ସରାଙ୍ଗ ଯିବାପାଇଁ ତାଳଚେରର ତତ୍‌କାଳୀନ ରାଜାସାହେବ ମୋର ସମସ୍ତ ସୁବିଧା କରି ଦେଇଥିଲେ ।

ତାଳଚେର ଇତିହାସ ମୁଦ୍ରିତ ହେବା ଆଗରୁ ତାଳଚେରରୁ ଅନେକଗୁଡ଼ିଏ ତମ୍ବାପଟା ମିଳିଥିବାର ବିବରଣ ମିଳେ । ବଙ୍ଗଳାପ୍ରସିଦ୍ଧ ବିଶ୍ୱକୋଷ ସଂପାଦକ ନଗେନ୍ଦ୍ରନାଥ ବସୁଙ୍କ ଦ୍ୱାରା ଲିଖିତ **Archaeological Survey Mayurbhanj Vol: I** ପୁସ୍ତକ, ଯାହାକି ୧୯୧୪ରେ ମୁଦ୍ରିତ ହୋଇଥିଲା, ତହିଁରେ ତାଳଚେରରୁ ମିଳିଥିବା କେତେଖଣ୍ଡି ସ୍ତମ୍ଭରାଜବଂଶୀୟ ଓ ତୁଙ୍ଗ ରାଜବଂଶୀୟ ରାଜାମାନଙ୍କର ତମ୍ବାପଟା ମୁଦ୍ରିତ ହୋଇଥିଲା । ତତ୍ପରେ ୧୯୧୬ରେ ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରିକାରେ ଢେଙ୍କାନାଳରୁ ମିଳିଥିବା ଭୌମବଂଶୀୟ, ସ୍ତମ୍ଭବଂଶୀୟ, ତୁଙ୍ଗବଂଶୀୟ ଇତ୍ୟାଦି ରାଜବଂଶର ସାତ ଖଣ୍ଡି ତମ୍ବାପଟା ମୁଦ୍ରିତ ହୋଇଥିଲା । ୧୯୩୦ରେ ପଣ୍ଡିତ ବିନାୟକ ମିଶ୍ରଙ୍କ ଦ୍ୱାରା ହିନ୍ଦୋଳରୁ ମିଳିଥିବା ଖଣ୍ଡିଏ ଭୌମବଂଶୀୟ ତମ୍ବାପଟା ମୁଦ୍ରିତ ହୋଇଥିଲା, ତତ୍ପରେ ୧୯୩୦ରେ ପଣ୍ଡିତ ବିନାୟକ ମିଶ୍ରଙ୍କ ଦ୍ୱାରା ଲିଖିତ 'ଭୌମ ରାଜବଂଶ' ଇଂରାଜୀ ପୁସ୍ତକରେ ତାଳଚେରରୁ ମିଳିଥିବା ତିନୋଟି ତମ୍ବାପଟା ଓ ଅନୁଗୋଳରୁ ମିଳିଥିବା ଆଉ ଖଣ୍ଡିଏ ତମ୍ବାପଟା ପ୍ରକାଶିତ ହୋଇଥିଲା; କିନ୍ତୁ ଏହିସବୁ ତମ୍ବାପଟା ଓ ପ୍ରତ୍ନକୀର୍ତ୍ତିର କଥା ପଣ୍ଡିତ ଘନଶ୍ୟାମ କବି ଭୂଷଣଙ୍କର ଦୃଷ୍ଟିଗୋଚରକୁ ଆସିଥିଲା ପରି ମନେ ହୁଏନାହିଁ । କାରଣ ସେ ତତ୍ ସଂପର୍କରେ କିଛି ଲେଖିନାହାନ୍ତି ।

ପକ୍ଷାନ୍ତରେ ସେ ନିମ୍ନଲିଖିତ ବିଷୟ ତାଙ୍କର ବହିରେ ଲେଖିଅଛନ୍ତି ।

"ଏହି ଗଡ଼ଜାତ ରାଜ୍ୟଗୁଡ଼ିକ ଆଜିକାଲି ଯେପରି ଅବସ୍ଥାରେ ଦେଖାଯାଏ, ଛଅ, ସାତଶହ ବର୍ଷ ପୂର୍ବରୁ ସେପରି ନଥିଲା, ଖଣ୍ଡ ବିଖଣ୍ଡିତଭାବେ କେତେଗୁଡ଼ିଏ ଅନାର୍ଯ୍ୟବସତି କେବଳ ତତ୍‌କାଳୀନ ନିରନ୍ଧ୍ର ଗହନକାନନର କିୟତ୍‌ସ୍ଥାନ ପୂରଣ କରିଥିଲା । ଅନାର୍ଯ୍ୟମାନେ ଦଳ ବା ସଂଘ ଅନୁଷ୍ଠାନରେ ବସବାସ କରିଥା'ନ୍ତି; କେତେଗୁଡ଼ିଏ ଏକଜାତୀୟ ପରିବାରର ସମଷ୍ଟିରେ ଗୋଟିଏ ଦଳ ଗଠିତ ହୁଏ, ସର୍ବାପେକ୍ଷା ଜ୍ୟେଷ୍ଠ ସେହି ଦଳର ନେତା ବା ନାୟକରୂପରେ ଅଭିହିତ ହୁଅନ୍ତି ଏବଂ ସ୍ୱୀୟ ଦଳର ସମସ୍ତପ୍ରକାର ଅଧିକାର ପ୍ରାପ୍ତ ହୁଅନ୍ତି । ଇତ୍ୟାଦି ।

ତତ୍ପରେ ୨ୟ ଅଧ୍ୟାୟରେ ତାଳଚେର ରାଜ୍ୟର ଆଦିମ ଅବସ୍ଥା ସଂପର୍କରେ ସେ ଲେଖିଅଛନ୍ତି

"ଅନ୍ୟ ସମସ୍ତ ଗଡ଼ଜାତ ରାଜ୍ୟପରି ତ୍ରୟୋଦଶ ଶତାବ୍ଦୀ ଶେଷଭାଗ ପର୍ଯ୍ୟନ୍ତ ତାଳଚେର ରାଜ୍ୟ ନିବିଡ଼ ଅରଣ୍ୟମୟ ଓ ସ୍ଥାନେ ସ୍ଥାନେ କେତେକ ଅନାର୍ଯ୍ୟଜାତିଙ୍କର ବାସସ୍ଥାନ ଥିଲା; ପାଣ, ନହୁରା, ତଅଁଳା, କନ୍ଧ, ଗଣ୍ଡ, ଚମାର, ଘଣ୍ଟରା ଜାତୀୟ ଲୋକ ନିତାନ୍ତ ଅଳ୍ପ ଥିଲେ । ଅଧିକାଂଶ ବୋଇତା ଶହରଜାତୀୟ ଲୋକ ଥିଲେ; ଅବଧି ମଧ୍ୟ ଏହି ବୋଇତା ଶହର ଡେରଙ୍ଗ ଜିଲ୍ଲାରେ ରହିଅଛନ୍ତି, ସେହି ବୋଇତା ଶହରମାନେ ଏହି ବନଖଣ୍ଡରେ ରାଜତ୍ୱ କରୁଥିଲେ । x x x କିନ୍ତୁ ଚତୁର୍ଦ୍ଦଶ ଶତାବ୍ଦୀ ପ୍ରାରମ୍ଭରେ ଚତୁର କୃଷିଜୀବୀ ପଞ୍ଚତିହା ଗ୍ରୃଷାମାନେ ଏ ଅଞ୍ଚଳକୁ ଆସି ଭଲ ଭଲ ସ୍ଥାନମାନ ଅଧିକାର ଓ ଜମି ନିର୍ମାଣ କରି ଧାନ ରବିଫସଲମାନ ଆରମ୍ଭ କଲେ ।"

ଏହି ଲେଖାରୁ ସ୍ପଷ୍ଟ ଜଣାଯାଉଅଛି ଯେ ଖ୍ରୀଷ୍ଟୀୟ ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ତାଳଚେର ଅଞ୍ଚଳରେ ଓଡ଼ିଶାର ସଭ୍ୟତା ଯେପରି କି ପ୍ରବେଶ କରି ନ ଥିଲା। ଲେଖକଙ୍କ କଥା ସତ୍ୟ ରୂପେ ମାନିନେଲେ ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ଶତାବ୍ଦୀରେ ତାଳଚେର ଅଞ୍ଚଳରେ ବିଶିଷ୍ଟ ଆର୍ଯ୍ୟସଭ୍ୟତାର ଚିହ୍ନସ୍ୱରୂପ ବହୁ ପ୍ରାଚୀନ କୀର୍ତ୍ତି ଓ ଅଷ୍ଟମ, ନବମ ଓ ଦଶମ ଶତାବ୍ଦୀର ଏତେଗୁଡ଼ିଏ ତମ୍ବପଟା କିପରି ସେ ଅଞ୍ଚଳରୁ ଆବିଷ୍କୃତ ହେଲା । ପୂର୍ବୋକ୍ତ ପ୍ରାଚୀନ କୀର୍ତ୍ତି ବ୍ୟତୀତ ୧୯୪୯ ଜାନୁଆରୀ ମାସରେ ତାଳଚେର ଅଞ୍ଚଳରୁ ମୁଁ ଆହୁରି ଅଧିକ କୀର୍ତ୍ତି ଆବିଷ୍କାର କରିଥିଲି । ତନ୍ମଧ୍ୟରେ ଭୀମକୁଣ୍ଡର ଅତିକାୟ (୫୦ଫୁଟ ଲମ୍ବ) ଅନନ୍ତଶାୟୀ ବିଷ୍ଣୁମୂର୍ତ୍ତି ଓ ବଜ୍ରକୋଟର ଶିବମନ୍ଦିର ଓ ତତ୍‌ପାର୍ଶ୍ୱବର୍ତ୍ତୀ ପ୍ରାଚୀନ କୀର୍ତ୍ତି ବିଶେଷ ଉଲ୍ଲେଖଯୋଗ୍ୟ । ତାଳଚେରରେ ଆଦିମ ମାନବ

ବସତିର ଚିହ୍ନ ୧୮୭୫-୭୬ ବେଲେଣ୍ଟାଇନ୍ ବଲ୍ (Valentine Ball) ସହିତ ହରିଚନ୍ଦନପୁର ଗ୍ରାମର ଅନେକଗୁଡ଼ିଏ ପ୍ରତ୍ନପ୍ରସ୍ତର ଯୁଗର ହତିଆର ପାଇ ପ୍ରବନ୍ଧ ଲେଖିଥିଲେ; ମୁଁ ସେହି ସ୍ଥାନ ଦେଖିବାପାଇଁ କୌତୂହଳୀ ହୋଇ ତାଳଚେର ଯାଇଥିଲି । ପ୍ରତ୍ନପ୍ରସ୍ତର ଯୁଗର ଅସ୍ତ୍ରାଦି ମୁଁ ମଧ୍ୟ ସଂଗ୍ରହ କରିଥିଲି ସେହି ଗ୍ରାମରୁ ଓ ତତ୍ସହିତ ଭୀମକାଣ୍ଡ ଓ ବଜ୍ରକୋଟ ମନ୍ଦିର ଆବିଷ୍କାର କରିଥିଲି । ବଜ୍ରକୋଟ ମନ୍ଦିରର ଗଠନ ପ୍ରାୟ ଭୁବନେଶ୍ୱର ପରଶୁରାମେଶ୍ୱର ମନ୍ଦିରର ଗଠନ ସହିତ ତୁଳନୀୟ । ଭୀମକାଣ୍ଡର ବିଷ୍ଣୁମୂର୍ତ୍ତିର ଲମ୍ବ ୫୦ ଫୁଟ ଓ ସରାଙ୍ଗର ବିଷ୍ଣୁମୂର୍ତ୍ତିର ଲମ୍ବ ୪୨ ଫୁଟ୍ । ଆମ ଦେଶରେ ପ୍ରଚାରର ଅଭାବ ଯୋଗୁଁ ଆଜିଯାଏଁ ମଧ୍ୟ ଭାରତବର୍ଷରେ ସର୍ବାପେକ୍ଷା ବୃହତ୍ ହିନ୍ଦୁମୂର୍ତ୍ତି ତାଳଚେରରେ ଥିବା ଅଧିକାଂଶ ଓଡ଼ିଶାବାସୀ ମଧ୍ୟ ଜାଣନ୍ତି ନାହିଁ । ଖ୍ରୀଷ୍ଟୀୟ ଅଷ୍ଟମ-ନବମ ଓ ଦଶମ ଶତାବ୍ଦୀର ଏତେଗୁଡ଼ିଏ ପ୍ରାଚୀନ କୀର୍ତ୍ତି ଓ ତାମ୍ରଫଳକ ମିଳିଥିଲେ ମଧ୍ୟ ଆଜିଯାଏ ପାର୍ବତ୍ୟାଞ୍ଚଳ ବ୍ରାହ୍ମଣୀ ଉପତ୍ୟକାର ଇତିହାସ ଅବିଦିତ ଅଛି । ବିଶେଷତଃ ତାଳଚେର ଇତିହାସ ମୁଦ୍ରିତ ହେଲାଦିନୁ ଏହିସବୁ ଗୌରବମୟ ଇତିହାସର ଉପାଦାନ ପ୍ରତି କାହାରି ଦୃଷ୍ଟି ଆକର୍ଷିତ ହେଉନାହିଁ । ବଣାଇ-ବାମଣ୍ଡା ଓ ପାଲଲହଡ଼ା ଅଞ୍ଚଳ ଦେଖିବାର ସୁଯୋଗ ମୋର ଘଟି ନ ଥିଲା । ଏଣୁ ଏ ଅଞ୍ଚଳରେ ପ୍ରତ୍ନକୀର୍ତ୍ତିର ନିଦର୍ଶନ କି ଅଛି ମୋତେ ଜଣାନାହିଁ । ରାଧାନାଥରାୟଙ୍କ ଟିପାଖାତାରୁ ଜାଣିପାରିଛି ବ୍ରାହ୍ମଣୀକୂଳବର୍ତ୍ତୀ ବାରକୋଟରେ ରମ୍ଭାଦେବୀଙ୍କର ଏକ ମନ୍ଦିର ଅଛି । ରମ୍ଭାଦେବୀ କେଉଁ ଦେବୀ, ତାହା ଦେଖି ନଥିବାରୁ ତା'ର ପରିଚୟ ଦେଇ ପାରୁନାହିଁ; ଶୁଣିଛି ବଣାଇ ରାଜ୍ୟରେ କେତେଗୁଡ଼ିଏ ପ୍ରାଚୀନ କୀର୍ତ୍ତିର ଅବଶେଷ ଅଛି, ମାତ୍ର ଦେଖିବାର ସୁଯୋଗ ଘଟିନାହିଁ । ବଣାଇରୁ ମୟୂରଲାଞ୍ଛନଯୁକ୍ତ ବରାହରାଜଙ୍କର ଖଣ୍ଡିଏ ନବମ-ଦଶମ ଶତାବ୍ଦର ତମ୍ବପଟା ମିଳିଅଛି ।

ଏଣୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ପାର୍ବତ୍ୟଞ୍ଚଳ ବ୍ରାହ୍ମଣୀ ଉପତ୍ୟକାରେ ଏକ ହଜାର ବର୍ଷ ପୂର୍ବରୁ ଯେଉଁ ସଭ୍ୟତାର ନିଦର୍ଶନ ମିଳେ, ତାହା ବିଶେଷ ପ୍ରଣିଧାନଯୋଗ୍ୟ ।

ବର୍ତ୍ତମାନ ପ୍ରଶ୍ନ ଉଠିପାରେ, ଏସବୁ କୀର୍ତ୍ତି କିଏ କରିଥିଲା । ପୂର୍ବରୁ ଲେଖାଯାଇଛି ଯେ ତାଳଚେରରୁ ଭୌମ, ସ୍ତମ୍ଭ ଓ ତୁଙ୍ଗବଂଶୀୟ ରାଜାମାନଙ୍କର ତମ୍ବପଟା ମିଳି ଓ ସ୍ତମ୍ଭବଂଶୀୟ ରାଜାମାନଙ୍କର ରାଜଧାନୀ ଆଧୁନିକ କୋଅଲୁଠାରେ ହେଲା । କୋଅଲୁଠାରେ ଏକ ପଞ୍ଚାୟତନ ମନ୍ଦିର ଅଛି ଯାହାର କି ମୁଖଶାଳା ନାହିଁ । ମନ୍ଦିରଗୁଡ଼ିକ କାରୁକାର୍ଯ୍ୟରେ ପୂର୍ଣ୍ଣ, ମାତ୍ର ବିଶେଷଭାବରେ ଭଗ୍ନୋନ୍ମୁଖ ଅବସ୍ଥାରେ ଅଛି । ଏଣୁ ମୋର ମନେହୁଏ ଯେ ତାଳଚେରର ବିରାଟକାୟ ବିଷ୍ଣୁମୂର୍ତ୍ତିଗୁଡ଼ିକ ସ୍ତମ୍ଭରାଜାମାନଙ୍କର କୀର୍ତ୍ତି । ବର୍ତ୍ତମାନ ପ୍ରଶ୍ନ

ଉଠିପାରେ ଯେ ଏହି ସ୍ତମ୍ଭରାଜାମାନଙ୍କର ବଂଶଧରମାନେ କୁଆଡ଼େ ଗଲେ ? କେଉଁଝର ରାଜ୍ୟରେ 'ଗଣସମ୍ମତ' ନାମକ ଏକ ତାଳପତ୍ର ପୋଥି ଦେଖିବାର ମୋର ସୁଯୋଗ ଘଟିଥିଲା । ତହିଁରେ ଓଡ଼ିଶାର ବିଭିନ୍ନ ରାଜବଂଶର ରାଜାମାନଙ୍କୁ କେଉଁଝର ରାଜା କିପରିଭାବରେ ଚିଠିପତ୍ର ଲେଖୁଥିଲେ, ତାହାର ବିରୁଦବଳି ସବୁ ଲିଖିତ ଅଛି । ଖଣ୍ଡିଏ ଚିଠିରେ ଅନୁଗୋଳରାଜାଙ୍କୁ କେଉଁଝର ରାଜା ଯେଉଁସବୁ ବିରୁଦ ଲେଖି ଚିଠି ଦେଉଥିଲେ, ତାହାର ଉଲ୍ଲେଖ ଅଛି । ତହିଁରୁ ଜଣାଯାଏ ଯେ ଅନୁଗୋଳ ରାଜାଙ୍କର ନାମରେ ସ୍ତମ୍ଭ ଉପାଧି ଅଛି । ଏଥିରୁ ଅନୁମାନ କରାଯାଇପାରେ ଯେ ଅନୁଗୋଳ ରାଜବଂଶ ସ୍ତମ୍ଭବଂଶୀୟ ରାଜା ଥିଲେ ଓଡ଼ିଶାକୁ ବ୍ରିଟିଶ୍ ଆଗମନ ପୂର୍ବରୁ । ଅନୁସନ୍ଧାନରୁ ଜାଣିପାରି ଅଛି ଯେ ତାଳଚେର-ଅନୁଗୋଳ ଅଞ୍ଚଳରେ ଆଜିଯାଏ ଅନେକ ସ୍ତମ୍ଭ-ଉପାଧିଧାରୀ ଲୋକ ଅଛନ୍ତି । ତୁଙ୍ଗବଂଶୀୟ ରାଜାମାନଙ୍କର ବଂଶଧର ଯେ ଅଦ୍ୟାପି ତିଗିରିଆରେ ଅଛନ୍ତି, ତାହା ତିଗିରିଆ-ରାଜବଂଶର ଉପାଧିରୁ ଜଣାପଡ଼େ । ତାଳଚେର ଇତିହାସରେ ତାଳଚେର-ରାଜବଂଶର ଯେଉଁ କିମ୍ବଦନ୍ତୀ ଲିଖିତ ଅଛି, ତାହାର କୌଣସି ପ୍ରମାଣ ମିଳୁ ନଥିବାରୁ ସେ କିମ୍ବଦନ୍ତୀ ଯେ ଆଧୁନିକ, ଏଥିରେ ମୋର ସନ୍ଦେହ ନାହିଁ । ତେବେ ପ୍ରମାଣ ନ ମିଳିବା ଯାଏ କପିଳେନ୍ଦ୍ରଦେବଙ୍କ ରାଜତ୍ୱକାଳରେ ଯେତେବେଳେ କି ଜୟପୁର ରାଜ୍ୟର ଅସ୍ତିତ୍ୱ ନଥିଲା; ସେତେବେଳେ ରାଜପୁତନାର ଜୟପୁର ରାଜ୍ୟରୁ କେହି ଆସି ପ୍ରବଳପ୍ରତାପୀ କପିଳେନ୍ଦ୍ରଦେବଙ୍କ ରାଜସଭାରେ ସୁଖ୍ୟାତି ଅର୍ଜନ କରିଥିବା କଳ୍ପନାର ଅତୀତ ବୋଲି ମନେହୁଏ ।

ଭବିଷ୍ୟତ ଐତିହାସିକମାନଙ୍କ ପାଇଁ ଏହିସବୁ ଉପାଦାନ ମୁଁ ରଖିଯାଉଛି । ଦିନ ଆସିବ ଯେବେ ଏହି ଅଞ୍ଚଳର ପ୍ରକୃତ ଇତିହାସ ପ୍ରକାଶିତ ହେବ ।



ଝଙ୍କାର, ୧୭/୧୧

# ସିଂହଭୂମର ଭୂୟାଁଜାତି-ମାଦଳା ଓ ସିଂହବଂଶ-ମାଦଳା*

୧୯୨୫ରେ ସିଂହଭୂମ ଅନ୍ତର୍ଭୁକ୍ତ ଷଢ଼େଇକଳାର ଉଗ୍ର ପାଢ଼ପତିଦାରବଂଶୀୟ ସ୍ୱର୍ଗୀୟ ବିଦ୍ୟାଧର ସିଂହ (ଯେ କି ସେତେବେଳେ ଜୟପୁର ମହାରାଜା ସ୍ୱର୍ଗୀୟ ବିକ୍ରମଦେବଙ୍କର ଜାମାତା ନାମରେ ସୁପରିଚିତ ଥିଲେ)ଙ୍କ ସହିତ ମୋର କଲିକତାରେ ଆଳାପ ହେବାର ସୁଯୋଗ ଘଟିଲା । ସେ ମୋତେ ପ୍ରଥମେ ସିଂହଭୂମର 'ସିଂହ-ମାଦଳା'ର କଥା କହିଥିଲେ । ତେଣୁ 'ସିଂହ-ମାଦଳା' ସଂଗ୍ରହ କରିବା ପାଇଁ ଆୟୋଜନ କଲି । ମୋର ଉପକାରୀ ମୟୂରଭଞ୍ଜ ମହାରାଜାଙ୍କ ବିଶ୍ୱସ୍ତ କର୍ମଚାରୀ ସ୍ୱର୍ଗୀୟ ପଣ୍ଡିତ ତାରକେଶ୍ୱର ଗାଙ୍ଗୁଲିଙ୍କ ସହ ବିଦ୍ୟାଧରବାବୁ ଓ ମୁଁ ସିଂହ-ମାଦଳାର ସନ୍ଧାନରେ ସ୍ତ୍ରାଇଁବସା ଗଲୁ; କିନ୍ତୁ ବହୁ ଚେଷ୍ଟା କରି ଆମ୍ଭେମାନେ ଅକୃତକାର୍ଯ୍ୟ ହୋଇ କଲିକତା ଫେରିଲୁଁ । ତଦ୍‌ବଧି 'ସିଂହ-ମାଦଳା' ପଢ଼ିବାର ଆଶାପୋଷଣ କରିଥିଲେ ମଧ୍ୟ ତାହା ପାଇବାର ଆଶା ଛାଡ଼ି ଦେଇଥିଲି ।

୧୯୬୪ ଫେବୃଆରୀ ମାସରେ ମୁଁ କଟକ ଆସି ମୋର ବଡ଼ପୁଅଙ୍କ ବସାରେ ରେଭେନ୍‌ସା କଲେଜ ହତାରେ ଥିଲି । ଏହି ସମୟରେ ଷଢ଼େଇକଳାର ପ୍ରସିଦ୍ଧ କବି, ଲେଖକ, ଔପନ୍ୟାସିକ ଓ ନାଟକ ଲେଖକ କବିଚନ୍ଦ୍ର କାଳିପ୍ରସନ୍ନ କବି ମଧ୍ୟ ମୋର ପୁଅର ବସାର ନିକଟରେ ଡକ୍ଟର ତାପସ କବିଙ୍କ ଘରେ ଅବସ୍ଥାନ କରୁଥିଲେ । ଏଣୁ ଆମ ଦୁହିଁଙ୍କ ମଧ୍ୟରେ ଆଳାପ ପରିଚୟ ହୋଇ ତାହା ଘନିଷ୍ଠତାରେ ପରିଣତ ହୋଇଗଲା । ପ୍ରତିଦିନ ଆମେ ଦୁଇଜଣ ଓଡ଼ିଶାର ସାହିତ୍ୟ ଓ ଇତିହାସ ତଥା ସିଂହଭୂମ ଷଢ଼େଇକଳାର ସାହିତ୍ୟ ଓ ଇତିହାସ ଉପରେ ନାନା ଆଲୋଚନା କରି ବିଶେଷ ଆନନ୍ଦିତ ହେଉଥିଲୁଁ । ଦିନେ କଥା ପ୍ରସଙ୍ଗରେ 'ସିଂହ-ମାଦଳା' ପୋଥିର କଥା ଉଠିଲା । କବିଚନ୍ଦ୍ର କହିଲେ ଯେ

---

*ଏହି ପ୍ରବନ୍ଧଟି ଝଙ୍କାରରେ ୧୮/୧, ୧୮/୬, ୧୮/୯ ସଂଖ୍ୟାକ୍ରମରେ ପ୍ରକାଶିତ । ମାତ୍ର ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ(୨ୟ)ରେ ସ୍ଥାନିତ ପ୍ରବନ୍ଧଟି ଅସଂପୂର୍ଣ୍ଣଭାବେ ସ୍ଥାନ ପାଇଛି । ଅର୍ଥାତ୍ ଝଙ୍କାର ୧୮/୧, ୧୮/୯ ସଂଖ୍ୟାର ପ୍ରବନ୍ଧାଂଶ ସଂଯୁକ୍ତ । ମଧ୍ୟମାଂଶଟିର ଗୁରୁତ୍ୱ ଥିବାରୁ ପୁଣି ସଂପୂର୍ଣ୍ଣ ପ୍ରବନ୍ଧଟିକୁ ଏଥିରେ ଦିଆଗଲା ।

ତାଙ୍କଠାରେ 'ସିଂହ-ମାଦଳା' ପୋଥିର ଏକକିତା ନକଲ ଅଛି; ଷଢ଼େଇକଳା ଫେରିଲେ ସେ ତାହା ମୋ ନିକଟକୁ ପଠାଇଦେବେ ।

ଆମ୍ଭେମାନେ ତା ୧୬.୩.୬୪ ମାର୍ଚ୍ଚ ମାସରେ ଏକତ୍ର କଟକ ଛାଡ଼ିଲୁଁ ଓ ସାଥୀହୋଇ ମୁଁ ବାଲେଶ୍ୱରଯାଏ ଆସିଲି । କବିଚନ୍ଦ୍ର ସେଠାରୁ ଷଢ଼େଇକଳା ଗଲେ । ସତକୁ ସତ ଠିକ୍ ଆଠଦିନପରେ ତାଙ୍କଠାରୁ ଏକ ରେଜିଷ୍ଟରୀ ପାର୍ଶଲ ପାଇଲି । ଖୋଲି ଦେଖିଲି ତାହା କେବଳ 'ସିଂହ-ମାଦଳା' ନୁହେଁ, ତହିଁରେ ଭୂୟାଁ 'ଜାତିର ମାଦଳା' ମଧ୍ୟ ଅଛି । ତାହା ଦେଖି ମୁଁ ଯେ କି ଆନନ୍ଦ ପାଇଲି, ତାହା କହିହେବ ନାହିଁ ।

'ସିଂହ-ମାଦଳା' ପୋଥିରେ ମୁଁ ଯେଉଁ ନକଲ ପାଇଅଛି, ତାହା ଆଧୁନିକ । ଏହି ନକଲର ସମୟ ୧୯୪୨ । ମୁଁ ଅବିଳମ୍ବେ ଏହି ପାଣ୍ଡୁଲିପିର ନକଲ ଆରମ୍ଭ କରିଦେଲି ଓ ତା ୧୧.୪.୬୪ରେ ମୋର ଲେଖା ଶେଷ ହେଲା । ତତ୍ପରେ ସେହି ବର୍ଷ ମେ ଶେଷକୁ କଟକ ଆସି ହଠାତ୍ ଅସୁସ୍ଥ ହୋଇପଡ଼ିଲି । ଆରୋଗ୍ୟ ଲାଭ କରିବାପରେ ଜୁଲାଇ ମାସରେ କବିଚନ୍ଦ୍ର ପୁନର୍ବାର ତାଙ୍କର ଚିକିତ୍ସା ପାଇଁ କଟକ ଆସିଲେ । ମୋ ସହିତ ସାକ୍ଷାତ ହେଲା । ସେ ଯେ କାହିଁକି କହିଥିଲେ ଯେ 'ସିଂହ ମାଦଳା'ର ଭାଷା ବଡ଼ ଦୁର୍ବୋଧ୍ୟ, ତାହା ତାଙ୍କୁ କହିବାରେ ସେ ବଡ଼ ଖୁସି ହେଲେ । ଜୁଲାଇ ମାସର ମଧ୍ୟଭାଗରେ ମୁଁ ପୁଣି ବାରିପଦା ଫେରିଗଲି । ସେଠାରେ ଖବରକାଗଜରୁ ହଠାତ୍ ଦେଖିଲି ଯେ କବିଚନ୍ଦ୍ର ତା ୨୮.୭.୬୪ରେ କଟକରେ ଇହଲୀଳା ସାଙ୍ଗ କଲେ । ମୁଁ ସ୍ୱର୍ଗୀୟ କବିଚନ୍ଦ୍ର କାଳିପ୍ରସନ୍ନ କବିଙ୍କଠାରେ ସିଂହ ମାଦଳାପାଇଁ ଯେ କେତେଦୂର କୃତଜ୍ଞ, ତାହା ବୋଲିବା ବାହୁଲ୍ୟ ।

ପୂର୍ବେ ଲେଖିଅଛି ଯେ କବିଚନ୍ଦ୍ର କହିଥିଲେ, 'ସିଂହ ମାଦଳା'ର ଭାଷା ବଡ଼ ଅବୋଧ୍ୟ । ମୋର ମନେ ହେଉଛି ଏହି ଅବୋଧ୍ୟତା ଲାଗି ଷଢ଼େଇକଳାର ରାଜା ବା ଟିକାଏତ୍ ବା ଅନ୍ୟ କେହି ଏଥିରୁ ପଠନଯୋଗ୍ୟ ପାଣ୍ଡୁଲିପି ପ୍ରସ୍ତୁତ କରି ତାହା ମୁଦ୍ରିତ କରିବା ପାଇଁ ସାହସୀ ହୋଇ ନଥିଲେ । କାରଣ ଯାହା କବିଚନ୍ଦ୍ରଙ୍କ ପକ୍ଷରେ ଅସାଧ୍ୟ ବିବେଚିତ ହୋଇଥିଲା, ଅନ୍ୟ ପକ୍ଷରେ ତାହା ଆହୁରି ଅସାଧ୍ୟ ହେବା କଥା କିଛି ବିଚିତ୍ର ନୁହେଁ । ବାସ୍ତବିକ୍ ଯେଉଁ ନକଲରୁ ମୁଁ ଏହି ଲେଖା ପ୍ରସ୍ତୁତ କରିଛି, ତାହା ପାଠକରି ତହିଁରୁ ପୂର୍ବାପର ସମ୍ପର୍କ ରଖି ଅର୍ଥ ବୁଝିବା ଅତି କଷ୍ଟକର । ପାଇଥିବା ପାଣ୍ଡୁଲିପିରେ ପ୍ରାୟ ସର୍ବତ୍ର 'ଅ' ସ୍ଥାନରେ 'ୟ' ଲେଖାଅଛି । ଯଥା 'ଅଛି' ସ୍ଥାନରେ 'ୟଛି' । ଏହା ବ୍ୟତୀତ ତିନୋଟିଯାକ 'ସ'ର ଯଥେଚ୍ଛା ବ୍ୟବହାର ସର୍ବତ୍ର ହୋଇଛି । 'ଇ' ଓ 'ଈ'ର ପ୍ରଭେଦ କୌଣସିଠାରେ ଦେଖିବାକୁ ମିଳେନାହିଁ । ଏହାଛଡ଼ା ଯୁକ୍ତାକ୍ଷର ଲେଖାରେ କେତେକ ବିଶେଷତ୍ୱ ଅଛି । ସର୍ବତ୍ର 'ଙ୍ଗ' ସ୍ଥାନରେ 'ଙଗ'

ଲିଖିତ ଅଛି । 'ସଙ୍ଗେ' ଲେଖାହୋଇଛି 'ସଙେ୍ଗ' । ଅନ୍ୟାନ୍ୟ ଯୁକ୍ତାକ୍ଷର ଲେଖା ମଧ୍ୟ ତଦ୍ରୂପ । ସର୍ବତ୍ର ପୂର୍ଣ୍ଣଚ୍ଛେଦ ସ୍ଥାନରେ ୧ ସଂଖ୍ୟା ଲେଖାଅଛି ଇତ୍ୟାଦି । ଏଥିପାଇଁ ଆମ୍ଭମାନଙ୍କ ବୋଧଭାଷାରେ ଲେଖିବାକୁ ଅନେକ ଭାବିଚିନ୍ତି ସ୍ଥିର କରିବାକୁ ପଡ଼ିଛି ।

ବର୍ତ୍ତମାନ 'ଭୂୟାଁ-ଜାତିର ମାଦଳା ବା ମାଦଳିଆ' ଓ 'ସିଂହମାଦଳା'ର ପାଠ ଏଠାରେ ଦିଆଯାଉଛି । ପରିଶେଷରେ ଭୂୟାଁଜାତି ଓ ସିଂହଭୂମ ରାଜବଂଶର କଥା ଆଲୋଚିତ ହେବ ।

## ଭୂୟାଁ-ଜାତି-ମାଦଳିଆ

ଶ୍ରୀପରମ-ସ୍ୱୀ ନାରାୟଣୀ ପାଉଡ଼ି ଭୂପାଜେଶ୍ୱର ବରପୁତ୍ର ।

ଶ୍ରୀ ଧନୁର୍ଜ୍ଜୟ ନାରଙ୍ଗି ଛତ୍ର କୁଳେଶ୍ୱର ଭୂଜବୃନ୍ଦ ଶିରୋମଣି, ମହାମହିମା ଖଣ୍ଡା ବାହାଦୂର କଳିକାଳ ଭାରତ-ଚକ୍ରବର୍ତ୍ତୀ । ଅସ୍ତଗିରି ଯଜ୍ଞ ସମୟେ ।

ଜାତି ମାଦଳିଆ ପୁରାତନ ଲୋକ ଲିଖିତ ।

**ପ୍ରଥମେ ଭୂୟାଁ ସାଢ଼େ ବାରଘର କହିବା--** ପ୍ରଥମେ ନାରଙ୍ଗି, ଦୁତିଏ କାଣେଇଁ, ତୃତୀୟେ ବାରଙ୍ଗି, ଚତୁର୍ଥେ ଏଙ୍ଗର, ପଞ୍ଚମେ କଲ୍ୟାଳ, ଷଷ୍ଠେ ଶାଲଡ଼ି, ସପ୍ତମେ ବାଲମୁଣ୍ଡୀ, ଅଷ୍ଟମେ ଚମ୍ପିଆଳ, ନବମେ ନୁଙ୍ଗୁରି, ଦଶମେ କାଲକି, ଏକାଦଶେ ଅନ୍ଧ, ଦ୍ୱାଦଶେ କାଟିଆଳ । ନଣ୍ଡରି ସଙ୍ଖା ଯେଉଁ ଭୂୟାଁ ତାକୁ ସାଢ଼େଘର ବୋଲି ଜାଣିବ । ସାଢ଼େବାର ଘର ଯେତେ ଭୂୟାଁଙ୍କର ଶ୍ରେଷ୍ଠ ବୋଲି ଜାଣିବ ।

**ବାରଘର ବର୍ଗଭାଇ କହିବା --**

| | | |
|---|---|---|
| ନାରଙ୍ଗିର | ବର୍ଗଭାଇ | ବାରଙ୍ଗି |
| କାଣେଇର | ବର୍ଗଭାଇ | ଶାଲଡ଼ି |
| ନୁଙ୍ଗରିର | ବର୍ଗଭାଇ | ଜେରଙ୍ଗି |
| ବେଲିଆଳର | ବର୍ଗଭାଇ | କଲିଆଳ |
| ଆନ୍ଧର | ବର୍ଗଭାଇ | ଖମ୍ପିଆଳ |
| ଏଙ୍ଗାରର | ବର୍ଗଭାଇ | ମାଲରି |
| କଟିଆଳର | ବର୍ଗଭାଇ | କଟୀ |
| ଗୃନ୍ଦଡ଼ିର | ବର୍ଗଭାଇ | ହେଲ୍ଲା |

| | | |
|---|---|---|
| ଶିଙ୍ଗିଦୀର | ବର୍ଗଭାଇ | ଶିଗାଡ଼ି |
| ସରଗିର | ବର୍ଗଭାଇ | ଡକରି |
| ବାନିଆଳର | ବର୍ଗଭାଇ | ଶମରଳି |
| ରାୟଜଡ଼ିର | ବର୍ଗଭାଇ | ରିମୀ |
| ନିର୍ଣ୍ଣରିର | ବର୍ଗଭାଇ | ଖାଣ୍ଡିଆ |
| ଜାଉଣ୍ଡିର | ବର୍ଗଭାଇ | ବାରସଇ |
| ଅନ୍ୟ ଭୂୟାଁଙ୍କର | ବର୍ଗଭାଇ | ନାସ୍ତି |

ଯଜ୍ଞର ତିଳକଫଟା ପିନ୍ଧି ଯେଉଁ ଭୂୟାଁକୁ ଯେଉଁ ଭୂୟାଁ କୋଳ କରି, ଜୁହାର କରି ଘର ଯୋଡ଼ିଥିଲେ, ସେ ତାଙ୍କର ବର୍ଗଭାଇ ହେଲା । ଯଜ୍ଞର ତିଳକକୁ ବର୍ଗ ବୋଲି । ଘ ଯୋଡ଼ିବାରୁ ଭାଇ ବୋଲାଇଲା ।

**ଏବେ ଯେଉଁ ଯେଉଁ ଭୂୟାଁ ବାରଘର ଭିତରେ ତାହା କହିବା** -- ୧-ଜଟିଆଳ, ୨-ବାନିଆଳ, ୩-ବେଲିଆଳ, ୪-ଜେରଙ୍ଗି, ୫-ଚେଲା, ୬-ଗଲାଡ଼ି, ୭-ଗଦଡ଼ି, ୮-ମାଲରି, ୯-ଡକରି, ୧୦-କଟୀ, ୧୧- ଭଜ, ୧୨-ଜମନ୍ଦି, ୧୩-ଦମଦ, ୧୪-କୁରୁକି, ୧୫-ସମରଳି, ୧୬-ଶିଗାଡ଼ି, ୧୭-ଶିଗିଦ, ୧୮-ରିମି, ୧୯-ରାୟଜଡ଼ି, ୨୦-ଗଗଜି । ଏ କୋଡ଼ିଏ ଘର ଭୂୟାଁ ବାରଘର ଭିତରେ ଅଟନ୍ତି ।

**କେଉଁ କେଉଁ ଭୂୟାଁ ବାରଘରର ବାହାର ତାହା କହିବା** -- ରାଉତ, କଣ୍ଡେଇ, କଡ଼ା, ବାଉଁରି, ବିଲୈ, କାନ୍ଦରି, ନାଣ୍ଡମି, ମାଦରି, ଅସୁରାଳ, ଜଗଡ଼ି, ଜଙ୍ଗାଳି, ଜାମରଳି, ଶିଆଳ, କୁମ୍ଭୀର, ରଞ୍ଜକି, ଢେଣ୍ଡୁଆଳ, ଜରା, ପାଛିଆଳ, ବାଡ଼ଇ, ବାଟ, ବାମଡିଆ, କେଡ଼ାଳି, କପିଆଳ, ପାଉଁଶିଆଳ, କାସ୍ୟାଳ, ଚଢ଼କି, କାଶିଡ଼, ଗଁଣସି, ବାରଶଇ, ତିରିଳ, ଘାଗରାଳି, ତେଲି, ଟୁପୁରି, ପଡ଼ାଖୁଣ୍ଟି ବାପଦି, ମାଳି, ମାଟିଆ, ଚିଆସ, ଡୁମରି, ବିନ୍ଧାଣି, କାନପୁନି, ଅରଖଇ, ବାଙ୍କ, ଇଡଙ୍ଗି । ଏତେ ଭୂୟାଁ ବାରଘର ବାହାର ବୋଲି ଜାଣିବ । ବାର ମିଶି ବତିଶଘର ଭୂୟାଁ ଉପର ପାଉଚ କଣେ ରାଉତ ମିଶି କୋଡ଼ିଏ ଆଠଘର ଭୂୟାଁ ତଳ ପାଉଚ । ବାଉଁତି ମଧ୍ୟସ୍ଥ । ଉପର ପାଉଚ ବତିଶ ଘର ଭୂୟାଁ ଭୋଜ * ବଂଶୀ । ତଳ ପାଉଚ କୋଡ଼ିଏ ଆଠଘର ଭୂୟାଁ ରାଜକୁମାର । ନଣ୍ଡରି ଖାଣ୍ଡିଆ ଅସଂସ୍କାର ।

---

* ଭୂଜ ?

ଏବେ **କରଣୀ ଭୂୟାଁ କହିବା** -- ଗଲଡ଼ି କରଣୀ ସାତଶହ ଭୂୟାଁ ପାଉଡ଼ିଆ ବୋଲନ୍ତି । କରଣୀ ଭୂୟାଁ ଏକଶି କଉଡ଼ି ବୋଲାନ୍ତି । ବାରଙ୍ଗିକରଣୀ ବାଉନଘର ଭୂୟାଁ ବଥୁଆ ବୋଲାନ୍ତି । ନାରଙ୍ଗୀକରଣୀ ବିଶାଶଏ ଘର ଭୂୟାଁ ଧରୁଆ ବୋଲାନ୍ତି । କଳିଆଳର କରଣୀ ବାସ୍ତରୀ ଘର ଭୂୟାଁ କାତରାସିଆ * ବୋଲାନ୍ତି । ବାଳମୁଣ୍ଡିର କରଣୀ ଗ୍ବଳିଶଘରି ଭୂୟାଁ ଖେରୁଆଳ ବୋଲାନ୍ତି । କାଲଡ଼ି ଭୂୟାଁର କରଣୀ ବାଷଠିଘର ବାଥଡ଼ି ବୋଲାନ୍ତି । ଏତେକ ନୂଆ କରଣୀ ଭୂୟାଁ ସର୍ବଶ୍ରେଷ୍ଠ ବାରଘର ଭୂୟାଁ ଅଟନ୍ତି ।

ଏ ବାରଘରର ପରମବନ୍ଧୁ **ଷୋଳଘର ଭୂୟାଁ ସଙ୍ଖା କହିବା** -- ୧. ରାଇକେଳି, ୨. ସାରୁକେଳି, ୩. କାତିକେଳି, ୪. କନ୍ତରିକେଳି, ୫. ସିଜକେଳି, ୬. ନତାକେଳି, ୭. ଜରେଇକେଳି, ୮.ଗୋଲକେଳି, ୯. କୁଲେଇକେଳି, ୧୦. କୁଡ଼ିକେଳି, ୧୧. ବେରୁକେଳି, ୧୨. ବନେଇ କେଳି; ୧୩. କଡ଼ାକେଳି, ୧୪. ଡାଲୈକେଳି, ୧୫. ଶଶକେଳି, ୧୬. ଶାଲୈକେଳି ଏ ମଧ୍ୟେ ନୂଆ କେଳି ସାଢ଼େବାରଘର, ଷୋଳଘର ଓ କୋଡ଼ିଏ ଘର । ଏମାନେ ପୁରୁଣା ସୃଷ୍ଟିର ସିର୍ଜନ (ସୃଜନ) । ରାଉତ ଆଦି କୋଡ଼ିଏ ଆଠଘର ଭୂୟାଁ ନୂଆ ସୃଷ୍ଟିରେ ସିର୍ଜନ (ସୃଜନ) ।

ଏ ବାରଘରର କୋଡ଼ିଏ ଘରର ଇଷ୍ଟଦେବତା ଶାସନ ଅଛି । ଅନ୍ୟ ଘରର ନାସ୍ତି । କେବଳ ମାତ୍ର ସାରଳି ଦେବତା ।

**ପ୍ରଥମେ ବାରଘରର ଇଷ୍ଟଦେବୀ, କୁଳ-ଦେବତା, ଆଦ୍ୟ ଶାସନ କହିବା** -- ୧. ନାରଙ୍ଗିର ଉତ୍ପନ୍ନ ନେପାଳ, ଇଷ୍ଟଦେବତା ନାରାୟଣୀ ପାଉଡ଼ୀ, କୁଳଦେବତା ନେଣ୍ଡିପାଟ, ୨. କାଣାଇର ଉତ୍ପନ୍ନ କାଉଁରୀ, ଇଷ୍ଟକାଳୀ ପାଉଡ଼ି, କୁଳଦେବତା, କଳାପାଟ, ୩. ବାରଙ୍ଗିର ଉତ୍ପନ୍ନ ବାଣାରସୀ, ଇଷ୍ଟ ବିଜୟା ପାଉଡ଼ି, କୁଳଦେବତା ବିଜଳିପାଟ । ୪. ଚାମ୍ପିଆଳର ଉତ୍ପନ୍ନ, ଗନ୍ଧପୁର, ଇଷ୍ଟ ଚଣ୍ଡୀ ପାଉଡ଼ି, କୁଳଦେବତା ଗଉରିପାଟ । ୫. କଲ୍ୟାଳର ଉତ୍ପନ୍ନ କେରଳଘାଟ, ଇଷ୍ଟଦେବତା କାତ୍ୟନି ପାଉଡ଼ି, କୁଳଦେବତା କଙ୍କାପାଟ । ୬. ଏଙ୍ଗାରର ଉତ୍ପନ୍ନ ଏଙ୍ଗରାଜପୁର ଇଷ୍ଟ ଅମ୍ବିକା ପାଉଡ଼ି, କୁଳଦେବତା ଅରୁଆଁ ପାଟ । ୭. ବାଳମୁଣ୍ଡିର ଉତ୍ପନ୍ନ ବେଲକଦୀ, ଇଷ୍ଟମଙ୍ଗଳା ପାଉଡ଼ି, କୁଳଦେବତା, ବାଘାପାଟ । ୮. ନୁଙ୍ଗରିର ଉତ୍ପନ୍ନ ନନ୍ଦାଘାଟି, ଇଷ୍ଟ ଦୁରୁଗା (ଦୁର୍ଗା), ପାଉଡ଼ି, କୁଳଦେବତା ମସିଣାପାଟ । ୯. କଲଡ଼ିର ଉତ୍ପନ୍ନ କାଶୀ, ଇଷ୍ଟ ଭବାନୀ ପାଉଡ଼ି, କୁଳଦେବତା ସାଉଁତିପାଟ । ୧୦.

---

* କାତରାସିଆ- ଅର୍ଥ କାତରାସବାସୀ ।

ସାଲତିର ଉତ୍ପନ୍ନ ଶ୍ରୀରାମପୁର, ଇଷ୍ଟତାରା ପାଉଡ଼ି, କୁଳଦେବତା ଶାରୁଳିପାଟ । ୧୧. କଟିଆଳ ଭୂୟାଁର ଉତ୍ପନ୍ନ କରମଘାଟି, ଇଷ୍ଟ କଙ୍କାଳୀ ପାଉଡ଼ି, କୁଳଦେବତା କରାଣ୍ଟପାଟ । ୧୨. ଆନ୍ଧର ଉତ୍ପନ୍ନ ଏଡ଼ମ, ଇଷ୍ଟ ଜୟା ପାଉଡ଼ି, କୂଳଦେବତା ଅନ୍ଧାରିପାଟ । ନଣ୍ଡରିର ଏମାନ ନାସ୍ତି । ଆଦ୍ୟରେ ନଣ୍ଡରିର ଘଡ଼ାସି ପାଉଡ଼ି ଥିଲା । କଳଙ୍କି ହେବାରୁ ବାରଘରିଆମାନ ନେଲେ । ଏ ତେର ପାଉଡ଼ି ଜାଣିବ ।

କଟିଆଳ ଆଦି କୋଡ଼ିଏ ଘରର ଦେବତା କହିବା -- ପଶ୍ଚିମଦେଶ ରିମାରାଜ୍ୟ ଭୋଜପୁରରେ କୋଡ଼ିଏ ଘରର ଏକତ୍ର ଶାସନ । ଘର ପ୍ରତ୍ୟେକେ ଦେବତା ଗୋଟିଏ ।

| | | |
|---|---|---|
| ୧. ଜଟିଆଳର | ଇଷ୍ଟଦେବତା | ତେଲଙ୍ଗବୀର |
| ୨. ବନିଆଳର | ଇଷ୍ଟଦେବତା | ବୀରବିଶା |
| ୩. ବେଲିଆଳର | ଇଷ୍ଟଦେବତା | ବାଳିଆକ୍ଷେଣ୍ଡ |
| ୪. ଜେରଙ୍ଗିର | ଇଷ୍ଟଦେବତା | କାଳକୁଟ |
| ୫. ଚେହ୍ଲାର | ଇଷ୍ଟଦେବତା | ନାଗରାଜ |
| ୬. ଗଲତର | ଇଷ୍ଟଦେବତା | ଧର୍ମରାଜ |
| ୭. ଗ୍ଭଦଡ଼ିର | ଇଷ୍ଟଦେବତା | ନରସିଂହ |
| ୮. ମାଲରିର | ଇଷ୍ଟଦେବତା | ବିଲସିଂଘ |
| ୯. ତକରିର | ଇଷ୍ଟଦେବତା | ମଙ୍ଗଗୁଞ୍ଜର |
| ୧୦. କଟିଆଳର | ଇଷ୍ଟଦେବତା | ଧୃଟବଡ଼ା |
| ୧୧. ଉରିର | ଇଷ୍ଟଦେବତା | ଭିଟଡ଼ା |
| ୧୨. ଜମଜିର | ଇଷ୍ଟଦେବତା | ଛତାକାଳ |
| ୧୩. ଦମଜିର | ଇଷ୍ଟଦେବତା | ପିଟଣିଭୂତ |
| ୧୪. କରୁଲିର | ଇଷ୍ଟଦେବତା | ଗୋରାଦାସ |
| ୧୫. ସମରଳିର | ଇଷ୍ଟଦେବତା | କଳାଦାସ |
| ୧୬. ସିଗଡ଼ିର | ଇଷ୍ଟଦେବତା | ଝଟିକଦ୍ରୁମ |
| ୧୭. ସିଗିଜିର | ଇଷ୍ଟଦେବତା | ଗ୍ଭଦବାରିଆ |
| ୧୮. ରିମ ଘରର | ଇଷ୍ଟଦେବତା | କାଳଚକରି |
| ୧୯. ରାୟଜଡ଼ର | ଇଷ୍ଟଦେବତା | ବାଘାବୀର |
| ୨୦. ଗରଜିର | ଇଷ୍ଟଦେବତା | ଗଲବିଟ |

ଏ ରୂପେ କୋଡ଼ିଏ ଘରର ଦେବତା ଜାଣିବ ।

ଏବେ ଷୋଳଘର ଭୂର୍ୟାଁଙ୍କର ଷୋଳଗୋଟି ଇଷ୍ଟଦେବତା ନାମ କହିବା -- ୧. ସାମରି, ୨. ସଟାରା, ୩. ତିବିଲି, ୪. ବାଙ୍ଗୁଟ, ୫. ତରମା, ୬. ଗଳମି, ୭. ବିକୁରି, ୮. ବିତଲ୍ଲୁ, ୯. କଜରା, ୧୦. ଧରିଶା, ୧୧. ଦାରକସ, ୧୨. ଚୟା, ୧୩. ଝୁଣକା, ୧୪. ଭାୟା, ୧୫. ବଜନ, ୧୬. ବିମ୍ବର ।

ଏ ଷୋଳ ଦେବତା ଷୋଳ କେଳି ଭୂର୍ୟାଁଙ୍କର ଇଷ୍ଟ ବୋଲି ଜାଣିବ ।

ଏ ଉତ୍ତାରେ ପାଉଡ଼ିଙ୍କର ସୈନ୍ୟଗଣର ନାମ କହିବା -- ୧. ସିଲିଂ, ୨. ବିଲିଂ, ୩. ମାୟ୍ୟା, ୪. ଖାୟ୍ୟା, ୫. ରାଙ୍ଗ, ୬. ରଙ୍ଗ, ୭. ଡଲ୍ଲୁଙ୍ଗ, ୮. ବିଲ୍ଲୁଙ୍ଗ. ୯. ଜଲୁମ, ୧୦. ଦାଲୁମ, ୧୧. ଝଂ, ୧୨. ବିଝଟ, ୧୩. ମିଟ, ୧୪. ମାଟ, ୧୫. ଦମଲି, ୧୬. ଦାମିଲି, ୧୭. ଇଚିଟ, ୧୮. କିଚିଟି, ୧୯ ଭଗିନି, ୨୦. ଜିଘିନି, ୨୧. ଏମ୍, ୨୨. ମେମ, ୨୩. ଟାଳ, ୨୪. ବିଟାଳ, ୨୫. ଗ୍ୱଟ, ୨୬. ଉଗ୍ୱଟ, ୨୭. ଗୁମର, ୨୮. ଗାମର, ୨୯. ଟେର, ୩୦. ବିଟେର, ୩୧. ହିଲି, ୩୨. କିଲି, ୩୩. ଖମନ, ୩୪. ଖାମନ, ୩୫. ଅତାଲ, ୩୬. ସାତାଲ, ୩୭. ସିଙ୍ଗରି, ୩୮. ସେଙ୍ଗରି, ୩୯. ଜେଲଟି, ୪୦. ଇଲପିଟ, ୪୧. ବାଗ, ୪୨. ବୀରବାଗ, ୪୩. ଦ୍ରବିଡ଼, ୪୪. ଦ୍ରାବିଡ଼, ୪୫. ଥୁଟ, ୪୬. ଭିଟ, ୪୭. ଚଇଲି, ୪୮. ଗ୍ୱଇଲି, ୪୯. ଗ୍ୱଲି, ୫୦। ରୁଲି, ୫୧। ଲିଫି, ୫୨। ଧୃଫ ।

ଏତକ ଦେବୀ ପାଉଡିଙ୍କର ସୈନ୍ୟବଳ ।

ଏମାନଙ୍କୁ ବାମ ଜଘଂରେ ବସି ଦେବୀଙ୍କ ପ୍ରତ୍ୟେକ ନାମ ଧରି ଆଦ୍ୟରେ ନାମ ଉଚ୍ଚାରି ସେବା କରିବ ।

ଏ ଉତ୍ତାରେ ତେର ପାଉଡ଼ଙ୍କର ପୂଜା ବିଧାନ କହିବା -- ପୂଜାର ଆଦ୍ୟଦିନ ତିରି (ସ୍ତ୍ରୀ) ସଙ୍ଗ ତ୍ୟାଗ କରି ଏକବେଳା ଫଳ ଆହାର କରିବାର (ଣ) ରହିବ। ଏକା ଲୁଗାରେ ଭୂମିଶୟନ କରିବ ।ସକାଳୁ ଉଠି ପିତଳ ଘଟି ତମ୍ୱଥାଳି ଅଭାବେ ବେତଡାଲା ଧରି ଜଳକତିକୁ ଯିବ । ବସ୍ତ୍ର ବାସନ ଧୋଇ ଶୁଖାଇବ । ଆମ୍ବକାଠିରେ ଦାନ୍ତ ଘଷିବ । ଅଁଳା ମାଖି ସ୍ନାନ କରିବ । ଧର୍ମ ଦେବତାଙ୍କୁ ଭଗତି କରିସାରି ଶରକାଣ୍ଡରେ ବାରଥର ପାଣିକାଟି କରି ଶୁଦ୍ଧବସ୍ତ୍ର ପିନ୍ଧି ପାଣି ଘଟିଏ ଆଣିବ ।ତୁଳସୀ ମୂଳରେ ରଖିବ ।ଅକୁମାରି ହାତରେ ପୂଜାସମ୍ଭାର ଥାଳିରେ ସଜା କରାଇବ ।ବେଲପତର, ରକତ ଚନ୍ଦନ ସିନ୍ଦୂର, ଗଗୁଳ ଧୂପ, ଘୃତଦୀପ, ଜବାଫୁଲ ରଙ୍ଗଣୀଆ କାଲୁଡ଼ି (?) ର ଗୋବର, କାଳିଆ ଗାଭୀ ଦୁଗ୍ଧ, ମିଷ୍ଟଭୋଗ, ମା'ଙ୍କର ସ୍ନାନ ନିମନ୍ତେ ପଞ୍ଚାମୃତ, ଜୟନ୍ତୀ ମୂଳର ମାଟି, ଅପରାଜିତା

ମୂଳର ମାଟି, ଚୁଆ, ଗନ୍ଧା, କପୂର, ବଟା ହଳଦୀ, ନୂଆ ଅଗିନି, ନିଜ ଖଡ୍‌ଗ ଏମାନ ତିଆରି ପୂଜାଥାଳି ଧରି ଦେବୀଥାନକୁ ଚଳିବ । ବିଷ୍ଣୁ ନାମ ଉଚ୍ଚାରି ଭୂମିଶୁଦ୍ଧ କରି ପୂଜାସମ୍ଭାର ରଖିବ । ସେ ଦୁଇମାଟି ଗୋବର ଲେପି ଥାନ ଖଣ୍ଡେ ସୁଦ୍ଧ କରିବ । ପୂର୍ବମୁଖେ ବାମ ଜଘଂରେ ବସି ନେପିଲା ଥାନରେ ଦଣ୍ଡବତ କରିବ । ଜୟ ମା ଭୁଜକୁଳେଶ୍ୱରୀ ବିଜେକର ବୋଲିବ । ତିନି ଥାପଡ଼ମାରି ଡାହାଣ ଜଘଂ ମାଡ଼ି ବସିବ । ଉଆ ଗୁଡଳ ଦୁଧରେ ଧୋଇ ଉପର ଧାଡ଼ିରେ ତେରପୁଞ୍ଜି ଦେବ । ବାମ କଡ଼ରେ ବସି ତଳଧାଡ଼ିରେ ଦୁଇ କୋଡ଼ିବାର ପୁଞ୍ଜି ଦେବ । ପୁଞ୍ଜି ମଧ୍ୟରେ ତେରପାଉଡି ନାମଧରି ତେର ଠିପା ସିନ୍ଦୂର ଦେବ ।

ତେରନାମ କହିବା -- ୧ । ନାରାୟଣୀ, ୨ । କାଳୀ, ୩ । ବିଜୟା, ୪ । ଚଣ୍ଡୀ, ୫ । କାତ୍ୟାନୀ, ୬ । ଅମ୍ବିକା, ୭ । ମଙ୍ଗଳା, ୮ । ଦୁରୁଗା (ଦୁର୍ଗା), ୯ । ଭବାନୀ, ୧୦ । ତାରା, ୧୧ । କଙ୍କାଳୀ, ୧୨ । ଜୟା, ୧୩ । ଘଡ଼ାସି ।

ଏ ତେର ନାମ ମା'ଙ୍କର ଧରିବ । ସୈନ୍ୟଗଣ ଦୁଇକୋଡ଼ିବାର ନାମ ଧରିବ । ବାମ-ହସ୍ତ-କାନି ଆଙ୍ଗୁଳିରେ ସୈନ୍ୟମାନଙ୍କୁ ସିନ୍ଦୂର ଦେବ । ଗଙ୍ଗାଜଳ ମିଶାଇ ପଞ୍ଚାମୃତରେ ସ୍ନାନ କରାଇବ ।

(ଏ ପରେ ପୂଜାର ମନ୍ତ୍ର ସବୁ ଅଛି । ଲେଖକ ସେସବୁ ଗୋପନୀୟ ଲେଖିଥିବାରୁ ତାହା ସାଧାରଣ ପାଠକମାନଙ୍କର କୌତୂହଳହୀନ ହୋଇଥିବାରୁ ଏଠାରେ ଉଦ୍ଧୃତ କରାଗଲା ନାହିଁ । କାରଣ ପାଉଡ଼ି ଦେବୀଙ୍କୁ ଭୂୟାଁମାନେ ଓ ସିଂହଭୂମର ରାଜବଂଶଗୁଡ଼ିକ ଇଷ୍ଟଦେବୀରୂପେ ପୂଜା କରନ୍ତି । ଏଣୁ ଏସବୁ କୌଳିକ ବିଧିବ୍ୟବସ୍ଥା ସାଧାରଣରେ ଆଲୋଚିତ ବାଞ୍ଛନୀୟ ନୁହେଁ ବୋଲି ତାହା ସବୁ ଏଠାରେ ଲେଖାଗଲା ନାହିଁ ।) (ଲେଖକ)

ଏ ଉତ୍ତାରେ ଯେଉଁ ନିମନ୍ତେ ନଣ୍ଡରି ସାଢ଼େଘର ହେଲା, ଯେଉଁ ନିମନ୍ତେ ନାରଙ୍ଗି ଜାତିର ମାଲିକ ହେଲେ; ଯେଉଁ ନିମନ୍ତେ ନାଏକ ପଦବୀ, କବାଟ ପଦବୀ, ଦାସ ପଦବୀ, ରାୟ ପଦବୀ, ଦଣ୍ଡପାଟ ପଦବୀ, ଏମାନେ ଯେ ହେତୁରୁ ହେଲା ତା'ର ଗୁନିଆଦ ସୂତ୍ର କହିବା । ଯେଉଁ ନିମନ୍ତେ ଭୂୟାଁମାନେ ପଶ୍ଚିମରୁ ପଳାଇ ଅଇଲେ, ତାହା ଜାତି-ମାଦଳିଆରେ କହିବା ।

ଶ୍ରୀ ଭୂଜବଂଶୀଙ୍କର ନିଜ ସ୍ଥାନ ଭୋପାଳ ରାଜ୍ୟ ପଶ୍ଚିମରେ । ଭୁବନର ନାରଙ୍ଗି ରାଜା ମହାଯଜ୍ଞ ଆରମ୍ଭ କଲେ । ବେଦବିଧି ପ୍ରମାଣେ ସର୍ବସମ୍ଭାର ତିଆରି ଯଜ୍ଞ ଘର ବନାଇଲେ । ବନ୍ଧୁମିତ୍ର କାଶ୍ୟପ ଆଦି ସମସ୍ତ ବିପ୍ର ଏମାନଙ୍କୁ ନିମନ୍ତ୍ରଣ କରି ବିଜେ କରାଇଲେ । ବିପ୍ର ଦଶଘର, ବନ୍ଧୁ ସାଢ଼େବାର ଘର, ବଂଶୀକଖେ (କ୍ଷ) ତ୍ରୀ ଆଠ ଘର,

ବଇଶ (ବଶ୍ୟ) ଛ ଘର, ବନ୍ଧୁ ଅପରେ ଭୋଜ କ୍ଷେତ୍ରୀ କୋଡ଼ିଏ ଘର । ଏମାନଙ୍କୁ ବରଣ କରି ଅସ୍ତଗିରି ନିକଟକୁ ଅଣାଇଲେ ।

**ଯାହାକୁ ଯେଉଁ କାମରେ ରଖିଲେ ତାହା କହିବା** -- ବ୍ରାହ୍ମଣମାନଙ୍କୁ ଯଜ୍ଞ କରାଇବା ନିମନ୍ତେ ଆଠ ବରଣ କଲେ । ଆଠ ବରଣିଆ ଓଗେର ଛାଡ଼ି ଦୁଇ ବିପ୍ରକୁ ଦୁଇ ଗୁରୁ କଲେ । ବାଇଶମାନଙ୍କୁ ମହାନାଏକ ପଦ ଦେଇ ଚରଗ୍ଧକାରୀ କଲେ । ଯଜ୍ଞ ମନ୍ଦିର ଯଜ୍ଞ ବିଧିରେ ଭିଆଇଲେ । ତିନି ବଖରା କଲେ । ସେ ତିନି ବଖରାରେ ତିନି ଦ୍ୱାର କରି ତିନି କବାଟ ଥାପିଲେ । ଅସ୍ପର୍ଶ (ଅସ୍ପୃଶ୍ୟ) ଲୋକର ଯଜ୍ଞକୁ ଦୃଷ୍ଟି ପଡ଼ିବ ବୋଲି କୋଡ଼ିଏ ବନ୍ଧୁ ଭିତରୁ ତିନି ଜଣକୁ ସେ ତିନି କବାଟର ଜଗାଳି (ଜଗୁଆଳି) କଲେ । ସେ ତିନିଭୂୟାଁର ସଞ୍ଜ୍ଞା କହିବା । ପ୍ରଥମ ଦ୍ୱାରର କବାଟ ଆବୋରି ବାଳମୁଣ୍ଡୀ ରହିଲେ, ଦ୍ୱିତୀୟ ଦ୍ୱାରର କବାଟ ଆବୋରି ସିଗିଜି ରହିଲେ । ତୃତୀୟ ଦୁଆର ବାଉଣ୍ଡି ଜଗିଲେ । ଏ ତିନି ବନ୍ଧୁଙ୍କୁ କବାଟ ଜଗିବାରୁ ଧନୁର୍ଜ୍ଜୟ ନାରଙ୍ଗ ରାଜା କବାଟ ପଦ ଦେଲେ । ଆପଣେ ଆବାହକ ହୋଇ ଯଜ୍ଞ କରିତେ ବସିଲେ । ନିଜର ପ୍ରତିବଦଳ ଆଜ୍ଞା ଚଳାଇବା ନିମନ୍ତେ କଲିଆଳକୁ ସର୍ଦ୍ଦାର ପଦ ଦେଲେ । ଶ୍ରୀ ଗୁରୁଙ୍କର ସେବା କରିବା ନିମନ୍ତେ ଚମ୍ପିଆଳକୁ ଦାସ ପଦ ଦେଲେ । ନେବାଆଣିବା ଲୋକଙ୍କୁ ରାଇବା ନିମନ୍ତେ କାଟିଆଳ ପଦ ଦେଲେ । ବାରଙ୍ଗି, ଏଙ୍ଗାର, କାଲ୍‌ତି, ସାଲଡ଼ି, କାଣେଇଁ ଏ ପାଞ୍ଚ ବନ୍ଧୁଙ୍କୁ ବାବୁ ପଦ ଦେଇ ସଭାରେ ବସାଇଲେ । ଗାଦି ଲଗାଇ ଗାଦି ଯୋଗ୍ୟ ଏଗାର ଘର ଆଉ କୋଡ଼ିଏ ଘର ବନ୍ଧୁଙ୍କୁ ଗାଦି ଧାରରେ ବସାଇଲେ ସଙ୍ଗ ଭାଇ ପଦ ଦେଇ । ଯେତେବେଳେ ସଭାରେ ଯେଉଁ ଯେଉଁ ବିଷୟ ତତବିର (ତଦବିର) କରିବା ଅର୍ଥେ ବାରଙ୍ଗିକୁ ପୁଣି ମୁଖ୍ଡ ପଦବୀ ଦେଲେ । ବାରଘରୁ ବାକି ଯେ ବେଶୀ ରହିଲେ ସେମାନେ ଭଦ୍ରପଣ କରି ସଭାରେ ରହିଲେ ଭଲଭାଇ ପଦ ପାଇ ।

**ମିତ୍ରଭାବରେ ଯେଉଁ ଯେଉଁ ରଜା ଆସିଥିଲେ ତାହା କହିବା** -- ସେମାନେ ସଭାପତି ହୋଇ ମଝିରେ ବସିଲେ ।

**ସେ ଯେଉଁ ଯେଉଁ ବଂଶ ତାହା କହିବା** -- ସୋମ, ସୂର୍ଯ୍ୟ, ଗଙ୍ଗ, ଗାର୍ଗବ, ରାଠୋର, ବଘେଲ ଚନ୍ଦେଲ, କଦମ୍ବ, ହଟମ୍ବ * ଏ ଆଠ ରାଜା ପଶ୍ଚିମରୁ ଆସିଲେ ।

* ମୃତ୍ୟୁଞ୍ଜୟ ରଥ 'ଉତ୍କଳ ସାହିତ୍ୟ' ପତ୍ରିକାର ୧୮ ଭାଗ ବୈଶାଖ ସନ ୧୩୨୧, ପୃ. ୫୭ ରେ ଅଭିମନ୍ୟୁ ସାମନ୍ତସିଂହାର ପ୍ରବନ୍ଧରେ ଲେଖିଥିଲେ;

"ବଙ୍ଗ ଦେଶକୁ ପାଞ୍ଚଜଣ ବ୍ରାହ୍ମଣ ଓ ପାଞ୍ଚଜଣ କାୟସ୍ଥ ପଶ୍ଚିମରୁ ଆସିଥିବାର ଯେପରି ଶୁଣାଯାଏ, ଏ ଦେଶକୁ ଯଯାତିକେଶରୀଙ୍କ ସମୟରେ ସେହିପରି କାନ୍ୟକୁବ୍ଜ ଦେଶରୁ ବେଦଜ୍ଞ ବ୍ରାହ୍ମଣଗଣ ଆସିଥିବାର

ଗୀତବାଦ୍ୟ ନାନା ଉତ୍ସବ କରି ସାତଦିନ ବିପ୍ରହସ୍ତେ ଯଜ୍ଞ କରାଇଲେ । ଯାଗ ଶେଷରେ ଲକ୍ଷଣବନ୍ତ ଅଶ୍ୱ ଆଣିଲେ । ସେ ଅଶ୍ୱକୁ ଆୟତ କରି ନପାରିଲେ । ବାଦ୍ୟ ଚଇଳ ଶୁଣି ସେ ଅଶ୍ୱ ସନ୍ଧ୍ୟା ସମୟେ ଡୋର ଛିଡ଼ାଇ ପଳାଇଲା । ଏଗାର ଜଣ ବନ୍ଧୁଙ୍କୁ ପାଶରେ ବସାଇ ନାରଙ୍ଗି ରାଜା ଆଜ୍ଞା କଲେ "ବାରଘରିଆ, କୋଡ଼ିଏ ଘରିଆ, ଷୋଳଘରିଆ ଯେ ଯେମାନେ ଅଛ, ଅଧେ ଲୋକ ଜଗୁଆଳି ରହ, ଅଧେ ଲୋକରୁ ଦୁଇଗ୍ୱରି ଜଣ ଯାଇ ପଳାଇଲା ଅଶ୍ୱକୁ ଖୋଜିଆଣ ।

ଏମନ୍ତ ଆଜ୍ଞା ଶୁଣି ବାରଜଣ ଭୂୟାଁ କିଛି ଉତ୍ତର ନଦେଲେ । ବାର ଭିତର ଭୂୟାଁମାନେ ଜବାବ ନାଦାନ ହେଲେ । ନଣ୍ଡରି ସଙ୍ଖାରେ ଜଣେ ଭୂୟାଁ ଥିଲା । ଅଶ୍ୱକୁ ଏହିକ୍ଷଣି ଆଣିଦେବି ବୋଲି ନିଶରେ ହାତ ଦେଲା । ପଳାଇଲା । ଅଶ୍ୱକୁ ଆଣିତେ ଗଲା । ଗ୍ରାମେ ଗ୍ରାମେ ତଦାରକ କରି କାହିଁ ନ ପାଇଲା । ନିଶରେ ହାତଦିଆ ଇସିମ ରଖିବା ନିମନ୍ତେ ନୁଚି (ଲୁଚି) ରହି ଦିନ ଗୁଜରାଣ କରି ଅନ୍ଧାର ରାତିରେ ବରାବର ବାଦଶାହ ପାଟ ଘୋଡ଼ାକୁ ଠାବକଲା । ସେ ମୂର୍ଖ ପ୍ରାଣୀ ଭଲ ମନ୍ଦ ନ ଜଣାଇ ଯଶ ଅପଯଶ ବିଗ୍ୱର ନ ଜାଣି ସେ ଅଶ୍ୱକୁ ବାଗରେ ଧରି ଗ୍ୱେର ପରାଏ ଖୋଲିଲା । ମନରେ ବିଗ୍ୱରିଲା ମୁଁ ଯଦି ଟାଣି ନେଇଯିବି ସଭାଲୋକମାନେ ହସିବେ । ସାହାସି (ସଇଣ) ତୁଲ୍ୟ ମଣିବେ । ଏହା ବିଗ୍ୱରି ଅଶ୍ୱର ବାଗ ହଟାଇ ନାଗାମା (ଲଗାମ) କଲା । ମୁଖରେ ନାଗାମ ଖୋଇତେ ଅଶ୍ୱ କାମୋଡିତେ ପାଟି ବିସ୍ତାରି ଠିଡ଼ିହେଲା । ଅଶ୍ୱର ପାଟିକୁ ଭୟ କରି ନଣ୍ଡରି ଭୂୟାଁ ଅଣବୁଧି ହେଲା । ନାନାପ୍ରକାର କରି ଆୟତ୍ତ କରି ନ ପାରିଲା । କ୍ରୋଧରେ କମ୍ପମାନ ହୋଇ ସେ ଦଉଡ଼ି, ନଗାମକୁ ଅଶ୍ୱର ମଳଦ୍ୱାରେ ଲାଞ୍ଜ ଆକ୍ରୋଶି ନଗାମ ଦେଇ ଚଢ଼ି ବସିଲା । ତଥାପି କଏଦ କରି ନପାରି ଅତି ରାଗକରି ଏଡ଼ିକୁଟ ଦେଲା । ତଥାପି ସଇନ ହେବାରେ ଖୋଳ ଭିତରୁ ଖଣ୍ଡା ଟାଙ୍କି ଗୁହ୍ୟଦ୍ୱାରେ ମୁଠକୁଟ ଦେଲା । ସେ ଘୋଡ଼ା ପ୍ରାଣ ପାଇ ନଣ୍ଡରିର ହାତରେ ହଗଲା । ପୂର୍ବ କ୍ରୋଧ ଗୁଣେ ଥିଲା,

---

ପ୍ରମାଣ ମିଳୁଅଛି । ବ୍ରାହ୍ମଣମାନଙ୍କ ପରି କ୍ଷତ୍ରିୟ, କରଣ ମଧ୍ୟ ପଶ୍ଚିମରୁ ଏ ଦେଶକୁ ଭିନ୍ନ ଭିନ୍ନ ସମୟରେ ଆସିଥିଲେ ।"

ସୋମ-ସୂର୍ଯ୍ୟ-ଯଦୁ-ଭୋଜବଂଶଜାଃ / ଗଙ୍ଗ-ବଙ୍ଗ-ଜନି-ଗାର୍ଗ୍ୟ ଗୋତ୍ରଜାଃ

ନାଗସନ୍ତତିକଦମ୍ବ ସମ୍ଭବାଃ / ଅଷ୍ଟ ବଂଶ ପଦାଶ୍ରୁ ପାର୍ଥିବାଃ

ପୁରାଣପ୍ରସିଦ୍ଧ ଏହି ଅଷ୍ଟଜାତି କ୍ଷତ୍ରିୟ ପଶ୍ଚାତ ଚନ୍ଦେଲ, ବୁନ୍ଦେଲ, ଚୌହାନ, ଖଣ୍ଡେଲ, ଦଣ୍ଡେଲ କଚ୍ଛ, ସମୁଳ ପ୍ରଭୃତି ନାନାଶ୍ରେଣୀରେ ବିଭକ୍ତ ହୋଇଗଲେ । ସେଥିମଧ୍ୟରୁ ଚୌଦ ଘର କ୍ଷତ୍ରିୟ ଯୋଧପୁର ପ୍ରଭୃତି କ୍ଷତ୍ରିୟ ମୂଳ ବସତିରୁ ଉତ୍କଳକୁ ଆସିଥିଲେ ।

ସେ ଦ୍ବିଗୁଣ ହୋଇଲା । ନଣ୍ଡରି ଭୂର୍ଯ୍ୟାଁ ଅଧିକେ କ୍ରୋଧକରି ଅଶ୍ୱକୁ ମାଡ଼ଦେଲା । ସେ ଅଶ୍ୱ ଛିଣ୍ଡ଼ିଦେବାରେ ଠାଏଁ ଠାଏଁ ପଡ଼ି ଆଣ୍ଠୁଗଣ୍ଠି ଛିଡ଼ାଇ ଅନେକ ଦୁଃଖରେ ପ୍ରବେଶ କଲା । ଯଜ୍ଞଶାଳର ଗହଳ ବାଦ୍ୟ ଶୁଣି ଅଶ୍ୱ ପୁଣି ପିଠି ଛିଞ୍ଚାଡ଼ିଲା । ନଣ୍ଡୁରି ଭୂଇଁରେ ପଡ଼ିଗଲା । ତା'ଦେଖି ସଭାଲୋକେ ହସିଲେ । ନଣ୍ଡୁରି ଭୂର୍ଯ୍ୟାଁ ଲଜ୍ଜାରେ କ୍ରୋଧରେ କମ୍ପମାନ ହୋଇ ଅଶ୍ୱର ମୁଖରେ ନ ଧରି ଲାଞ୍ଜରେ ଟାଣିଲା । ଅଶ୍ୱ ପଛ ପାଦରେ ଲାଥ ମାଇଲା । ଲାଥ ପାଇ ନଣ୍ଡୁରି ଅଶ୍ୱକୁ ହାଣିତେ ଖେଦିଲା । ନ ହାଣ ବୋଲି ନାରଙ୍ଗି ବାରଣ କଲେ । ସେ ଆଜ୍ଞା ନ ମାନି ମୂର୍ଖ ନଣ୍ଡୁରି ଅଶ୍ୱର ଲାଞ୍ଜରେ ଟାଙ୍ଗି ପ୍ରହାର କଲା । ସେ ଅଶ୍ୱ ଶରମରେ (ଶ୍ରମରେ ?) ଅସକତ (ଅଶକ୍ତ ?) ହୋଇ ମଳ ପ୍ରକାଶ (ତ୍ୟାଗ) କଲା । ଲାଞ୍ଜ ଛିଡ଼ି ଘାଉଲା ହୋଇ ଚଞ୍ଚଳ ଗତିରେ ନିଜ ସ୍ଥାନକୁ ଗଲା । ମାରି ନ ପାରିଲି ବୋଲି ସେ ଅଶ୍ୱ ନାହି ନାହି ହଗିଥିଲା, ନଣ୍ଡରି ରାଗି ତହିଁ ତହିଁରେ ସ୍ତ୍ରେଟଦେଲା । ସେ ଟାଙ୍ଗି ସଭାରେ ଦେଇ ବିମୁଖ ହୋଇ ବସିଲା । ଉପବାସରେ ରହି ନାରଙ୍ଗି ରାଜା ବଳିଦାନ ଦେଇ ନ ପାରି କ୍ରୋଧ କଲେ । ବାରଘରୁ ବାହାର ହେଲୁ ବୋଲି ନଣ୍ଡୁରିକୁ ପତିତ କଲେ । କହିଲେ "ତୁ ଏଡ଼େ ବଡ଼ ସଭାର ଆମ୍ଭମାନଙ୍କୁ ଲଜ୍ଜା ଖୋଆଇଲୁ । ନେଣ୍ଡକଟା କଳଙ୍କ ଯୁଗେ ଯୁଗେ ଦେଲୁ । ତୋ'ର ମୁଖ ନ ସ୍ପୃହିଁ ନ ଯୋଗଇ ।" ଏ ରୂପେ ଅପମାନ କରି ନଣ୍ଡରିକୁ ନାଣ୍ଡୁ ମୁଣ୍ଡୁ (ଲଣ୍ଡାମୁଣ୍ଡ) କରି ଗାଲକେ ଚୂନ ଗାଲକେ କଳା ଦେଇ ସେଠାରୁ ବାହାର କରିଦେଲେ ପୁଣି ଘାଟୁଆଳ ପଦ ଦେଇ କିଛି ମୂଲ୍ୟ ଦେଇ ଦିଗମା ନାମେ ବାଙଂରି (ବାଙ୍ଗରି ?) ଭୂର୍ଯ୍ୟାଁକୁ ଅଶ୍ୱ ଆଣିତେ ପଠାଇଲେ । ସେ ସ୍ତ୍ରଣ୍ଟେ ଯାଇ ସିଘଂଳ (ସିଂହଳ) ଦ୍ୱୀପରେ ଶଙ୍ଖପତ ସ (ସୌ) ଦାଗରଠାରୁ ମୂଲ ଦେଇ ଅଶ୍ୱ କିଣିଆଣି ପ୍ରବେଶ ଜଲା । ସେ ଅଶ୍ୱକୁ ପୂଜା କରି ଛେଦଦେଲେ । ଅଗ୍ନିରେ ପୂର୍ଣ୍ଣାହୂତି ଦେଲେ । ଯଜ୍ଞ ସମାପତ କରି ଅଗ୍ନିକୁ ବିସର୍ଜନ କଲେ । ବାର ଭୂର୍ଯ୍ୟାଁ ପୁଣି କୋଡ଼ିଏ ଭୂର୍ଯ୍ୟାଁ ବତିଶି ଭୂର୍ଯ୍ୟାଁଙ୍କୁ ପୁରୋହିତ ବିପ୍ର ଯଜ୍ଞର ଫୁଟା ଦେଲେ । ଆଗେ ଆଠ କ୍ଷେତ୍ରୀଙ୍କୁ ଦିଆଇ ନାରଙ୍ଗି ମୂଳେ ବତିଶିଜଣ ଭୂର୍ଯ୍ୟାଁ ତିଳକ ଘେନିଲେ । ଛ-ତାଳପ୍ରମାଣେ ଯଜ୍ଞ କୁଣ୍ଡରେ ଜଳନ୍ତା ଅଙ୍ଗାର ଥିଲା । ସେ ବିସର୍ଜନ ପାଇ ତିଲି (?) ପ୍ରମାଣେ ଧୂଆଁ ଗଗନକୁ ବ୍ୟାପିଲା । ସେ ଧୂଆଁ ଦେଖି ନଣ୍ଡୁରି ମନରେ ଧିକାରି ହୋଇ ହିଂସକ (?) ଅପମାନ ତାପ ସହି ନ ପାରି ବିଷ ଖାଇ ଛଟପଟ ହୋଇ ଉପୁଁଡ଼ି ଉପୁଁଡି ବ୍ୟାକୁଳେ ପ୍ରାଣଗଲ୍ଲା । ତା'ର ଏକ ପୁତ୍ର ଥିଲା । ସେ ପତିତ ଦୋଷରୁ ପିତାର ଦଶକର୍ମ କରି ନ ପାରି ନାରଙ୍ଗି ମୂଳେ ବେଶ ସଭାରେ ଦନ୍ତରେ ତିରଣ ଦେଇ ଦଣ୍ଡପରାଏ ପଡ଼ିଲା । ଯଜ୍ଞ ଶେଷରେ ଯେଣୁ ପଡ଼ିଲା,

ତେଣୁ ଅଧେ ଦୋଷ ମାଫ କଲେ । କଳଙ୍କ ଥିବାରୁ ଅଧେ ଦୋଷ ଅମାଫ କଲେ । ଅଧେ ବନ୍ଧୁ ସହି କଲେ, ଅଧେ ଅସହି କଲେ । ସେ ଦଶ ବ୍ରାହ୍ମଣରୁ ଅଧେ ଭୁଞ୍ଜିଲେ, ଅଧେ ପତ୍ର ଏଡ଼ିଗଲେ । କିଛି ବ୍ୟବସ୍ଥାପୂର୍ଣ୍ଣ ନୋହିଲା । ଏଣୁକରି ତାକୁ ସେ ଦିନଠାରୁ ଅପମାନେ ସାଢ଼େ ଘର କଲେ ।

ଏ ଉତ୍ତାରେ ନାରଙ୍ଗି ରାଜା ଯଜ୍ଞର ଦକ୍ଷିଣା ଦେଇ ଜାତିସ୍ମର ପୁରୁଷ ହୋଇ ବିପ୍ରଭୋଜନ କରାଇଲେ । ବନ୍ଧୁ ମିତ୍ର ରାଜଗୋଷ୍ଠୀ ସମସ୍ତେ ଥାଇ ମାନ୍ୟ ଅକ୍ଷତ କରି ବିଦାଇ ଦେଲେ । ସେଦିନଠାରୁ ବତିଶ ଘର ଭୂୟାଁ ଅତି ଶ୍ରେଷ୍ଠ ହେଲେ । ସମସ୍ତେ ସେଦିନ ସେଠାରେ ରହି ବିଷ୍ଣୁପ୍ରୀତି ଗୀତ ନୃତ୍ୟ କରି ନିଶି ଜାଗରଣ କରିଲେ । ଦେଶଯାକେ ମିଳି ଅସ୍ତଗିରିକୁ ପ୍ରଦକ୍ଷିଣ କଲେ ।

ଏମନ୍ତ ସମୟେ ବାଦଶାହ ଅଶ୍ୱର ଲାଞ୍ଜ ବିଦ ଦେଖି କ୍ରୋଧକରି କେ କାଟିଲା ବୋଲି ତଦାରକ କରିତେ ବତିଶଜଣ ପଠାଣ ସିପାହୀ ପଠାଇଲେ । ସେମାନେ ରକ୍ତ ପଡ଼ିବାର ଡଗର ସୁତଧରି ସେ ଜାଗରଣ ଥାନାରେ ପଶି ଭାରି ଉପଦ୍ରବ କଲେ । ଜାତି ନେବୁଁ ବୋଲି ଅନ୍ନମୁଠାଏ ଧରି ସମସ୍ତଙ୍କୁ ଡକାଇଲେ । ଜାତି ଯିବାର ଦହସତରେ ଯେ ଯତ୍ର ପଳାଇଲେ । ପୁରୋହିତ ବ୍ରାହ୍ମଣ, ସେ ଅତି ବୃଦ୍ଧ । ସେ ପଳାଇ ନପାରିଲେ । ସେ ବୋଇଲେ "ମୁଁ ଜୁହାର କରି କହୁଅଛି, ତୁମ୍ଭେ ମୋର ବଡ଼ଭାଇତୁଲ୍ୟ । ମୋ ଜାତି ରକ୍ଷା କର ।" "ପଠାଣେ ବୋଇଲେ "ସବୁଦିନେ ଯଦି ଏହି ମାନ୍ୟ ରଖିବ, ତୁମ୍ଭେ ସତ୍ୟକର; ଆଜ ତୁମ୍ଭେ ଜୁହାର କରି ଆମ୍ଭଙ୍କୁ ବଡ଼ଭାଇ ବୋଲୁଅଛ । ତୁମ୍ଭର ଆମ୍ଭର ଏ କଥା ସବୁଦିନେ ଥିବ, ସତ୍ୟ କଲେ ମାନିବୁ, ନୋହିଲେ ଜାତିଭ୍ରଷ୍ଟ କରିବୁଁ ।"ପଠାଣଙ୍କର ବଚନ ସହିକରି ସେ ବୃଦ୍ଧ ବିପ୍ର ସତ୍ୟ କଲେ । ବିପ୍ରଠାରେ କ୍ରୋଧ ଶାନ୍ତ କରି ଭୂୟାଁଙ୍କର ସଙ୍ଖା ଉଚ୍ଚାରଣ କରି ଅନେକ ଭରଛନା ଦେଲେ । ପଠାଣେ ଭାରି ଜୁଲୁମ୍ ଧରି ସେ ଯେଉଁ ଛେଦକରା ଅଶ୍ୱର ଗଣ୍ଡିମୁଣ୍ଡି ପଡ଼ିଥିଲା, ଗଣ୍ଡିଆକୁ ଛାଡ଼ିଦେଇ କଟା ମୁଣ୍ଡକୁ ଧରି ହଟିଗଲେ । ଭୂୟାଁଙ୍କର ମଥା ନେଲୁଁ ବୋଲି, ଭୂଇଁରେ ବାରଥର ଖଣ୍ଡା ଗ୍ବେଟଦେଲେ । ଏ କଥାକୁ ଖଙ୍ଗଧରି ଭୂୟାଁମାନେ ଯେ ଯାହାର ଘର ଗଲେ ।

ଏ ଉତ୍ତାରେ ସେ ପଠାଣ କଟାମୁଣ୍ଡକୁ ଧରି ଚଳିଲେ; ପଥରେ ଚଳିତେ ଚଳିତେ ରାତି ହେଲା । ଏକେ ବରଷାକାଳ ନିର୍ଘାତ ବରଷା କଲା । ବାମଚଣ୍ଡୀ ନଦୀ ବଢ଼ି ଦୁଇକୂଳ ତରଙ୍ଗ ହେଲା । ପଠାଣେ ନଦୀ କିନାରେ ବସି ବିଗ୍ଋର କଲେ ଏ ନଦୀର ନଉକା ନାସ୍ତି । କି ରୂପେ ପାର ହୋଇବା । ଜଣେ ପଠାଣ ବୋଇଲା "ଭାଇ ମୋତେ ନିଦ୍ରା ମାଡୁଅଛି, ମୁଁ

ନିଦ୍ରା ଯିବି । ଦଶ ଲୋକେ ଯେଉଁ ବିଚାର କରିବ, ତାହା ମୋର ସହି ।" ଏହା କହି ସେ ବସିଲାଠାରେ ନିଦ୍ରା ଗଲା । ମୁସଲମାନମାନଙ୍କର କୁଳଦେବତା ଖୋଦାଇଜି । ସେ ସପନରେ କହିଲେ "ତୁମ୍ଭେମାନେ ଭାବନା ନ କର । ଏ କଟାମୁଣ୍ଡ ତୁମ୍ଭଙ୍କୁ ପରିତ୍ରାଣ କରିବ । ଏହାକୁ ପଶ୍ଚିମ ମୁଖେ ସେବିବ, ଯେବେ ବଳିଦେବ, ଏ କଟା ମୁଣ୍ଡ ଯଜ୍ଞର ଦ୍ରବ୍ୟ ଅଟଇ, ଏହାକୁ ଶୂକର ଛୁଇଁଲେ ତେଜଭ୍ରଷ୍ଟ ହେବ । ଶୁକର ନ ମାନିଲେ ପଠାଣର ତେଜ ହାନି, କୁଳନାଶ ହେବ । ଯେଉଁ ମୁସଲମାନ ଶୁକର ନ ମାନିବ, ସେ ଖୋଜାଇଜିଙ୍କର ଦ୍ରୋହୀ ହବ ।" ଏମନ୍ତ ସପନ ଦେଖି ସେ ନିଦ୍ରାଗତ ପଠାଣ ଚେତି ଉଠିଲାବେଳକୁ ବେଳ ବେଳ ବେଶ ନଦୀ ବଢ଼ି ଦେଖି ଅଣବୁଦ୍ଧି ହୋଇ ଆର ପଠାଣେ ଭାଳୁ ଅଛନ୍ତି । ଏମନ୍ତ ସମୟେ ସେ ଯେଉଁ ସପନ ଦେଖିଥିଲା, ସେ କଥା ସମସ୍ତଙ୍କୁ ଶୁଣାଇଲା । ସତ ସତ ବୋଲି ଏକ ପଠାଣ ପାଣିରେ ଡେଇଁପଡ଼ି ଅକ୍ଳେଶେ ପାରିହୋଇଗଲା । ତା ଦେଖି ଆଉ ଦୁଇଜ ପଠାଣ ଆଲ୍ଲା ଆଲ୍ଲା ବୋଲି ପହଁରି ପାର ହୋଇଲେ । ସେ କଟା ମୁଣ୍ଡଧରା ପଠାଣ ସହିତେ ସମସ୍ତେ "ସତ ସତ" ବୋଲି ପ୍ରୀତିମନରେ ପାର ହେଲେ । ସତକୁ ପ୍ରିୟ କରି ତରଙ୍ଗ ନଦୀ ପାର ହେବାରୁ ସତ୍ୟପୀର ନାମ ଦେଇ ସେ କଟା ମୁଣ୍ଡକୁ ଇଷ୍ଟଦେବତା କରି ସେବିଲେ । ଆଲ୍ଲା ବୋଲି ପୁଣି ପାରି ହେବାରୁ ସେହି ଦେବତାକୁ ଆଲ୍ଲା ନାମ ଦେଲେ । କୁଳଦେବତାଙ୍କର ଆଜ୍ଞା ମାନି ସେ ଦିନଠାରୁ ଶକର ତେଜ୍ୟା କଲେ । "ସକଳ ପଠାଣେ ଶଅର ତ୍ୟାଗିଲୁଁ" ବୋଲି ପୀର ଦେବତାଙ୍କର ନିୟମ କଲେ ।

ଏ ଉତାରେ ବାଦଶାହଙ୍କର ପାଟଘୋଡ଼ା ନିଜ ବାହନ ଲାଞ୍ଜ-ଛେଦ-ଅହଂକାରକୁ ଧନୁର୍ଜ୍ଜୟ ନାରଙ୍ଗିରଜାଙ୍କ ସଙ୍ଗତେ ବାରବରଷ ଯୁଦ୍ଧ କଲେ । ନେପାଳ ରାଜ୍ୟରୁ ନାରଙ୍ଗିରଜାଙ୍କର ଥାପନ ଶିବ ବାଦଶାର ପରାମର୍ଶ ପାଇ ଯବନଲୋକମାନେ ରାତିରେ ଆସି ଘେରାଇ ନେଲେ । ମକ୍‌କା ନାମେ ଜାଗାରେ ସେ ଶିବଙ୍କୁ ଥାପି ପହରା ଦେଇ ଯେଭେ ବଳି ଦେଇ ସେବା କରି ଆକଟ କରି ରଖିଲେ । ସେ ମହାଦେବ ନିମନ୍ତେ ଭୂୟାଁ ବାଦଶାହ ଅନେକ ସଂଗ୍ରାମ ହେଲା । ଦୁଇ କୋଡ଼ି ଆଠ ଘର ଭୂୟାଁଙ୍କୁ ନାଏକ ପଦ ଦେଇ ପାଞ୍ଚ ହଜାରି କରାଇ ନିଜେ ନାରଙ୍ଗିରଜା ସେନାପତି ହୋଇ ବାଦଶାର ଗଡ଼ ନୁଟି କରିଲେ । ଡିଲ୍ଲିଗଡ଼ରେ ଅଗ୍ନି ଉତ୍ସବ କରି ଜଳାଧଳା ଦୁଇ ଛତ୍ର ଜୟ କରି ତୋର ପାଉଡି ଧରି ତେର ମୂଳେ ଛତିଶ ଘର ଭୂୟାଁ ନିଜ ସ୍ଥାନ ତ୍ୟାଗି ପଳାୟନ କଲେ । ଆସି ମାନଧାତାନ ମେ ଖଣ୍ଡେିତ ରଜାଙ୍କ ଗଡ଼ କୋଇଲି ନଦୀ ନିକଟ ବାଁଶକଟା ପାହାଡ଼ ଡାହାଣ ତରଙ୍ଗ ପଥରଘେରା ଭିତରେ ତେର ପାଉଡି ରଖି ମାନଧାତାଠାରୁ ଅନୁସରଣ କରି ଅଠଗ୍ରାଳିଶ

ଘର ଭୂୟାଁ ରହିଲେ । ରହଣି ତିନି ବରଷ ଚ୍ଚରି ମାସ ଗତେ ପୁଣି ଭୋପାଳ ଦେଶରୁ ତଳପାଉଚ ଅସଂସ୍କାର ଭୂୟାଁ କୋଡ଼ିଏ ଘର ଅଇଲେ । କିଛିଦିନ ବାଦେ ନାରଙ୍ଗିମାନଧାତା ହଇ ରାଜା ମଇତ୍ର ହେଲେ । ସେ ମାନଧାତା ଅପୁତ୍ରିକ ଅଟନ୍ତି । ସେ ମାନଧାତା ନୃପତି ଭୋଜଗଡ଼ର ଚନ୍ଦେଲ ରାଜପୁତ ହରିଶ୍ଚନ୍ଦ୍ର ରଜାଙ୍କୁ ରଣରେ ଜୟ କରି ରାଜ-ଇଷ୍ଟ ଯୌକିକ ଦ୍ରବ୍ୟମାନ ଆଣି ସମ୍ପାଦି ଥିଲେ । ପାଟପୀଢ଼ା, ପାଟଖଣ୍ଡା, ଜୟଭକ୍ତ, ବୀରମାଟି, ନୀଳଘଣ୍ଟ, ପଗଡ଼ି, ଅଷ୍ଟରଚ୍ଚ ଛତ୍ର, ମଣିଦଣ୍ଡ, ପାଟଗାଦି, ପୁରୀ କ୍ଷେତ୍ରର ଇନ୍ଦ ଦ୍ୟମନ ରାଜଧାନୀ ବତିଶି ପାଟକ ବାଦେ ସେ ରଣଜୟ ଦ୍ରବ୍ୟ ସହିତ, ରାଜଚତୁଃସୀମା ସହିତ ଧନୁର୍ଜୟ ନାରଙ୍ଗିଙ୍କୁ ଟୀକା ସମର୍ପଣ କରି ଡମ ଜମିଦାର ବେଣୁକୁ କିଛି ଜମିଦାରୀ ଜାଗା ଦେଇ ମାନଧାତା ରାଜା ଗଙ୍ଗା ପାଇଲେ ।

ମାନଧାତାଙ୍କର ଚତୁଃସୀମା କହିବା -- ପୂର୍ବେ ବାଙ୍କି ନାଳ, ଦକ୍ଷିଣେ ଝଡ଼କେଇଠାରୁ ବୈତରଣୀ, ଉତ୍ତରେ କରାଣ୍ଟି ପାହାଡ଼, ପଶ୍ଚିମେ ଫୁଲଝରି ନାଳ ।

ଯେଉଁ ଯେଉଁଠାରୁ ବେଣୁକୁ ଜମିଦାରୀ ଜାଗା ଦେଇଥିଲେ ତାହା କହିବା -- ଦକ୍ଷିଣସୀମା ସଣ୍ଡେଇ ନଦୀ, ପୂର୍ବରେ କୁକୁଡ଼ୁଙ୍ଗୁରି, ଉତ୍ତରସୀମା ରାଧା-ସୁବନ ପର୍ବତ, ପଶ୍ଚିମେ ବାଁଶକଟା ପାହାଡ଼ । ଏ ରୂପେ ମାନଧାତା ରାଜା ବେଣୁ ଜମିଦାରର ଚତୁଃସୀମା ଜାଣିବ ।

ସେ ବେଣୁର ତିନପୁଅ ନାମ କହିବା -- ଅସନତରି, ବାଲିଜୁରି ଏ ଦୁଇ ସାନ ପୁଅ । ବଡ଼ ପୁଅର ନାମ ପଡ଼ା । ଏ ତିନିହେଁ ତିନି ପୀଢ଼ ଭୋଗ କରନ୍ତି । ବେଣୁର ରଖଣିଆ ପୁଅ ଦୁଇଗୋଟି ଗୁମଲ୍ଲା ଓ ଚଡ଼ା । ଏ ଦୁଇଜଣ ବୈତରଣୀ ତରଫ ଦୁଇପୀଢ଼ ଭୋଗ କରନ୍ତି ।

ଏଥି ଉତ୍ତାରେ ମାନଧାତାଠାରୁ ରାଜଧାନୀପଣ ପାଇ ନାରଙ୍ଗିରଜା ବନ୍ଧୁମାନଙ୍କୁ ସୁଘରେ ରଖି ନିଜ ଜାଗାରେ ହୁକୁମ ଜାରିକଲେ । ବେଣୁର ଅନ୍ତର ପାଞ୍ଚପୁତ୍ରେ ପାଞ୍ଚ ଜମିଦାର ହୋଇ ବଡ଼ିମାପଣ ଧରି ଅମାନ୍ୟ କଲେ । ନାରଙ୍ଗିଙ୍କର ଆଦ୍ୟରେ ପଶ୍ଚିମେ ରାଜପଦ ହେଲା । ପୁଣି ଦଣ୍ଡପାଟ ଗାଦି ପାଇ ଦଣ୍ଡପାଟ ପଦ ହେଲା । ପୁଣି ମାନଧାତାଠାରୁ ଟୀକା ପାଇବାରେ ସେ ପୂର୍ବର ରାଜପଦ ହେଲା । ସେ ନାରଙ୍ଗି ରଜାଙ୍କୁ ଅପମାନ କରି ପାଞ୍ଚ ପୀଢ଼ରେ ଜମିଦାର ମେଳ ହୋଇ ମାନଧାତାର ଏକ ରଖଣୀ-ପୁଅ ଥିଲା, ସେ ଭୂମିଜ ତିରିରୁ ଜନମ, ତା'ର ନାମ ଦୁଗୁନା ସିଂଘ, ତାକୁ ଦଣ୍ଡପାଟ ପଦରେ ଥାପିଲେ । କିଛିଦିନ ବାଦେ ନାରଙ୍ଗିରଜା ସେମାନଙ୍କୁ କ୍ରୋଧକରି ଅନେକ ସୈନ୍ୟଦଳ ଧରି ମା ପାଉଡ଼ିଙ୍କୁ

ସୁପ୍ରସନ୍ନ କରାଇ ପ୍ରଥମେ ପଡ଼ା ଜମିଦାରକୁ ସାଧ୍ୟ କରିବା ନିମନ୍ତେ ବିଜେ କଲେ । ପଡ଼ା ଗ୍ରାମ ନାମ ଥିଲା । ସେ ଗ୍ରାମରେ ପୁଣି ମା ଗୋଳ କଲେ । ପଡ଼ା ଜାତିରେ ଡମ, ତା'ର ବାପର ନାମ ବିଜୁ, ସେ ଲଢ଼ିତେ କାତର ହୋଇ ସକୁଟୁମ୍ବ ଧରି ଶିଖରଭୂଇଁକୁ ହଟି ପଳାଇଲା । ପଡ଼ା ଜମିଦାର ହଟିଯିବାରେ ସେଦିନଠାରୁ ସେ ଗ୍ରାମକୁ ପଡ଼ାହାଟ ନାମ ଦେଲେ ।

ତା' ଉତ୍ତାରେ ଚଡ଼ା ଜମିଦାର ସଙ୍ଗେ ନଗାଉ କଲେ । ତା' ସଙ୍ଗେ ତିନିବରଷ ଲଢ଼ିଲେ । ତଥାପି ସାସିଦ କରି ନପାରିଲେ । କିଛିଦିନ ଉତ୍ତାରେ ମା' ପାଉଡିଙ୍କି ସୁପ୍ରସନ୍ନ କରାଇ ସୁଯୋଗେ ଯାଇ ଚଡ଼ା ଜମିଦାରକୁ ଧରି ଧନୁର୍ଜ୍ଜୟ ନାରଙ୍ଗି ଏକ ଖ୍ୱେଡ଼ ମାଇଲେ । ଏକା ଖ୍ୱେଡ଼କେ ରକତ ଉଲୁଗି ମରିଲା । ସେଦିନ ସମସ୍ତେ ଥାଇ ଚଡ଼େଇ ନାମଦେଇ ସେ ପୀଢ଼ରେ ସିଂଘ ନାଗରା ସ୍ୱର ଦେଲେ ।

କିଛିଦିନ ଉତ୍ତାରେ ଆର ତିନି ଜମିଦାର ନାରଙ୍ଗିଠାରେ ଶରଣ ପଶିବାରେ ନିଜର ଦଣ୍ଡପାଟପଣ ଦେଇ ଦୁଶୁନି ପୀଢ଼ ବାର ମଉଜା ଦଖଲ ଦେଲେ ।

ନାରଙ୍ଗି ରାଜା ସୁଦୟା କରି ଷୋଳକେଳି ବନ୍ଧୁଙ୍କୁ ସିଧା ଡିହୀ ପୀଢ଼ ଖିଲାତ ଦେଲେ । ସେ ଗ୍ରାମ ଷୋଳକେଳି ଭୂୟାଁଙ୍କର ହେବାରୁ ଷାଳେଇକଳା ନାମ ଦେଲେ । ସିଧାଡିହୀ ନାମ କଟାଗଲା । ଏ ଉତ୍ତାରେ ସେ ଷଢ଼େଇକଳା ବାରଘର ବନ୍ଧୁଙ୍କ ତିଉଣିଆ ମିଶି ବାର ମଉଜା ଦେଲେ । ସେ ଗ୍ରାମ ବାରଘରର ହେବାରୁ ବାରତିଉଣିଆ ନାମ ହେଲା ।

ସରାକଡିହୀ ନାମରେ ଗୋଟିଏ ଗ୍ରାମ ଥିଲା; ସେଠାରେ ସରାକମାନେ ଥିଲେ । ନାରଙ୍ଗି ରାଜାଙ୍କୁ ଅମାନ୍ୟ କରି ପାଞ୍ଚ ଜମିଦାରର ତରଫ ହେଲେ । ନାରଙ୍ଗିରଜାଙ୍କ ତରଫ ପରମାନାମେ ବାଙ୍କାଭୂୟାଁ ସାହାପଟ ହୋଇ ସେ ସରାକମାନଙ୍କୁ ସାଧ୍ୟ କରାଇନେଲା । ବାଙ୍କ ଭୂୟାଁ ସାହା ହେବାରୁ ସେ ସରାକଡ଼ିହୀ ପୀଢ଼ ନାରଙ୍ଗି ଜୟ କଲେ । ସେ ଗ୍ରାମର ଆଦ୍ୟ ନାମ କାଟକରି ବାଙ୍କସାହି ନାମଦେଲେ ।

ଏ ଉତ୍ତାରେ କିଛିଦିନ ବାଦେ ଧନୁର୍ଜ୍ଜୟ ରଜା ସର୍ମଦା ପୀଢ଼କୁ ବିଜେ କଲେ । ସେ ଗ୍ରାମରେ ଖରନାମେ ଏକ ଭାଟ ଜମିଦାର ଥିଲା । ସେ ଅଣି ମଉଜାର ମାଲିକ । ତା' ସଙ୍ଗେ ପନ୍ଦର ବରଷ ନଢ଼ି (ଲଢ଼ି) ସାଧ୍ୟକରି ନ ପାରି ମା ପାଉଡ଼ିଠାରୁଁ ହୁକୁମ ଅଣାଇ ଜନ୍ତାଳ କାମନା କରି ତାଟକ (ଶୀଘ୍ର ?) ଯାଇ ଖର ଜମିଦାରର ଗଡ଼ରେ ନିଆଁ

ଲଗାଇଲେ । ନିର୍ଘାତ ମାରୁଣି ଦେଲେ । ବାକ୍ଷଠି ଘର ଭାଟ ସେ ନିକଟେ ଯେ ଯେ ଥିଲେ, ପ୍ରାଣଭୟରେ ସମସ୍ତେ ସମର୍ଦା ଗ୍ରାମରୁ ଛାଡ଼ି ପଳାଇଲେ । ମା'ପାଉଡିଙ୍କର ମହିମାରୁ ଖର ଜମିଦାର ନାଶ ବୁଦ୍ଧି କରି ଶୋଇବାଠାରୁ କଦାପି ଉଠି ନ ପାରିଲା । ଅଗ୍ନି-ତ୍ରାସ ପାଇ ରକତ ଝାଡ଼ା କରି ଖରଭାଟର ପରାଣ ଗଲା । ସେ ଚଉରାଶି ମଉଜା ନାରଙ୍ଗି ହାତକୁ ଅଇଲା । ଖର ଜମିଦାର ଉଠି ନ ପାରି ଶୁ (ଶୋ) ଇ ମରିବାରୁ ସେ ଗ୍ରାମରେ ନାମ ଖରସୁଆଁ ଦେଲେ ।

ଏ ରୂପେ ମାଦଳିଆକୁ ଜାଣିବ ।

ଏଥୁ ଉତ୍ତାରେ ଶ୍ରୀ ଧନୁର୍ଜ୍ଜୟ ନାରଙ୍ଗି ବାରବନ୍ଧୁଙ୍କୁ ବାର ପାଉଡ଼ି ବାଣ୍ଟିଦେଲେ ।

ଏମନ୍ତ ସମୟେ ସିଂଘ (ହ)ଳ ଦ୍ୱୀପୀ ବୈଦ୍ୟନାଥ ସିଂଘ, ବାହାଦୂର ସିଂଘ, ଦୁଇ କ୍ଷେତ୍ରୀ । ଏ ଦୁଇଭାଇ ସାନ, ବଡ଼ ଭାଇ ଦିଗାମ୍ବର ସିଂଘ, ବାପ ନାମ ବିଶକେସନ ସିଂଘ । ଭାଇ ଭାଗ ନ ପାଇ ଝଗଡ଼ା କରି ମନ ବିଚ୍ଛେଦରେ ଆସି ନାରଙ୍ଗିଗଡ଼ରେ ସେ ପାଉଡ଼ି ବାଣ୍ଟ ସମୟେ ପ୍ରବେଶ ହେଲେ । ବୈଦ୍ୟନାଥ ସିଂଘ ଉମେର (ଉମର) ବତିଶ, ବାହାଦୂର ସିଂଘ ଉମର ପଚିଶି । ଦୁଇଭାଇ ମାଟି ମାଖି ଅଶ୍ୱରେ ଚଢ଼ି ପଞ୍ଚଶସ୍ତ୍ର ଧରି, ବୀରମୂର୍ତ୍ତିରେ ଆସି ଧନୁର୍ଜ୍ଜୟ ନାରଙ୍ଗିଠାରେ ଚିହ୍ନା ପରଚେଇ (ପରିଚୟ) ଦେଲେ । କ୍ଷେତ୍ରୀଙ୍କର ଯେତେ ବିଶିଷ୍ଟ ବିଦ୍ୟା ତାହା ଦେଖାଇଲେ । ନାରଙ୍ଗି ସହିତ ସକଳ ଭୂୟାଁ ଦେଖି ଆନନ୍ଦ ହୋଇଲେ । ଅତି ଆଦରକରି ଗୁଣ ଶିଖିବା ନିମନ୍ତେ ସିଂଘକୁ ଉତ୍ତମ ପ୍ରକାରେ ରଖିଲେ । କିଛିଦିନ ଭୂୟାଁ ପିଲାଙ୍କୁ ସାଧନଖେଳ ଶିଖାଇଲେ । ସବୁର ସଙ୍ଗତେ ଦୁଇଭାଇ ସମ୍ପର୍କ ଯୋଡ଼ିଲେ । ଅତି ପରିଚୟ ପ୍ରେମ ପାଇ ଏଗାର ବରଷ ରହିଲେ ।

ପୁଣି କିଛିମାସ ବାଦେ ବୀରବର ବାଦଶା ହଜାରେ ବରଗି ସୈନ୍ୟ ଧରି ନାରଙ୍ଗି ଗଡ଼କୁ ଖେଦାଇ କଲେ । ଭୂୟାଁ ବାଦଶାର ଭାରି ଯୁଦ୍ଧ ହେଲା । ସିଂଘ ଦୁଇଭାଇଙ୍କର ବଳ ବିଡ଼ିବା ନିମନ୍ତେ ନାରଙ୍ଗିରଜା ଦୁଇ ସିଂଘକୁ ରାଜ୍ୟ ସମ୍ଭାଳ ବୋଲି ପଉରୁଷି ଦ୍ରବ୍ୟ ଖିଲାତ ଦେଇ ଗହଣରେ ଅଶିଜଣ ଫଉଜ ଦେଇ ମା ଘର ଅର୍ଚ୍ଚିତା ଗ୍ୱଉଳଦେଇ, ଗୁଳି, କାଣ୍ଡ ଛୁଆଁଇ ସୈନ୍ୟ ତିଆରି ଦୁଇ ସିଂଘକୁ ସେନାପତି କରି ରଣ କରିତେ ପଠାଇଲେ । ଭୂୟାଁ ସୈନ୍ୟ ସହିତ ସିଂଘ ଉଗେର ପ୍ରାଣ ମୂର୍ଚ୍ଛିକାରନଦୀ ନିକଟରେ ଘୋର ଯୁଦ୍ଧ କଲେ । ଭୂୟାଁ ତରଫ ପାଞ୍ଚଜଣ-ବାଦଶାହ ତରଫ ପଚ୍ଚଶ ଜଣ ଗୁଳିକାଣ୍ଡ ପାଇ ମଲେ । ବେଲପତ୍ରୀ ଅର୍ଚ୍ଚିତା ଗ୍ୱଉଳରେ କାଣ୍ଡ ଖଣ୍ଡା ଛୁଆଁଇ ଜୟ ମା ଭୋପାଳେଶ୍ୱରୀ ବୋଲି ସେ କାଣ୍ଡଖଣ୍ଡା ପେଶି ଅନେକ ସୈନ୍ୟ ନାଶ କରିଲେ । ତିନିଶ ବରଗି ବନ୍ଧୁଙ୍କ ରଡ଼ି ଶୁଣି ରକତ ଉଛୁଳି

ମଲେ । ଆରମାନେ ବାଦଶା ସହିତେ ମୃତ୍ୟୁତରେ ପଳାଇଲେ ବରଗି ସମସ୍ତ । ସେ ଦିନରୁ ନାରଙ୍ଗି ନିର୍ଭୟ ହେଲେ । ଏଣୁ କରି ସେ ରଣସ୍ଥାନକୁ ଅଭୟପଦା ନାମଦେଲେ ।

ଦୁଇ ସିଂଘ ସେ ଅର୍ଚ୍ଚିତା ଗୃଢ଼ଜଳର ମହିମା ଦେଖି ଧନ୍ୟ ଧନ୍ୟ ବୋଲି ଦେବୀକୁ ପ୍ରଶଂସା କଲେ । ସିଂହ ନାଗରା ନିଶାଣ ଦେଇ ନାରଙ୍ଗ ଛାମୁକୁ ଅଇଲେ । ଧନୁର୍ଜ୍ଜୟ ନାରଙ୍ଗି ଆସନରୁ ଉଠି ସେ ଦୁଇ ସିଂଘକୁ ଜୁହାର କଲେ । ବନ୍ଧୁମାନଙ୍କୁ ପ୍ରେମ-ମିଳାପ କରି କୋଳ ଦେଇ ଆସନ ଦେଲେ । ଏ ଦୁଇ ସିଂଘକୁ ଧନ୍ୟ ଧନ୍ୟ ବୋଲି ସମସ୍ତ ସୈନ୍ୟ ଲୋକେ ପ୍ରଶଂସା କଲେ । ନାରଙ୍ଗି ଆଦି ଦେଶ ଓଗେର ସମସ୍ତେ ଆନନ୍ଦ ହୋଇ ଅତି ସୁପ୍ରସନ୍ନ ହୋଇ ପଗ୍ଚରିଲେ, "ହେ ସିଂଘ ବାବୁମାନେ ଆପଣଙ୍କର ଯାହା ଇଚ୍ଛା ତାହା ମାଗଣ କର । ମୁଁ ନିଶ୍ଚେ ଦେବଇଁ । "ଏହାଶୁଣି ଦୁଇଭାଇ ପଇରେ ପରିଯନ୍ତେ ଧୀର ହୋଇ ରହିଲେ । ଭୂୟାଁମାନେ ବୋଇଲେ "ହେ ନାରଙ୍ଗି ବନ୍ଧୁ, ଆପଣ ଆମ୍ଭଙ୍କୁ କିଛି ସୁ-ଅନୁଗ୍ରହ କର ।" ନାରଙ୍ଗୀ ବୋଇଲେ "ତୁମ୍ଭେ କି ମାଗୁଅଛ କହ । ଆଜି ମୋର ରାଜ୍ୟ ଜୟ କରିଦେଲ, ଯାହା ବୋଲିବ ଆପଣମାନେ ମୁଁ ତାହା କରିବି । ମୋରସତ୍ୟ ସତ୍ୟ ସତ୍ୟ ତ୍ରିବାର ସତ୍ୟ । ଏକଥାକୁ ମା ପାଉଡି ସାକ୍ଷୀ ।" ସବୁ ଭୂୟାଁମାନେ ଏହା ଶୁଣି ଆନନ୍ଦ ହୋଇ ବୋଇଲେ "ଆଜଠାରୁ ଏହି ମାଗୁଅଛୁ । ଯାବତ୍ ଚନ୍ଦ୍ର ସୂର୍ଯ୍ୟ ତାବତ୍ ତୁମ୍ଭର ଆମ୍ଭର ଭିନ୍ନ ଭିନ୍ନ ହେବୁନାଇଁ । ସତ୍ୟ ସତ୍ୟ ସତ୍ୟ ତ୍ରିବାର ସତ୍ୟ । ଏ କଥାକୁ ମା ପାଉଡ଼ି ସାକ୍ଷୀ । ତୁମ୍ଭର ଯହିଁ ଘର୍ମ ବିନ୍ଦୁ, ଆମ୍ଭର ତହିଁ ରକ୍ତ ବିନ୍ଦୁ । ତୁମ୍ଭେ ମହାଯଜ୍ଞ କରି ଆମ୍ଭଙ୍କୁ ସ୍ପର୍ଶ କରିଲ ଏ ଉପକାର ଶୁଝି ନ୍ ପାରିବୁଁ । ଏଣୁକରି ଆପଣ ଆମ୍ଭର ଭୋଜ (ଭୁଜ) କୁଳର ଜାତିଶିରୋମଣି ହେଲ । ଭୂୟାଁ-ବୀଜରେ ଯେତେ ଉପତି, ସେ ଆପଣଙ୍କୁ ଜାତିଶ୍ୱରପଣେ ଆଜ୍ଞା ମାନି ସେବିବେ । ଏ କଥା ଯେଉଁ ଭୂୟାଁ ଲଘିଂବ, ସେ ମାତୃହରିବ; ଗୋରକ୍ତ ପିଇବ, କୁଶ ଅଗ୍ରେ ଜଳ ଦେବାକୁ କେହି ନ ରହିବେ ।"

ଏମନ୍ତ ସତ୍ୟ କରି କିଛିଦିନ ଉତ୍ତାରେ ସମସ୍ତେ ସଭା କରି ବସି ଦୁଇ ସିଂଘକୁ ପୁଣି ସେ ଆଦ୍ୟର କଥା ପଚାରିଲେ । "ତୁମ୍ଭର ଯାହା ମନର ଇଚ୍ଛା ତାହା ମାଗ ।" ସିଂଘ ବାବୁ ବୋଇଲେ "ଆମ୍ଭଙ୍କୁ ମଣ୍ଡଳାପ୍ରମାଣେ ମାଟି ଖଣ୍ଡେ ଟେକି ଦିଅ, ଏକ ମୂର୍ତ୍ତି ପାଉଡ଼ି ଦିଅ ।"

ସିଂଘଠାରୁ ଏହା ଶୁଣି ସକଳ ଭୂୟାଁ ନାରଙ୍ଗିମୂଳେ ଆସି ପଡ଼ାହାଟ ସଙ୍ଗେଇ ନଦୀ କିନାରେ କଦମ୍ବମୂଳରେ ସମସ୍ତେ ମା' ଖଣ୍ଡେ ଧରି ସିଂଘକୁ ଟେକିଦେଲେ । ବୋଇଲେ "ଯାବତ୍ ଚନ୍ଦ୍ର ସୂର୍ଯ୍ୟ ତାବତ୍ ଏ ମାଟି ଦେଲୁଁ । ପାଉଡି ଏକ ମୂର୍ତ୍ତି ଦେଲୁଁ । ଏକଥା କଦାପି ଅନ୍ୟଥା ନୋହିବ । ଏଥକୁ ଧର୍ମଦେବତା ସାକ୍ଷୀ ।"

ଏହାଶୁଣି ସିଂଘ ଦୁଇଭାଇ ଆନନ୍ଦ ହୋଇ ବୋଇଲେ "ଏଠାରେ ଆମ୍ଭଙ୍କୁ ଶୁଭଯୋଗ ହେଲା । ଆଜଠାରୁ ଏ ସ୍ଥଳ ଶୁଭସ୍ଥାନ ହେଉ । ସିଂଘ ବଂଶାନୁଯାବତ୍ ଥିବେ ତାବତ୍ ଏ କଦମ୍ବ ବୃକ୍ଷ ନ ଛେଦିବେ ଯେ ଛେଦିବ; ଗୁରୁ ମସ୍ତକେ ଲାଥ (ନାତ) ମାରିବ ।"

ନାରଙ୍ଗରଜା ସୁପ୍ରସନ୍ନ ହୋଇ ସମସ୍ତେ ସଭା କରି ବିଗ୍ରର କଲେ । ଏମାନେ ରଜାଙ୍କର ପୁତ୍ର, ଏମାନଙ୍କୁ ଶ୍ରୀପଡ଼ାହାଟରେ ରାଜଧାନୀ ଦେବା । ଏକଥା ସମସ୍ତେ ସନ୍ନମତ କରି ଅଭିଷେକ ବିଧି ଆରମ୍ଭ କଲେ । ସେ ରାତିରେ ପାଉଡ଼ି ଦେବୀଙ୍କର ବୈଦ୍ୟନାଥ ସିଂଘକୁ ସପନ ହେଲା । ମା ବୋଇଲେ "ମୁଁ ତୋତେ ସୁପ୍ରସନ୍ନ ହେଲି ! ତୁ ସ୍ୱହସ୍ତେ ପୂଜା ନ କରିବୁ । ବୀର ଭିତରୁ ଜଣେ ଭୂୟାଁ ହସ୍ତରେ ସେବା କରାଇବୁ । ମୋର ଭୂୟାଁ ହାତରେ ସନ୍ତୋଷ ।" ଏ ଉତ୍ତାରେ ପୁଣି ସପନ ଦେଖିଲେ "ତୁ ପ୍ରଥମେ ରାଜଗାଦିରେ ନ ବସିବୁ । ନାରଙ୍ଗି ମୋର ବରପୁତ୍ର । ସେ ପ୍ରଥମେ ବସିବ । ଦଣ୍ଡେ ପ୍ରମାଣେ ବସି ତୋରଠାରୁ ଦଣ୍ଡପାଟପଣ ପାଇ ତୋତେ ଟୀକା ଦେଇ ପାଟ ବାନ୍ଧି ରାଜଗାଦିରେ ବସାଇବ । ଏହା ନକଲେ ବଡ଼ ମନ୍ଦ ହେବ । ରାଜପଣ ନ ଖଟିବ ।"

ଏ ସପନ ବୈଦ୍ୟନାଥ ସିଂଘ ଶ୍ରୀ ଧନୁର୍ଜ୍ଜୟ ରଜାଙ୍କୁ ଶୁଣାଇଲେ । ଆରଦିନ ପାଟଗାଦି ବିଛାଇ ଅଭିଷେକ ବିଧି କରାଇଲେ । ବଇତରଣି (ବୈତରଣୀ) କିନାର ପୂର୍ବ ଭାଗରେ ଜୟନ୍ତୀ ବୃକ୍ଷ ଜଟିଆ ପାଟ ଥାନରୁ ବାର ରହି ମାଟି ଆଣି ଗୁପତେ ରାତିରେ ବାଁଶକଟା ପାହାଡ଼ ଝରଣାର ପାଣି ଆଣି ସେ ମାଟିରେ ଗୋଳାଇ କାନି ଆଙ୍ଗୁଳିରେ ନଖାରି ଟୀକା ଦେଲେ । ପ୍ରଥମେ ମଣିଦଣ୍ଡ ଧରି ନାରଙ୍ଗିଆପଣେ ଗାଦିରେ ବସି ଦଣ୍ଡପାଟ ପଦ ନେଇ ଶ୍ରୀ ବୈଦ୍ୟନାଥ ସିଂଘକୁ ମଥାରେ ନୀଳପାଟ ପଗଡ଼ି ବାନ୍ଧିଲେ । ପୁଣି ଚନ୍ଦନ ଟୀକା ଦେଇ ଶ୍ରୀ ଶୁଭସ୍ଥାନରେ ରାଜା କଲେ, ଦେବତା ଦେହୁରି ସମର୍ପଣ କଲେ । ନାରଙ୍ଗି ଅଷ୍ଟରତ୍ନ ଛତ୍ର ଧରିଲେ । ମଣିଦଣ୍ଡ ସମପ ମଣିମା ପଦ ନେଲେ । ଶମ୍ଭୁ ବାରିଙ୍ଗକୁ ଦେହୁରି କରି ପାଉଡି ସମର୍ପଣ କଲେ । ଗ୍ରାମେଶ୍ୱରୀ ପାଉଡି ସିଂଘକୁ ଦେଲେ । ଭୁବନେଶ୍ୱରୀ ପାଉଡ଼ି ଭୂୟାଁମାନ ନିଜେ ରଖିଲେ । ବୈଦ୍ୟନାଥ ସିଂଘ ମହାରାଜ ଧର୍ମ ବିଗ୍ରରି ଧନୁର୍ଜ୍ଜୟ ଦଣ୍ଡପାଟକୁ ଖୋରପସକ (ଖୋରାକ-ପୋଷାକ) ଜମିଦାରୀ ଚଢ଼େଇପୀଢ଼ ଚଉରାଶି ମଉଜ ଚିରକାଳକୁ ଦେଲେ । ଖୁଦିନାମେ ବାଥଡ଼ି ଜମିଦାରକୁ ସାଧ୍ୟକରି ଶ୍ରୀ ପାଉଡ଼ିଙ୍କର ସେବା ନିମନ୍ତେ ଖୁଦିପୀଢ଼ ଦେବୋତ୍ତର ଦେଲେ । ରାଜଧାନୀ ବାସ୍ତରିପାଟକ ବାଦେ ଦାମୋଦର ସିଂଘ ଜୈ (ଜୟ) ନାଥ ସିଂଘ ବୈତରଣୀ ନିକଟ ଜାଗା ଚରଚିତେ ବିଜେ ହେଲେ । ସେ ନଦୀ କିନାରେ ଜାମଦା ନାମରେ ଏକ ଗ୍ରାମ ଥିଲା । ସେଠାରେ ଜଗନ୍ନାଥ ନାମେ ଏକ

ଭୂମିକ ମୁଣ୍ଡାପାଦପାଇ ସେ ପୀଢ଼ ଭୋଗ କରୁଥିଲ । ସେ ମୁଣ୍ଡା ସିଂହରାଜଙ୍କର ଅମାନ୍ୟତ ହେଲା । ତାକୁ ହତ୍ୟାର ବଳରେ ନିପାତ କରି ଜୟ ହେବାରୁ ଜୟନ୍ତୀ ନାମ ଦେଇ ଜୟନାଥ ସିଂଘ ଗଡ଼ କରି ରହିଲେ ।

ସେ ଜଗନ୍ନାଥ ମୁଣ୍ଡା ହାଣ ଖାଇ ଆଗତିରେ ମରିଥିଲା । ସେ ପୁଷ୍କର ପାଇ ଭୂତ ପାଲଟି ଅନେକ ବିଘ୍ନ ଦେଖାଇଲା । ସେ ଜୟନ୍ତୀ ଗଡ଼ରେ ବଂଶବୃଦ୍ଧି ନୋହିଲା । ଏଣୁକରି ଦହସତ ପାଇ ପୁଣି ପୁଡ଼ାହାଟ (ପଡ଼ାହାଟ ?) ଆସି ରହିଲେ । ସେ ରାତିରେ ବଡ଼ାମ୍ନ (ବଡ଼ାମାଟି) ଦେବତାର ସପନ ହେଲା । ମୁଁ ପୂଜା ପାଇଲି ନାହିଁ । ମୋତେ ସେବିଲେ ଏ ଗଡ଼ରେ ସବୁ ବିଜୟ ହେବ ।'' ଏମନ୍ତ ସପନ ଦେଖି ଶ୍ରୀ ଦାମୋଦର ସିଂଘ ମହାରାଜା ଦଣ୍ଡପାଟଙ୍କୁ ଗୋଚର କଲେ । ଧନୁର୍ଜୟଙ୍କର ବାଉନ ପାଟକ ବାଦେ ଗୋପୀନାଥନାମେ ଦଣ୍ଡପାଟ । ସେ ଦଣ୍ଡପାଟ ବାର ବନ୍ଧୁଙ୍କୁ କହିଲେ ''ତୁମ୍ଭେ ବଡ଼ାମର ସେବା କର ।'' ସେମାନେ ବୋଇଲେ ''ସେ ବଡ଼ାମ୍ନ ଅଛବ ଲୋକ ସେବା କରୁଥିଲା କୁକୁଡ଼ାବଳି ଦେଇ । ଆମ୍ଭେ ସେବିତେ ନାଦାନ । ଏକଥିକ (ଲୋକ) ରଖିଥିଲା ବାଥଡ଼ି ଜମିଦାର ତିରିକୁ (ସ୍ତ୍ରୀକୁ) । ସେ ଅସ୍ବର୍ଣ ବୀଜରୁ ବାଥୁଡ଼ି ଜାତ । ସେ ଇଷ୍ଟକରି ପଥରକଟା ପର୍ବତେ ରଖିଥିଲା । ତା'ର ବଂଶ ନିପାତ ହେବାରୁ ବଡ଼ାମ ଦେବତା ଅପୂଜ୍ୟ ଅଛନ୍ତି । ସେ ଦେବତା ଆମ୍ଭେମାନେ ନ ସେବିବୁଁ ।'' ବାରଘର, କୋଡ଼ିଏ ଘର, ଷୋଳଘର -- ଏମାନେ ନାସ୍ତି କରିବାରେ ଭିତିରି ପରାମର୍ଶ କରି ନ ଘରିଆ ଡମା ନାମେ ବାଉଁରି ଭୂୟାଁଙ୍କୁ ବଡ଼ାମ ଦେହୁରି କଲେ । ସେ ବଡ଼ାମ ସେବା କରିଲା । ସମସ୍ତେ ଅନୁମତି ଦେଲେ ।

୧- ବାଉରି, ୨- ଜଗତି, ୩- ଭୋଇ, ୪-ବାରସଇ, ୫-କଡ଼ା, ୬, କଡ଼ାଳି, ୭- ଟିଆସି, ୮- କଣ୍ଟେଇ, ୯-କାନ୍ଦରି, ଏମାନେ ନ-ଘରିଆ ବୋଲି ଜାଣିବ । ଏମାନଙ୍କର ଇଷ୍ଟଦେବତା ବଡ଼ାମ । ଅନ୍ୟ ଭୂୟାଁଙ୍କର ପାଉଡ଼ି ।

ଏ ଉତାରେ ବଡ଼ାମ ସେବା କରାଇଲେ । ତଥାପି ସିଂଘ ରାଜା ହିସତ ରଖି ସେ ଜୟନ୍ତୀରୁ ଗ୍ୱରି ମଉଜା ବିଷଇ (ବିଷୟୀ) ପାଦଦେଇ ମୋଲକର ଭଲମନ୍ଦ ବିଷୟ ଗୋଚର କରାଇବା ନିମନ୍ତେ ନିଜ ଗୋସାଇଁଙ୍କୁ ପୁରଶ୍ଚରଣ ହୋଇ ଗ୍ୱରି ମଉଜା ଦେଲେ । ବିଷୟ ଚର୍ଚ୍ଚା ନିମନ୍ତେ ଦୁଇ ମଉଜା ଦେଲେ । ଷଡ଼ଙ୍ଗୀ ଗୋସ୍ୱାମୀକୁ ରାଜଗ୍ରାମ ମିଶି ତିନି ମଉଜା ଦେଲେ । ପଶ୍ଚିମ ବ୍ରାହ୍ମଣ ପରମା ନାମେ ପଣ୍ଡା, ଚକ୍ରଧର ନାମେ ପଣ୍ଡା -- ଏ ଦୁଇଜଣରୁ ବଡ଼ଭାଇକୁ ପୁରୋହିତ କଲେ । ଏକ ସାରବଣି ନାମରେ ଗ୍ରାମ ଥିଲା । ତାକୁ ଚକ୍ରଧରପୁର ନାମ ଦେଇ ଚକ୍ରଧର ପଣ୍ଡାକୁ ଦେଲେ ।

ସିଂଘ ମହାରାଜ ଆପଣେ ଯେଉଁ ଦୁଇଗୋଟି ଦେବୀକୁ ଦୁଇ କାନ୍ଧରେ ବିଜେ

କରାଇ ଆଣିଥିଲେ, ତାଙ୍କର ସେବା ଅର୍ଥେ 'ଦେଓ' ସଞ୍ଜାରେ ଏକ ରାଜପୁତକୁ ଦେଓଗ୍ରାମ ଦେଲେ ।

**ସେ ଦେବୀଙ୍କର ଗୁନିଆଦି ଚରିତ୍ର କହିବା** -- ଗୋଟିଏ ଦେବତାର ନାମ ମହାମାଈ, ଆଉ ଗୋଟିଏ ଦେବତାର ନାମ ମାଈ । ସେ ମହାମାଈ ଦେବତାକୁ ବଡ଼ 'ଦେଓ' ବୋଲି । ମାଈ ନାମରେ ଯେଉଁ ଦେବୀ ସେ ସାନ 'ଦେଓ' ବୋଲାନ୍ତି । ପାଟବସ୍ତ୍ର ଧନୁର୍ଗୁଣରେ ତାଙ୍କର ଆସନ । ଦ୍ୱିପ୍ରଥରେ ପୂଜା ବଡ଼ 'ଦେଓ'ର । ମଙ୍ଗଳ ବିଷୟରେ ପୂଜା ହୋଇ, କଳା ଛାଗ ବଳି । ଅଛିଦ୍ର ମୁଣ୍ଡିଆ ପଡ଼ିବ । ଗଣ୍ଡିଆ ସେବାକାରୀର ଅଧିକାର । (ପୂଜାର ମନ୍ତ୍ର ଲିଖିତ ଅଛି; କିନ୍ତୁ ତାହା ଗୋପନୀୟ ଲେଖାଥିବାରୁ ଏଠାରେ ଉଦ୍ଧୃତ କରାଗଲା ନାହିଁ) ।

**ଏଥୁଁ ଉତ୍ତାରେ ଭୂୟାଁଙ୍କର କାଳି ନୂଆଁଗଡ଼କୁ ପଥର କସ୍ୱର୍ତି ଆସିବାର ଗୁନିଆଦି ସୂତ୍ର କହିବା** -- ବାଦଶାହ ବିବାଦରୁ ଧନୁର୍ଜୟମୂଳେ ବତିଶଘର ଭୂୟାଁ ବତିଶମୂଳେ ବିଶାଣଏ ଘର ଭୂୟାଁ ଆସି ନାଇଁ (?) ଗଡ଼ରେ ରହିଲେ । ସେଠାରେ ଲହରା ନାମରେ ଏକ ଚମାର ରଖୁଣୀ ପୁଅ ସରାକ ଜମିଦାର ଥିଲା । ତାକୁ ଅନୁସରଣ କରି ଭୂୟାଁମାନେ ଥିଲେ । ତା'ର ଅଣ-ଆଦର ଦେଖି ନ ରହିବା ବୋଲି ସକଳ ଭୂୟାଁ ଉଠିଆସି କାଳ ନୂଆଁଗଡ଼ରେ ରହିଲେ । ସେ ଗ୍ରାମର ନାମ ମାଟିପୁର ଥିଲା । ସେ ଗ୍ରାମରେ ସୁରେଇ ନାମରେ ସାଉଁତାଳ ରଜା ଥିଲା । କାଳିନୂଆଁ ନାମେ ତା'ର ଗୋଟିଏ ଭାଇଥିଲା । ସେ ଭାଗବଣ୍ଟା ନ ପାଇ କ୍ରୋଧେ ଭିନେ ରହିଥିଲା । ଭୂୟାଁଙ୍କର ବୀରଠାଣି ଦେଖି ସେ ନାରଙ୍ଗିଙ୍କ ପାଦତଳେ ପଡ଼ି କାଳିନୂଆଁ ଦଇନୀ କଲା "ମୋର ବଡ଼ ଭାଇଠାରୁ ମୋତେ ଭାଗ ଦିଆଇ ମିଳନ କରିଦିଅ ନୋହିଲେ ତାକୁ ମାରିଦିଅ, ମୋତେ ଏ ରାଜ୍ୟରେ ମାଲିକ କରାଅ । ତୁମ୍ଭମାନଙ୍କୁ ବାର ମଉଜା ବକସିସ ଦେବି ।" ଏହାଶୁଣି ସୁରେଇକୁ ସମସ୍ତେ ବୁଝାଇଲେ । ସେ ମୂଢ଼ କଦାପି ନ ବୁଝିବାରୁ ସୁରେଇକୁ ହାଣିଲେ। କାଳିନୂଆଁ ସାଉଁତାଳକୁ ମାଲିକ କଲେ । ସେଦିନ କାଳିନୂଆଁ ବୋଲି ସେ ପାଢ଼ର ନାମ ଦେଲେ ଏବଂ ଗଡ଼ର ନାମ ଦେଲେ ମାଟିପୁର ନାମ କାଟଗଲା । ବକସିସ ବାର ମଉଜା ପାଇଁ ବତିଶଘର ଭୂୟାଁ ନାରଙ୍ଗି ସେଠାରେ ରହିଲେ । ରହଣି ଆଠ ବରଷ ଉତ୍ତାରେ ଉତ୍ତରଦେଶରୁ ଧରୁଆ ଭୂୟାଁ ଦୁଇଭାଇ -- ହବିର ଓ କବିର ଆସି ସେ କାଳନୂଆଁ ଛାମୁରେ ଭେଟିଲେ । ବାଘ ଦୁଇଗୋଟି ଦୁଇ ହାତରେ ଧରି ଆଉ ଜଣେ ହାତୀ ପଡ଼ିଆରେ ଧରି ନାଟ ଦେଖାଇଲେ । ଖେତ୍ରୀ ବିଦ୍ୟା ଦେଖି କାଳିନୂଆଁ ରଜା ଆନନ୍ଦ ହୋଇଲେ । ଅତି ଆଦର କରି ଦୁଇଭାଇକୁ ଗ୍ରାମ ଦେଇ ନିକଟେ ରଖିଲେ । କିଛି ବରଷ ଉତ୍ତାରେ ସେ ଦୁଇ ଭାଇକୁ ମଉଜି କରି,

ବତିଶଘର ଭୂୟାଁକୁ ଡକାଇ କହିଲେ "ତୁମ୍ଭେମାନେ ହବିର ଓ କବିରକୁ ଦୁଇଗୋଟି କନ୍ୟା ଦିଅ ।" କାଳିନୂଆଁ ଜମିଦାର ମୁଖରୁ ଏ କଥା ଶୁଣି ନାରଙ୍ଗି ସୁଆଲ କଲେ "ଆମ୍ଭେ ଓ ଏମାନେ ଭିନ୍ନ ଭୂୟାଁ, କନ୍ୟା କିପରି ଦେବୁଁ ।" କାଳିନୂଆଁ ବୋଇଲା "ଜରୁର ଦିଅ । ନ ଦେଲେ ମୋ ଜାଗାରେ ନଥାଅ ।" ଦିନରେ ଏମନ୍ତ କହି ରାତିରେ ସେ ଦୁଇଭାଇଙ୍କୁ ପଠାଇ ଦୁଇ କନ୍ୟା ବଳାତ୍କାର ଟଣାଇଲେ । ଭୂୟାଁମାନେ ଜାଣିପାରି ସବୁରି ଇଜ୍ଜତ୍ ଗଲା ବୋଲି କ୍ରୋଧ କରି ଦୁଇ ଧାରୁଆକୁ ହାଣି ବଂଶବୁଡ଼ା କଲେ । ନିମକଖିଆ ଧରମ ବିଗ୍ରରି ସେ ଜମିଦାରକୁ ନ ମାଇଲେ । "ଏହାର ଗ୍ରାମରେ ଯେଉଁ ଭୂଆଁ ରହିବ, ସେ ମାତୃହରଣ କରିବ, ବଂଶ ନ ରହିବ" ଏମନ୍ତ ବୋଲି ସମସ୍ତେ ନିୟମ କରି ଗ୍ରାମ ବାହାର କଦମ୍ବ ମୂଳରେ ପଥର କଗ୍ରଡ଼ି ଥୁଙ୍କଦେଇ (ଛେପ ପକାଇ) ଯେ ଯାହା ଆବୋରି ଧରି ପଳାଇଲେ । ଏକ ଗ୍ରାମରେ ସମସ୍ତେ ଯାଇ ଗୋଠ ହେଲେ । ଗୋଠବିଞ୍ଜାଣି ବୋଲି ଥାନର ନାମ ଦେଲେ । ଆଦ୍ୟରେ ବିଞ୍ଜାଣି ନାମ ଥିଲା, ଗୋଠ ହେବାରେ ଗୋଠବିଞ୍ଜାଣି ବୋଲାଇଲା । ସେଠାରେ ବସି ଜଣେ ଭୂୟାଁ ବୋଇଲା "ମୁଁ ଏମନ୍ତ ହେବ ବୋଲି ଜାଣି ନ ପାରିଲି । ଜାଣିଥିଲେ ହବିର ଓ କବିରକୁ ବୁଦ୍ଧିକରି ଖେଦାଇ ଦେଇଥାନ୍ତି ।" ନାରଙ୍ଗ ବୋଇଲେ "ପଛକୁ ବୁଦ୍ଧିଆ ଭୂୟାଁ, କୁଳବୁଡ଼ା ଧରୁଆ । ଆଜଠାରୁ ଏ କଥା ଯୁଗେ ଯୁଗେ ଥାଉ ।" ଏମନ୍ତ କହି ପୁଣି ନିୟମକରି ସେଠାରୁ ଗଲେ । ସକୁଟୁମ୍ବ ଧରି ସଞ୍ଜେଇ ନିକଟ ଗୁଉଁରିଆ ପାହାଡ଼ କିନାରରେ ରହିଲେ ।

**ଏ ଉତ୍ତାର ସିଂଘଭୂମି ଚଉଦ ଶରଭଙ୍ଗ ଯେଉଁ ମତେ ହେଲା ଏବେ ତା'ର ଗୁନିଆଦି ସୂତ୍ର କହିବା** -- କାଉଁରୀ ଦେଶରେ ପ୍ରତାପକେଶରୀ ନାମରେ ରାଠୁର (ରାଠୋର) ରାଜା ଥିଲେ । ତାଙ୍କର ସିଂହଦୁଆରେ କବାଟ ସରି (କବାଟେଶ୍ୱରୀ) ନାମେ ଦେବୀ କବାଟରେ ପୂଜା ପାଉଥିଲେ । କିଛି ବିଡ଼ମ୍ବଣ ହେଲେ ସେ କବାଟ ନବପୁଞ୍ଜର ପରାଏ ଗର୍ଜଇ । ଅତି ନିଷ୍ଠ ହୋଇ ଗଦାଧରନାମେ ସମରଳି ଭୂୟାଁ ସେବାକାରୀ ହୋଇଥିଲା । କିଛିଦିନ ଉତ୍ତାରେ ସେ କାଉଁରୀ ଗଡ଼ରେ ଯୋଗିନୀ ଯାତ୍ରା କଲେ । ସାତଶହ ବାଉନ ଲୋକ ଏକାଦିନେ ମଲେ । ସେ ରାତିରେ ରଜା ଅତି ଦହସତ କରି ଇଜ୍ଜତ୍ ପରିବାର ଧରି କୁଲୁଟି ପର୍ବତେ ଯାଇ ରହିଲେ । ସେ ଦେବୀଙ୍କର ପୂଜା ସମୟେ ତିନିଗୋଟି ବାଦ୍ୟ ବାଜଇ, ଭୂୟାଁ ବିନା ଦୋସରି ଜାତି ନ କରନ୍ତି । ଏଣୁକରି ସେ ତିନି ଭୂୟାଁ ଅସଂସ୍କାର । ରତ୍ନଙ୍ଗି ରଣସିଂଘା, ବାକାଁ ବାକିଆ ବାଦ୍ୟ ବିଲେଇ ନାଗରା ତିନିବାଦ୍ୟ ତିନିହେଁ ଧଇଲେ । ସମରାଳି ଯୋଡ଼ କବାଟ ବହିଲେ । ଲୋକେ ଜାଣିବେ ବୋଲି ରାତିରେ ଆଣି ପୁଡ଼ ହାଟ ନାରଙ୍ଗି ରାଜାଙ୍କର ସିଂଘଦୁଆର ଥାପନ କଲେ । ତିନି ବାଦ୍ୟ ଥାପିଲେ । ପୂଜା ସାରି ଚଉଦଜଣ ପହରା ଜଗାଇ ଯେ ଯାହାର ଘରକୁ ଗଲେ । ସେ ଯେଉଁ ପୁଞ୍ଜି ପୁଞ୍ଜି କରି

ଘ୍ରଉଳ ସିନ୍ଦୂର ଦେଇ ପୂଜା କରିଥିଲେ, ସେଠାରୁ ସାତପୁଞ୍ଜି ଘ୍ରଉଳକୁ ବଣ ଶୁଆର ଆସି ଖାଇଲା । ତା'ର ପରେ ନଦୀଧର ପାକଲଲୁ (?) ମୂଳରେ ବାଘ ଗରଜିଲା । ସେ ଗରଜନ ଶୁଣି ପହରାଦାରମାନେ ଧୂଣରେ ଗୁଣ ଦେଇ ଚଉଦଜଣ ଏକା ବାଘକୁ ଚଉଦ ଶର ବିନ୍ଧିଲେ । ଗୋଟିଏ ନ ଭେଦିଲା । ଚଉଦ ଶର ଭାଙ୍ଗିଯିବାରୁ ସିଂଘଭୂମିକୁ ଚଉଦ ଶରଭଙ୍ଗ ନାମଦେଲେ । ସେ ଦେବତା ଥାନରେ ବଣ ଶୁଆର ପଶିବାରୁ ସେ ଦେବତାର ତେଜ ଭ୍ରଷ୍ଟ ହେଲା । ସେହି ରାତିରେ ତିନିବାଦ୍ୟ ସହିତ କବାଟ ଆଦି ପଥର ପାଲଟିଲା । ଏ ରୂପେ ଜାଣିବ ।

ଏବେ ସେ ଶୁଭସ୍ଥାନ ଗଡ଼ର ଚତୁଃସୀମା ଦେବତା କହିବା --

| | |
|---|---|
| ଗଡ଼ର ଦକ୍ଷିଣ ତରଫରେ | ମଦନମୋହନ |
| ଅଗ୍ନିକୋଣରେ | ଅଶ୍ୱିନକୁମାର |
| ଈଶାଣ କୋଣରେ | ଇନ୍ଦ୍ରପାଟ |
| ଉତ୍ତର ତରଫରେ | ଭର୍ମାବୀର (?) |
| ପର୍ବତ ପରେ | ପାଟ ପଞ୍ଚକ |
| ନଇରୁତ କୋଣରେ | ନୃସିଂହବୀର |
| ବାୟବ୍ୟ କୋଣରେ | ବିନ୍ଧ୍ୟବାସିନୀ |
| ପଶ୍ଚିମ ତରଫ | ପଲଙ୍କପାଟ |
| ସିଂଘଦୁଆରେ | ଅନନ୍ତରାଜ |
| ବେଢ଼ ଭିତରେ | ଧର୍ମରାଜ |
| ଅଶ୍ୱଶାଳରେ | ଘୋଟ-କୁଞ୍ଜର |
| ହାତୀଶାଳରେ | ଜବରଜଙ୍ଗ |
| ଭଣ୍ଡାରରେ | ପାଟଚକର |

ଏଲେଖା ପ୍ରମାଣେ ଶ୍ରୀପୁଡ଼ାହାଟ ଗଡ଼ର ଚତୁଃସୀମା ଦେବତା ଜାଣିବ ।

ଏବେ ନାରଙ୍ଗିରାଜ୍ୟ ପଶ୍ଚିମ ରହଣି ଗଡ଼ରେ ଯେତେ ଦେବତା ସେ ନାମଗୁଡ଼ିକ କହିବା -- ୧- ଜୟାରି, ୨- ମହାଜାଲ, ୩ - ସୁରମା, ୪- ସେଣଘୃଟ, ୫- ଶାରଳି, ୬ - ଦମଲି, ୭- ଦିଗିଲି, ୮- ଜେଡ଼ଜା, ୯ - ଗ୍ରମିଇ, ୧୦- ଚନ୍ଦ୍ରିପାଟ, ୧୧-ବାକ୍‌ଜିଲ, ୧୨-ମଙ୍ଗରି, ୧୩-ସୁନାଚିତା, ୧୪-ଚନ୍ଦନସର (ଚନ୍ଦନେଶ୍ୱର), ୧୫- ସତରଞ୍ଜି, ୧୬-

ବାକ୍‌ଜିଲ, ୧୭- ଝିଲ୍‌ମିଲ, ୧୮- ଦଲ, ୧୯- ବାଦଲ, ଏତେ ଦେବତା ନାରଙ୍ଗି ଗଡ଼ର ଅଧିପତି । ବାରଘର ଭିତର ଯେତେ ଦେବତା ଭୂୟାଁଙ୍କର । ଏ ଦେବତାମାନେ ଇଷ୍ଟ ବୋଲି ଜାଣିବ ।

ଏ ଉତ୍ତାରେ ସିଂଘରଜା ଦଣ୍ଡପାଟର ମନଫଟା ଅପ୍ରୀତି ହେଲା ଯେଉଁ ନିମନ୍ତରେ ତାହା କହିବା -- ଅନେକ ଦିନ ଉତ୍ତାରେ ସିଂଘ ରଜା ପାଲିଙ୍କି ଚଢ଼ି ଲୋକ ସୈନ୍ୟଧରି ଦଣ୍ଡପାଟର ଘରକୁ ବିଜେକଲେ । ବାର ମିଶି ବତିଶ ବନ୍ଧୁ ଘେନି ଦଣ୍ଡପାଟ ପାଛୋଟି ଘେନିଗଲେ । ଅକ୍ଷତ ମାନ୍ୟ କରି ବିପ୍ରହସ୍ତେ ଖନ୍ଦା ତତ୍‌ବିର କରାଇଲେ । ରାଜା-ଦଣ୍ଡପାଟ ଦୁଇଜଣ ପଶାଖେଳ କଲେ । ପାକସିଦ୍ଧା ପସନ୍ଦ କରି ଦଣ୍ଡପାଟ ରଜାଙ୍କୁ ଜଣାଇଲା, "ଠା ବଢ଼ାଇତେ ବିଜେ କରିବା ହେଉ ।" ମହାରାଜା ବୋଇଲେ ତୁମ୍ଭର ନିଯୋଗୀ ପାଟଖଣ୍ଡା ଦେଲେ ତେବେ ମୋର ମଣୋହି ବଢ଼ିବ । "ହେ ଦଣ୍ଡପାଟ ପୁତୁରା କି ବୋଲୁଅଛ କହ ।" ଦଣ୍ଡପାଟ ହାରଷ ମନରେ ପାଟଖଣ୍ଡା ଆଣି ସମର୍ପଣ କଲେ । ରାଜା ହରଷ ହୋଇ ମଣୋହି କଲେ । ଭୋଜନ ସାରି ପଲଙ୍କେ ବିଜେ ହେଲେ । ପହଡ଼ଭାଙ୍ଗି ଉଠିଲେ । ଦଣ୍ଡପାଟ ଶୀତଳ ମଣୋହି ତିଆରି ରଜାଙ୍କୁ ମହଲ ଭିତରକୁ ବିଜେ କରାଇଲେ । ଦଣ୍ଡପାଟିଆଣି ଉହାଡ଼େ ଥାଇ ଉଳଗିଲେ । ଦଣ୍ଡପାଟର ଗୋଟିଏ ଆଠ ବରଷର କନ୍ୟା ଥିଲା । ସେ ଆସି ଉଳଗିଲା । ତାକୁ ଅତି ସୁନ୍ଦର ଦେଖି ରାଜା ପ୍ରଶଂସା କଲେ । ଦଣ୍ଡପାଟକୁ ବୋଇଲେ "ଏ କନ୍ୟା ଆମ୍ଭପରି ରଜାଙ୍କୁ ଯୋଗ୍ୟ । ଏତେ ସୁନ୍ଦର ଚଉଦ ଶରଭଙ୍ଗରେ ନଥିବେ ।" ଏହା ବୋଲି ରଜା ଶୀତଳ ମଣୋହି ବଢ଼ାଇ ବିଦାଇ ମାଗି ଚଢ଼େଇଗଡ଼ରୁ ଜୟନ୍ତୀଗଡ଼ ବିଜେ ହେଲେ ।

ଏଣେ ଦଣ୍ଡପାଟମୂଳେ ସକଳ ସହିତ ଭୂୟାଁମାନେ ବିଗ୍ରିରିଲେ, "ସିଂଘରଜା ଆମ୍ଭର ମାଟି ନେଲେ, ଇଷ୍ଟ ଦେବତା ନେଲେ, ପାଟଖଣ୍ଡା ନେଲେ । ଏବେ ଶେଷେ ଇଜ୍ଜତ ଉପରେ ନଜର କଲେ ।" ଏହା ବିଗ୍ରିରି ଦଣ୍ଡପାଟ ଆଦି ଭୂୟାଁଙ୍କର ରଜା ସଙ୍ଗତେ ପୂର୍ବ ସ୍ନେହ ଭଗନ ହେଲା ।

ପୁଡ଼ାହାଟ ରାଜଧାନୀ ବାରପାଟ ଉତ୍ତାରେ ମିତ୍ରଘନ ସିଂଘ ମହାରାଜାଙ୍କର ସେ ପାଟଖଣ୍ଡା ହେରିଗଲା । ରାଜ୍ୟ ଦୁଇବରଷ ଅପାଳକ ହେଲା । ରଜା ବହୁତ ତଦାରକ କରି ପାଟଖଣ୍ଡା ନ ପାଇଲେ । "ଯିଏ ଖଣ୍ଡା ଆଣି ଦେବ, ତାକୁ ଚଉରାଶି ମଉଜା ଦେବି" ବୋଲି ଜାଗାରେ ଡେଙ୍ଗୁରା ଦେଲେ । ବ୍ରାହ୍ମଣୀ ନଦୀ କିନାରେ ଜେଳା ନାମରେ ବଥୁଆ ଭୂୟାଁ ଥିଲା । ତା'ର ପେଟ-ରାଣ୍ଡିଆ ପୁଅ ଗୋଟିଏ ଥିଲା । କଢ଼େଇ ନାମରେ,

କଳା ନାମରେ ତା'ର ଗୋଟିଏ ପୁଅ ଥିଲା । ସେ ବାପ ପୁଅ ବଳବୁଦ୍ଧିରେ ପ୍ରବୀଣ । ସେ ଦୁଇ ପିତା ପୁତ୍ର ବକସିସକୁ ଲୋଭକରି ନାଗପୁର ସୀମା ଇଲମା ଗ୍ରାମରେ ଦିନୁ ଖେରୁଆଳ ସଙ୍ଗେ ମିତ୍ରପଣ କରି ବୁଦ୍ଧି ମନ୍ତ୍ରଣା କରିଲେ । ତିନିଜଣ ଯାଇ ନାଗପୁର ବେଲକନ୍ଦି ବେଲସରି ଜମିଦାର ଘରେ ପାଟଖଣ୍ଡା ଥିବାର ତଥ୍ୟ କଲେ । ବମାଲ ସହିତେ ଜମିଦାରକୁ ବାନ୍ଧି ଆଣିଲେ । ବାପ ପୁଅ ଖଣ୍ଡା ଧଇଲେ । ଦିନୁ ଖେରୁଆଳ ସ୍ୱେରକୁ ବାନ୍ଧି ଆଣିଲା । ମିତ୍ରଘନ ରଜାଙ୍କର ପହଡ଼ ସମୟେ ଖଣ୍ଡା ସହିତେ ସ୍ୱେର ଆଣି ହାଜିର କଲେ । ମହାରାଜା ଅତି ଆନନ୍ଦ ହୋଇ ପାଟଖଣ୍ଡାକୁ ନେଇ ଉତ୍ତମଥାନରେ ରଖିଲେ । ସେ ଭୂୟାଁର ବାପ ପୁଅର ଆଜନମ ନାମ ରହୁ ବୋଲି କୁଡ଼େଇକଳା ନାମ ଦେଇ ଚିରକାଳକୁ ଚଉରାଶି ମଉଜା ଜମିଦାରି ବକସିସ ଦେଲେ । ଖଣ୍ଡା ପାଇବାରୁ ଖଣ୍ଡାପାତ୍ର ପଦ ଦେଲେ । ଦିନୁ ଖେରୁଆଳ ଚୋର ବାନ୍ଧି ଦେବାରୁ ଜମିଦାରି ଜାଗା ନେଲେ । ସବୁଦିନେ ନାମରହୁ ବୋଲି ବାନ୍ଧିଦେବାରୁ ସେ ଜାଗାର ନାମ ବନ୍ଧଗ୍ରାମ ପୀଢ଼ ଦେଲେ । କେଳା ଭୂୟାଁର ଅକ୍ଷର ଗୋଟିଏ କାଟି କରି ପୂର୍ବ ଗ୍ରାମକୁ କେରା ନାମ ଦେଲେ । ଯେଉଁ ଗ୍ରାମର ଲୋକ ଆସି ଅଗାଡ଼ି ବାରତା ଦେଲା ସେ ଗ୍ରାମର ନାମ ଆନନ୍ଦପୁର ଦେଲେ । ସେ ପାଟଖଣ୍ଡା ପ୍ରାସାଦରେ ସାତଶହ ମଉଜା କଲ୍ଲ (କୋହ୍ଲ) ସାଧ୍ୟ କରି ସାରଣ୍ଡା ନାମ ଦେଲେ । ଚଉଦ ଶରଭଙ୍ଗ ମୋଲକ ଯେଉଁଠାକୁ ପ୍ରଥମ ବିଜେ କରି ଧରୁଆ ଦିଗନ୍ତର ଜମିଦାର ପରାମର୍ଶରେ ଜାଗାଯାକ ଚଇନ କଲେ, ସେ ପ୍ରଥମ ବିଜେଗ୍ରାମକୁ ଚଇନପୁର ନାମ ଦେଲେ । ମହା ଅସାଧ୍ୟକୁ ସାଧ୍ୟ କରାଇ ଦେବାରୁ ମହାପାତ୍ର ପଦଦେଲେ । ସେ ପୀଢ଼ ସଦାକାଳକୁ ଜମିଦାରୀ କଲେ ।

**ଏବେ ନଙ୍ଗଲକଟାର ବୁନିଆଦି କଥା କହିବା --** ଗଣ୍ଡ ଜାତି ବୁଧୁନାମେ ଜମିଦାର କେଉଁଝରି ଇଲାକା ସରମନ୍ଦା ନାମେ ଗ୍ରାମରେ ଥିଲା । ସେ ଗଣ୍ଡ ଜାତିର । କେଉଁଝରି ରଜାଙ୍କର ବଳପାଇ କୋଠଗଡ଼ର କଟିଭୂୟାଁ ମହନ ଜମିଦାର ସଙ୍ଗେ ନଗାଉ କଲା । ଖୋଜିବା ନିମନ୍ତେ ଅନେକ ଉପଦ୍ରବ ଭିଆଇଲା । ସେ ମହନ ଜମିଦାର କାତର ହୋଇ ଜୟନାଥ ସିଂଘ ମହାରାଜଠାରେ "ରଖ" ବୋଲି ଶରଣ ପଶିଲା । ଜୟନ୍ତୀର ସମ୍ଭ (ଶମ୍ଭୁ ?) ବାରଙ୍ଗୀ, ଚେଲବେଡ଼ାର କାଣି, ଗ୍ରନ୍ଦତି, ଡଙ୍ଗରାର ଗ (ଗୋ) ବରା ନାଏକ ଚଢ଼େଇର ଦ(ଦୋ)ଳ ଗୋବିନ୍ଦ ଦଣ୍ଡପାଟ ଆଦିକା ସାତଶହ ଫଉଜ ଧରି ଜୟନ୍ତୀର ଥାନା ଦେଇ ଦେଢ଼ ବରଷ ନ (ଲ)ଢ଼ି ପୁଣି ନିଜସ୍ଥାନକୁ ଅଇଲେ । ସିଂଘ ରଜା ହଟିଲା ବୋଲି ଗଣ୍ଡ ଜମିଦାର ପୁଣି ଉପଦ୍ରବ ଭିଆଇଲା । ଜଟିଆ ପାଟକୁ ପୁଣି ଉପାଡ଼ି ନେବା ନିମନ୍ତେ ରାତିରେ ଆସି ତାଳପ୍ରମାଣେ ଖୋଳାଇଲା । ଉପାଡ଼ି ନପାରି ଦହସତ କରି

ପଳାଇଲା । ତାହା ସିଂଘରାଜା ମାଲୁମ୍ ପାଇ ଗଣ୍ଡ ଜମିଦାରକୁ ସାଧ୍ୟ କରିବା ନିମନ୍ତେ ନିଜ ସୈନ୍ୟ ଧରି ବିଜେ କଲେ । ସମସ୍ତେ ନିୟମ ପକାଇଲେ ବୁଧି ଆଦି ଗଣ୍ଡ ସାତଶବାର ନିପାତ କରିବା । ଚଉଁରିଆ ବନ୍ଧରେ ଆସି ଖଣ୍ଡା ଧୋଇବା । ଏ ନିୟମ ଯେ ନ ମାନିବ ସେ ସ୍ୱମାତୃ ହରିବ । ଏ ନିୟମ କରି କମର ବାନ୍ଧି ତିନିଶ ଷାଠିଏ ଜଣ ବାହାରିଲେ । ସରମନ୍ଦା ନିକଟ ପଣସ ତୋଟାରେ ରହି 'ଖାମା' ବୋଲି ପାଉଡ଼ି ପ୍ରସାଦ କମାଣକୁ ଫଇର କଲେ । ସେ ଶବଦରେ ତିରି (ସ୍ତ୍ରୀ) ବାଳ, ବୃଦ୍ଧ ଚମକି ମରିବାରୁ ସେ ଗ୍ରାମକୁ ଚମକପୁର ନାମ ଦେଲେ । ସାତ କୋଡ଼ି ଗଣ୍ଡର ମୁଣ୍ଡହାଣ୍ଡି କିଳିକିଳା ଦେଇ ବେଳ ତିନି ପହରଠାରେ ଭଙ୍ଗା ପାହାଡ଼ ତଳେ ଚଉଁରିଆ ବନ୍ଧରେ ପ୍ରବେଶ ହେଲେ । ଦେଖିଲେ ସେ ବନ୍ଧ ଶୁଖିଅଛି । ପାହାଡ଼ ଭିତରକୁ ପଶିଲେ । ସେଠାରେ ଦେଖିଲେ ଗାଢ଼ା ଗୋଟିକରେ ପାଣି ହ୍ରଦ ଖଣ୍ଡେ ଅଛି, କି ରୂପେ ପାଣି ଏଠାରୁ ଚଳାଇ ନେବା ବୋଲି ବିଗ୍ଭର କଲେ । ଚମକପୁରରୁ ଜଣେ ଭୂୟାଁ ନଙ୍ଗଳ (ଲଙ୍ଗଳ) ଗୋଟିଏ ଆଣିଥିଲା । ସେ ନଙ୍ଗଳ ଦଶ ଜଣରେ ଯାକି ଟାଣି ବାଲିରେ ବାଲିରେ ଅନ୍ତରା କାଟି ପାଣି ଚଳାଇ ଆଣି ସେ ବନ୍ଧରେ ଭରିଲେ । ନଙ୍ଗଳରେ ନାଳକାଟି ପାଣି ଆଣିବାରୁ ସେ ବନ୍ଧକୁ ନଙ୍ଗଳକଟା ନାମ ଦେଲେ । ସେ ଜଳରେ ଖଣ୍ଡା ଧୋଇ ଆନନ୍ଦ ହୋଇ ସେ ଯାହା ଥାନକୁ ଚଳିଲେ । ଏ ଅତି ଗୁପତ ପୁରୁଣାକାଳିଆ କଥା ।

ପାଣ୍ଡବ ନାମେ ଧରୁଆ ନିୟମ ରକ୍ଷା ଉପାୟ କରି ଦେବାରୁ ପଣ୍ଡୁଆ ଗ୍ରାମ ବକ୍‌ସିସ ଦେଲେ । ସବୁରି ମନମତ ଘେନି ମହାପାତ୍ର ପଦଦେଲେ । ଦଣ୍ଡପାଟକୁ ମରଦରାଜ (ମର୍ଦ୍ଦରାଜ) ପଦ ଦେଲେ । ଭୂୟାଁ ରଜାର ତିରିଶ ପାଟକ ବାଦେ ସିଂଘରଜାଙ୍କ ମୋଲକ । ଏଠାରୁ ବୁନିଆଦି ଚରିତ୍ର ରହିଲା । ପୁରାତନ ଲୋକମାନେ ଏହା ଲେଖିଥିଲେ । ଏ ଜାତି ମାଦଳିଆ । x x x ଇତି ମାଦଳିଆ ।

## ସିଂଘ ମାଦଳିଆ ବା ମାଦଳା

ଶ୍ରୀ ଗଣେଶାୟ ନମଃ । ଶ୍ରୀ ରାମଚନ୍ଦ୍ର ଗୋସାଇଁ ମହାପ୍ରଭୁ ଲଙ୍କା ବିଜେ କାଳେ ଯାଇ ସିନ୍ଧୁତଟରେ ପ୍ରବେଶ ହେଲେ । ଦେଖିଲେ ମହାସିନ୍ଧୁ । ଶ୍ରୀ ରାମଚନ୍ଦ୍ର ଦେବ ଦେଖି ମହା ବିସ୍ମୟ ହୋଇଲେ । ଶ୍ରୀ ଲକ୍ଷ୍ମଣଙ୍କୁ, ସୁଗ୍ରୀବଙ୍କୁ, ଶ୍ରୀଅଙ୍ଗଦଙ୍କୁ, ଶ୍ରୀ ହନୁମନ୍ତଙ୍କୁ, ଶ୍ରୀ ଜାମ୍ବେବଙ୍କୁ, ଶ୍ରୀ ସୁଷେଣଙ୍କୁ, ଶ୍ରୀ ନୀଳ-ନଳଙ୍କୁ, ଶ୍ରୀ ପବନଙ୍କୁ, ଶ୍ରୀ କେଶରୀଙ୍କୁ, ଶ୍ରୀ ବଳିମୁଖ ଦଧିମୁଖ ଆଦି କରି ପଚିଶ ଯୁଥପତିଙ୍କୀ ଘେନି ବିଗ୍ଭର କଲେ । ଏ ମହାର୍ଣ୍ଣବ ଜଳ, ତେଣୁ

ଉପାୟ କର । ତରିବା ବିଗ୍ଭର କର । ସମସ୍ତେ ହୋଇ ବିଗ୍ଭର କଲେ । ବୋଇଲେ ବନ୍ଧ ବାନ୍ଧିବା । ହେଉ ବୋଲି ସମସ୍ତେ ସ୍ୱୀକାର କଲେ । ସମସ୍ତେ ପର୍ବତ ଉପାଡ଼ି ଆଣିଲେ । ବରୁଣକୁ ସ୍ତୁତି କଲେ । ପଞ୍ଚସିକା ପର୍ବତକୁ ଜଳରେ ବନ୍ଧ ନିମନ୍ତେ ଶୁଭ ଦେଲେ । ବରୁଣ ଦେବତା ନ ମାନିଲେ । ପଞ୍ଚୁମାଛ ତିମି ଜଳ ମଧ୍ୟେ ପର୍ବତ ଗିଳିଲେ । ପର୍ବତ ନ ଦେଖି ଶ୍ରୀରାମଚନ୍ଦ୍ର ମହାପ୍ରଭୁ ମହାକୋପ କଲେ । କୁଳାନ୍ତକ ଶର ଦେଇ କୋଦଣ୍ଡରେ ବସାଇଲେ । ବରୁଣ ଦେବତା ଭୟ କରି ପୁଅ-ଭଉଣୀକି ପଠିଆଇ ଦେଲେ । ଭଉଣୀ ପଞ୍ଚରତ୍ନ ଘେନି ଶ୍ରୀଚରଣରେ ଭେଟିଲେ । ଶ୍ରୀଛାମୁରେ ଜଣାଇଲେ ରାବଣ ଭୟରେ ବରୁଣ ଦେବତା ନ ଆସି ମୋତେ ଶ୍ରୀଛାମୁକୁ ପଠାଇଦେଲେ । କୋପ ସଂହରିବା ହେଉନ୍ତୁ । ଶରଣ ରଖିବା ହେଉନ୍ତୁ । ଭଗ୍ନ ହୋଇ ପର୍ବତ ଆମ୍ଭର କି ହୋଇଲା । ଭଉଣୀ ବୋଇଲା 'ଆମ୍ଭେ ନ ଜାଣୁ ତିମିଙ୍ଗିଳାଦି ପଞ୍ଚମାଛେ ପର୍ବତ ଗିଳିଲେ ।' ସେହି ବାଣ ବିନ୍ଧିଲେ ରାଘବ ମାଛକୁ । ରାଘବ ମାଛ ମଲେ । ରାଘବ ମାଛ କୁମାରୀ କନ୍ୟା ମହାଭୟ କରି ଶ୍ରୀଛାମୁରେ ଭେଟିଲେ । ହାତଯୋଡ଼ି ଶ୍ରୀଛାମୁରେ ଥାଉ ବୋଲି ଜଣାଇଲେ । ମୋତେ ଯଦି ଶ୍ରୀରାମଚନ୍ଦ୍ର ମହାପ୍ରଭୁ ବିଭା ହୋଇବେ, ତେବେ ବନ୍ଧ ବାନ୍ଧିବା ପାଇଁ ସଂକୀର୍ଣ୍ଣ ଠାବ କରିଦେବି' ବୋଇଲେ । ଆଜ୍ଞା ହୋଇଲା 'ଆମ୍ଭେ କେମନ୍ତେ ବିଭା ହୋଇବୁ । ଏ କଥା ଉଚିତ ନୁହଇ ।' ହନୁମନ୍ତ କୁଆଁରୀ କନିଆକୁ ଡାକି କହିଲେ । ବୋଇଲେ ଲଙ୍କାଜୟ କରି ଫେରି ଆସିବାବେଳେ ଯଦି ଶ୍ରୀରାମଚନ୍ଦ୍ର ମହାପ୍ରଭୁଙ୍କୁ ତୁମ୍ଭେ ଚିହ୍ନି ପାରିବ ତେବେ ଶ୍ରୀରାମଚନ୍ଦ୍ରଙ୍କୁ ବିଭା ହୋଇବ । ଏହାଶୁଣି କୁଆଁରୀ କନ୍ୟା ବହୁତ ହରଷ ହୋଇଲେ । ହରଷ ହୋଇ ବିଶାଶଏ ଯୋଜନ ନଟିରେ ସଂକୀର୍ଣ୍ଣ ଠାବ କରିଦେଲେ । ଶ୍ରୀଲକ୍ଷ୍ମଣ, ଶ୍ରୀସୁଗ୍ରୀବ, ପଚିଶ ଯୁଥପତି ସମସ୍ତେ ହରଷ ହୋଇ ପର୍ବତ ଆଣିଲେ । ସମସ୍ତେ ପକାଇଲେ । ପର୍ବତ ବୁଡ଼ିଗଲା ଦେଖି ସମସ୍ତେ ବିସ୍ମୟ ହେଲେ । ଜାମ୍ବେବ କହିଲେ 'ନଳ-ନୀଳଙ୍କ ହାତରେ ପଥର ଭାସଇ ।' ସମସ୍ତେ ପର୍ବତ ବହି ଆଣିଦେଲେ । ନଳ ନୀଳ ବନ୍ଧ ବାନ୍ଧିଲେ । ବାନ୍ଧି କପି ସୈନ୍ୟ ଘେନି ଶ୍ରୀରାମଚନ୍ଦ୍ର ଗୋସାଇଁ ସୁବଳଯ୍ରା ବିଜେ କଲେ । ଲଙ୍କାରେ ମହାଯୁଦ୍ଧ ହୋଇଲା । ରାବଣକୁ ବଧ କଲେ । ବିଭୀଷଣକୁ ରାଜା କଲେ । ଲଙ୍କା ଜୟ ଶୁଣି କୁଆଁରୀ କନ୍ୟା କପି ସୈନ୍ୟ ନିମନ୍ତେ ଭାତ ରାନ୍ଧିଲେ । ପର୍ବତ ପ୍ରମାଣ କରି ଥୋଇ ସକଳ ସମ୍ଭାର ସାମାନ୍ୟ (?) କରି ରଖିଲେ । ଶ୍ରୀରାମଚନ୍ଦ୍ର ପ୍ରଭୁ ସୀତାଙ୍କୁ ଅଗ୍ନିକୁଣ୍ଡରେ ପରୀକ୍ଷା କଲେ । ଇସିତି (ଇପ୍ସିତ ?) ଦିନ ଉତାରୁ ଅଗ୍ନି କୁଣ୍ଡରୁ ବାହାର କଲେ । ବାହାର କରି ସେଠାରେ ବହୁତ ଶୋକ କଲେ । ସମସ୍ତେ ଶୋକ କଲେ । ଶୋକ ସମ୍ଭାଳି

ବିଜୟା ରଥରେ ବସି ସେତୁବନ୍ଧରେ ବିଜେ କଲେ । ଏ ପାରିକି ଆସିବାକୁ ନୌକାରେ ସାତଦିନ ପଥ । ସେଠାରେ ଲକ୍ଷ୍ମଣ ଧନୁ ହୂଳରେ ତିନିଟି କାଟ କାଟିଦେଲେ । ସେଠାରୁ ସୀତା କହିଲେ, 'ମୁଁ ଯେ ବାଲୁକାକୁ ଇଷ୍ଟ କରି ପୂଜା କରିଅଛି । ଶ୍ରୀରଘୁନାଥଙ୍କ ଦର୍ଶନ ପାଇବା ନିମନ୍ତେ । ସେ ଫଳ ତ ମୋର ଶୁଭ ହୋଇଲା । ପୂଜାକାଳ ହେଉଅଛି । ଏଠାରେ ମିଷ୍ଟପାଣି କେଉଁଠାରେ ଅଛି, ପୂଜା କରିବି ।' ଲକ୍ଷ୍ମଣ ଧନୁହୂଳ ଭୂମିରେ ମାଇଲେ । ମିଷ୍ଟ ଜଳ ବାହାର ହୋଇଲା । ସେଠାରେ ସୀତୟା ଦେବୀ ସ୍ନାନ କଲେ । ରାମେଶ୍ୱର ଲିଙ୍ଗ ବୋଲି ଭକ୍ତି କଲେ । କରି ସେଠାରେ ସେତୁ ବନ୍ଧ ରାମେଶ୍ୱର ବୋଲି x x x x ଖଣ୍ଡିଏ କଲେ । ସେଠାରେ x x x ସେତୁବନ୍ଧ ରାମେଶ୍ୱର ଦେଉଳ । ସେ ଜଳରେ ସମସ୍ତେ ସ୍ନାନ କଲେ । ସେ ଜଳପାନ କଲେ । ସେଠାରେ ଶ୍ରୀରାମଚନ୍ଦ୍ରଙ୍କ ବିଗ୍ରହ ପଡ଼ିଲା । ସେଠାରେ ରକ୍ଷକ ନଥିଲେ ବନ୍ଧରେ ଅସୁର ପଶି ସୃଷ୍ଟି ନାଶ କରିବେ । ସେଠାରେ ଛ'ବର୍ଗ ଛତିଶ କୁଳିନ ରାଜା ସ୍ତୁତି କଲେ । ଆଜ୍ଞା ହୋଇଲା । କେଉଁ ରାଜା ରକ୍ଷକ ରହିବ । ଯଦୁବଂଶ ଭୋଜ ଦୁରାଜା (?) ଜଣାଇଲେ । 'କଦମ୍ବ ବଂଶୀ ସିଂଘ ରଜା ଏଠାରେ ରହିଲେ । ସେ ଅସୁରଙ୍କ ସଙ୍ଗତେ ଯୁଦ୍ଧ କରିବେ ।' ଜଣାଇଲେ ସେ ସିଂହଳ ଦ୍ୱୀପରେ ଅଛନ୍ତି ।' ହନୁମତକୁ ଆଜ୍ଞା ହୋଇଲା । 'ସିଂଘକୁ ଘେନି ଆସ ।' ହନୁମତ ସିଂହଳ ଦ୍ୱୀପକୁ ଯାଇ ଶ୍ରୀ ଉଦେ ସିଂଘ, ଶ୍ରୀ ଜୟସିଂଘ, ଶ୍ରୀ ବିଜୟ ସିଂଘ ମଧ୍ୟ ପାଞ୍ଚ ଭାଇକୁ । ଶ୍ରୀରାମଚନ୍ଦ୍ର ଗୋସାଇଁଙ୍କର ଶ୍ରୀମୁଖେ ଆଜ୍ଞା ଲଗାଇ ବୋଇଲେ ଆଜ୍ଞା ହୋଇଅଛି । ବେଗ ଯିବ ।' ଯିବୁଁ ବୋଲି ଯେ ଯାହାର ଆୟୁଧମାନ ଧରିଲେ । ଶ୍ରୀ ଆଶାଉଳି ଦେବୀ ଇଷ୍ଟଦେବୀଙ୍କୁ ସୁମରଣା କରି ବାହାର ହୋଇଲେ । ଆଶାଉଳି ଦେବୀ ସଙ୍ଗରେ ଗଲେ । ଆସି ଶ୍ରୀରାମଚନ୍ଦ୍ର ଦର୍ଶନ କଲେ । ଆଜ୍ଞା ହୋଇଲା 'ଏଠାରେ ରହ ।' ସିଂଘ ଜଣାଇଲେ ଆମ୍ଭେ ତୋତେ ବନ୍ଧୁ କରି ଦେମୁ । x x x ସେଠାରେ ଶ୍ରୀରାମଚନ୍ଦ୍ର ଗୋସାଇଁ ଉଦେସିଂଘକୁ ରଜା କଲେ । ଶ୍ରୀରାମେଶ୍ୱର ଲିଙ୍ଗରୁ ଚନ୍ଦନ ଆଣି ଶ୍ରୀରାମଚନ୍ଦ୍ର ଗୋସାଇଁ ରାମେଶ୍ୱର ଦେବ ଟୀକା ସାରଣ କରି ଟୀକା ଦେଲେ । ଶ୍ରୀମୁଖେ ଆଜ୍ଞା ହୋଇଲେ 'ରାମେଶ୍ୱର ଲିଙ୍ଗ ସେବା କରିବୁ । ଆଉ କାହାକୁ ନ ମାନିବୁ । ଶିର କାହାକୁ ନ ନୁଆଁଇବୁ । ତୋହର ମନକାମନା ଏହି ସିଦ୍ଧ କରିବେ ବୋଲି ଆଜ୍ଞା ହୋଇଲେ । ଶ୍ରୀଅଙ୍ଗରୁ ହାତ ପୋଛି ମହଳ ବାହାର କଲେ । କରି ସୂର୍ଯ୍ୟବଂଶ ଜାତ କଲେ । ବୋଇଲେ ''ସୂର୍ଯ୍ୟବଂଶ ସଙ୍ଗତେ ବନ୍ଧୁ କରିବୁ ।'' ସୂର୍ଯ୍ୟବଂଶୀକୁ କହିଲେ, ''ତୁ ଏ କଦମ୍ବ ବଂଶ ସଙ୍ଗତରେ ବନ୍ଧୁ କରିବୁ ।'' ଆଜ୍ଞା ପ୍ରମାଣ ବୋଲି ସୂର୍ଯ୍ୟବଂଶ ସିଂଘ ବଂଶ ମାନିଲେ । ସେ ସବୁ ରାଜାଙ୍କୁ ବିଦା କଲେ । ବିଜୟ ରଥରେ ବସି ବିଜେ କଲେ ।

ଅକୁଆଁଗୀ କନ୍ୟାଠାରେ ଭରଦ୍ୱାଜ ପକ୍ଷୀରୂପେ ଅଇଲେ । ଅକୁଆଁଗୀ କନ୍ୟା ତୋଷଶାଳ(?) ଲକ୍ଷ୍ମଣକୁ ଉଗାଳିଲା । ବୋଇଲା, "ରାମ କାହିଁ ?" ଲକ୍ଷ୍ମଣ ବୋଇଲେ ଏହି ଆଡ଼େ ଗଲେ । ଅକୁଆଁଗୀ କନ୍ୟା ବିସ୍ମୟ ହେଲା । ବୋଇଲା "ଏ ଭାତ କପି ସୈନ୍ୟପାଇଁ ରଖିଅଛି । ସୈନ୍ୟ ଖାଉନ୍ତୁ ।" ସମସ୍ତେ କହିଲେ, "ରାମଚନ୍ଦ୍ର ବିଜେ କଲେ, ଆମ୍ଭେ କେମନ୍ତେ ରହିବୁ ।" ଲକ୍ଷ୍ମଣ ବୋଇଲେ କନ୍ୟାର ଭାତ ସିଦ୍ଧ ହୋଇରହୁ ।

ସେଠାରୁ ଦେଢ଼ଶ କୋଶ ବିଜେ କରି ଯାଇ ରାମ ଟେକ କରି ନଗର କଲେ । ସେଠାରେ ସୂର୍ଯ୍ୟବଂଶୀ ଆଦିଭଞ୍ଜକୁ (୧) ରାଜା କଲେ ।

ପାଞ୍ଚଭାଇ ସେତୁବନ୍ଧ ରାମେଶ୍ୱରରେ ରାଜ୍ୟ କରିଥିଲେ । ମହାଭାରତରେ ଉଦେସିଂଘ ଜୁଟିଲେ । ଦ୍ୱାପର ଯୁଗରେ ଗଜସିଂଘ, ସୁରସିଂଘ, ଅଜୟ ସିଂଘ, ବିଜୟ ସିଂଘ ସେତୁବନ୍ଧରୁ ଅଇଲେ । ଏହାଙ୍କ ସଙ୍ଗେ ଆଶାଉଳି ଦେବୀ x x ଦେବୀକି ଆଣି ଗ୍ୱରିଭାଇ ମାରୁଆଳ ଦେଶ ହୋଇଲେ ଦେଶରେ କୋଶଳ x x x ଉତ୍ତର୍ଗରେ ଏକ ଗୋଟିଏ ପଥର ଥାଳପଟ ପ୍ରମାଣେ ହୋଇଥିଲା । ଦ୍ୱାପର ଯୁଗରେ ପାଣ୍ଡବ ପାଞ୍ଚଭାଇ ଦେଖିଲେ । ସେ ପଥର ଉପରେ ପଥର ଗଦା କରିଥିଲେ । ଅର୍ଜୁନ ସେ ପଥରକୁ ବାଣ ବିନ୍ଧିଲେ । ତହିଁ ବାଣଭଙ୍ଗା ବୋଲି ନଦୀ ବାହାର ହୋଇଲେ । ସେଠାରେ ଗଡ଼ର ନାମ ଦେଲେ ସିମାଣି ଗଡ଼ବୋଲି । ସେଠାରେ ଆଜିରେ ସେ ଗଡ଼ ଥିଲା । ମାରୁଆଳ ଦେଶ ତିନିଶ କୋଶ । ସେ ରାଜ୍ୟ ଅଧେ ବାଲି । ମଳଗଡ଼ ଶାଳା ପାଣ୍ଡବେ ବନାଇଥିଲେ । ତହିଁରେ ଗ୍ୱରିଭାଇ କିଛିଦିନ ରହି ରାଜ୍ୟ କଲେ । ସୁରସିଂଘ ଗଜସିଂଘକୁ ପେଲି ରାଜା ହେଲେ ଗଜସିଂଘ । ଅଭୟସିଂଘ ବିଜୟ ସିଂଘ ରାଜ୍ୟରୁ ବାହାର ହୋଇ ଯାଉଥିଲେ । ସୁର ସିଂଘ ରାଜା କହିଲେ "ନଯାଉନ୍ତୁ, ରହନ୍ତୁ । ଆମ୍ଭର ତିନିଶ କୋଶ ରାଜ୍ୟ ଅଛି । ଉସିମାଣୀ ଗଡ଼ରେ ଆମ୍ଭେ ରହିମୁ । ବୋଢ଼ଣଗଡ଼, ଯୋଧପୁରଗଡ଼, ନାଗଗଡ଼, ବିନାକେ (ବିନାୟକ ?) ଗଡ଼, ଜାଲରଗଡ଼, ସଞ୍ଜେରଗଡ଼, କୃଷ୍ଣଗଡ଼, ପୁହ (?) କର୍ଣ୍ଣଗଡ଼, ଅଚ୍ୟୁତ ରାୟଗଡ଼, ସିମିରିଗଡ଼, କିଲଗଡ଼, ରସାତୋଷାଗଡ଼, ସଦ୍‌ଗଡ଼, ଜଙ୍ଗାଇଗଡ଼, ଦେବରାୟଗଡ଼, ରାମପ୍ରସାଦଗଡ଼, ରେନ୍ଥ୍ୟାଲିଗଡ଼, ପୁରପୁରାଗଡ଼ । ଏ ମଧ୍ୟରୁ ଗ୍ୱଳିଶଗଡ଼ ନକୋଟି ମାରୁଆଳ ଦେଶ ଆମ୍ଭର ଅଛି । ମୂଳଗଡ଼ ମେଢ଼ଣ ସୀମାନା ଛାଡ଼ି ଯାହାର ଯେଉଁ ଗଡ଼ରେ ଇଛା ସେ ଗଡ଼ରେ ରହନ୍ତୁ, ଯାଉନ୍ତୁ ।" ବୋଇଲେ ।

---

(୧) ଆଦିଭଞ୍ଜ ମୟୂରଭଞ୍ଜ ବା ରାଜବଂଶର ତାମ୍ରପଟା ଓ କିମ୍ବଦନ୍ତୀ ଅନୁସାରେ ପ୍ରଥମ ଭଞ୍ଜରାଜା । ଏହାଙ୍କ ନାମ ସିଂହଭୂମ କିମ୍ବଦନ୍ତୀରେ କିପରି ଉଲ୍ଲିଖିତ ଅଛି, ତାହା ବୁଝାଯାଉ ନାହିଁ ।

ଗଜ ସିଂଘ, ଅଜୟ ସିଂଘ, ବିଜୟ ସିଂଘ କହିଲେ "ଆମ୍ଭେ ଯେଉଁ ଗଡ଼ରେ ଯେ ରହିମୁ, ସେଠାରେ ସେ ରଜା ହେମୁ ।" ସୁର ସିଂଘ କହିଲେ "ଏକା ଦେଶରେ ଗ୍ଚରି ରଜା ନାହିଁ ।" ଗଜସିଂଘ କହିଲେ "କେଉଁ ରୂପେ ରହିମୁଁ । ଏ ଉଚିତ ନୁହଇ ବୋଲି ତିନିଙ୍କର ମନ ଦୁଃଖ କରି ଅଇଲେ । ଆସି ମୋଜଗୋଲଙ୍କ ଦେହୁରାରେ ବରଷେ ରହିଲେ । ସେଠାରୁ ତିନିଭାଇ ଅଇଲେ । ଆସି ହରଭଙ୍ଗରେ ପ୍ରବେଶ ହେଲେ । (୨) x x x ଓଡ଼ିଆ ରାଜାଙ୍କୁ ମାରି ଗଜ ସିଂଘ ପୋଡ଼ା ହାଟରେ ରଜା ହେଲେ । x x x x ଅଜୟ ସିଂଘକୁ ଦେଇ ବଣାଇଁ । ଶ୍ରୀ ବାଣେଶ୍ୱର ମହେଶ୍ୱରଙ୍କ ଆଜ୍ଞା ମାଗି କେଉଟ ରଜାକୁ ମାରି ଅଜୟ ସିଂଘକୁ ରଜା କଲେ । x x x ଇନ୍ଦ୍ରଦେଓ ପାଟ ହୋଇ x x x ରହିଲେ । ବୋଇଲେ ଆମ୍ଭେ ଦୁଇ ଭାଇ ରାଜ୍ୟରେ ରଜା ହେଲୁ । ମଧ୍ୟରେ ତୁମ୍ଭେ ସାରଣ୍ଡାରେ ରଜା ହୋଇଛ ବୋଲି ବିଜୟ ସିଂଘକୁ ରଜା କଲେ ।

ଏ ରୂପେ କଦମ୍ବ ବଂଶୀ ସିଂହଳଦ୍ୱୀପରୁ ଅଇଲେ ଏ ଦେଶକୁ ।

**ପୋଡ଼ାହାଟର ରାଜଗଣଃ**

୧ । ଗଜସିଂଘ, ୨ । ଗଜସିଂହଙ୍କ ପୁଅ ଅର୍ଜ୍ଜୁନ ସିଂଘ ହେଲେ, ୩ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ, ୪ । ଧୃତରାଜ ସିଂହଙ୍କ ପୁଅ ଗଜ ସିଂଘ, ୫ । ଗଜସିଂହଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୬ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ୭ । ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୮ । ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୯ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂହ । ୧୦ । ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୧୧ । ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୧୨ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ୧୩ । ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୧୪ । ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୧୫ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ୧୭ । ଗଜ ସିଂଘଙ୍କୁ ପୁଅ ଅର୍ଜ୍ଜୁନ ସିଂଘ । ୧୮ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ୧୯ । ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୨୦ । ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୨୧ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ୨୨ । ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୨୩ । ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୨୪ । ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ

---

(୨) ଏହି ସ୍ଥାନରୁ ପୋଥିରୁ ନକଲ ହୋଇଥିବା ଲେଖାରେ ଅନେକ ଖଣ୍ଡିତାଂଶ ଅଛି । ବୋଧହୁଏ ମୂଳ ପୋଥିରେ ଏହି ଅଂଶ ଭଗ୍ନ ବା ନଷ୍ଟ ହୋଇଅଛି । ଫଳରେ ପ୍ରକୃତ ଐତିହାସିକ ଉପାଦାନ ନଷ୍ଟ ହୋଇଅଛି ।

ସିଂଘ । ୨୫। ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୨୬। ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୨୭। ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ୨୮। ଧୃତରାଜ ସିଂଘଙ୍କ ପୁଅ ଗଜ ସିଂଘ । ୨୯। ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ । ୩୦। ଅର୍ଜ୍ଜୁନ ସିଂଘଙ୍କ ପୁଅ ଧୃତରାଜ ସିଂଘ । ଏ ପାଟରେ ଅଣ୍ଡେଲ ମାରି ରଜା ହେଲେ । ବ୍ରାହ୍ମଣ ଘାଟି ମାଇଲେ । ଛୁଆଳି ସିଂଘ ଗଡ଼େ ଡେଇଁ ପଡ଼ିଲେ । କେଶରଭଞ୍ଜ x x କୁ ଆଣି ରଜା କଲେ । କେଶରଭଞ୍ଜର ମୁଖି ନଉକା ଆଣିଲେ । ଭଞ୍ଜମାରି ଭଞ୍ଜ ଥାପନା କଲେ । ଗ୍ରର ବୋଲି ଭାଟ କବିତା କଲା । ଭଞ୍ଜମାରି ଭଞ୍ଜ ସ୍ଥାପନା ଚାର କୁହାଇଲେ । x x x ନଦୀରେ ଖଣ୍ଡା ପଖାଳିଲେ । ତମାଡ଼ିଆକୁ ମାରି ସେବା କରାଇଲେ । ଧୃତରାଜ ସିଂଘ ମହାରାଜା । ଏତେ ଶୋକ (?) ବନ୍ଧ କଲେ । ମଲାର ଗଡ଼ରେ ଘାଟ ବୁହାଇ ବନ୍ଧ ବାନ୍ଧିଲେ । ୩୧। ଏହାଙ୍କ ପୁଅ ଗଜସିଂଘ ହୋଇଲେ । ୩୨। ଗଜ ସିଂଘଙ୍କ ପୁଅ ଅର୍ଜ୍ଜୁନ ସିଂଘ ହୋଇଲେ । ୩୩। ଏହାଙ୍କ ପୁଅ ନାମ ଫେରି ଗଜସିଂଘ ଦେଲେ । ଟୀକାଏତ ହୋଇଲେ । ଗଜପତିଙ୍କ ଲୋକ ଅଇଲା । ବଡ଼ ହାତୀ ମାଗିଲା । ଜଳେଶ୍ୱର ବରଣ କହିଲେ "ଦେଓ, ଶ୍ରୀ ଟୀକାଏତ ବାବୁଙ୍କର ସିନା ବଡ଼ ହାତୀ ଅଛି । ଟୀକାଏତ ବାବୁଙ୍କୁ ଆଜ୍ଞା ହେଉ, ବଡ଼ ହାତୀ ଦିଉନ୍ତୁ ।" ଆଜ୍ଞା ହୋଇଲା ଯାଇ କହ । ଆଜ୍ଞା ପ୍ରମାଣେ ଯାଇ ଜଳେଶ୍ୱର କରଣ ଗଜସିଂହ ଟୀକାଏତକୁ କହିଲେ । "ଶ୍ରୀ ବାବୁ ଗଜପତିଙ୍କ ଲୋକ ଆସିଅଛି, ବଡ଼ ହାତୀକୁ ଦେବା ହେଉ । ରଜା ତୁମ୍ଭର ଗଜପତିଙ୍କି ଦେବେ ।" ଗଜସିଂହ ଟୀକାଏତ କହିଲେ "ରଜାଙ୍କର ଏତେ ହାତୀ ଅଛି ନ ଦେଲେ, ଆମ୍ଭର ହାତୀ କି ନେବେ । ଏ ତୁମ୍ଭମାନଙ୍କ ବୁଦ୍ଧି ।" କରଣ ବୋଇଲା "ବାବୁ ରାଜ୍ୟ ରଖ ।" ଟୀକାଏତ କହିଲେ "ମୋ ହାତୀ କଦାଶ୍ଚିତ ନ ଦିଅଇଁ ।" ଜଳେଶ୍ୱର କରଣ କହିଲା "ବାପ ପରା ପୁତ୍ର ଯେ ହେବ ସେ ଗଜପତିଙ୍କ ସଙ୍ଗେ ଯୁଝିବ ବୋଲି ଉଠି ଯାଉଥିଲା । ଦୁଲି ଗ୍ୱ(?) ଉପର ଯେ ଖଣ୍ଡା ଦୋଳା (ଖୋଳ ?) ସହିତ ଥିଲା । ଗଜସିଂଘ ତା' କପ (?) କରି କହିଲେ "ମୁଁ ସେ ରଜପୁତ ନୁହଇଁ ।" ଦୋଳା ସହିତରେ ଜଳେଶ୍ୱର କରଣକୁ ହାଣିଲେ । ଦୁଇଖଣ୍ଡ ହୋଇ ସେହିଠାରେ ପଡ଼ିଲା । ସେ ବାର୍ତ୍ତା ଶୁଣି ଅର୍ଜ୍ଜୁନ ସିଂଘ ରଜା ହାତୀଚଢ଼ି ତୁରିତେ ଚକଡ଼ା ଗଲେ । ଗଜସିଂହ ଟୀକାଏତ ଧାଇଁ ଯାଇ ଅନ୍ଧାଟ ଝୁରିଠାରେ ବାଟରେ ଆଡ଼ ହୋଇ ଶୋଇଲେ । ରଜା ଇହି (?) ବାଟକରି ହାତୀ ନେଲେ । ଯାଇ ଚକଡ଼ା ରହିଲେ । ଏମତ ବାପ ପୁଅଙ୍କର ବାଦ ବଢ଼ିଲା । ଯୁଦ୍ଧ ହୋଇଲା । ଗଜସିଂଘ ଯୁଦ୍ଧରେ ପଡ଼ିଲେ । ଗଜସିଂହ ପଥର ହୋଇ ସେହି ଦିନରୁ ରହିଲେ । ଗଜସିଂଘ ପାଟ ସେହିଦିନରୁ ଲୋପ ପାଇଲା । ଏ ରଜା ଚେକା (?) କୁ ବରଗଡ଼ କରି ରହିଲେ । ବଡ଼ ଗଡ଼ କଲେ, ବଡ଼ କୋଟି (?) କଲେ । ପଦ୍ମପୁର ତୋଟା କଲେ । ସାତ କୋଡ଼ି ବର୍ଷ

ଜିଣିଲେ । ଏ ଦିଜଣଙ୍କର ଯୁଦ୍ଧରୁ ସେ ଦିନେ ସିଂଘ ଜଣେ ରାଜ୍ୟରୁ ଗଲେ । ଉଦେପୁର x x x x । ଶ୍ରୀପୁରୁଷୋତ୍ତମକୁ ତିରିଶ କୋଶ ବୋଲି ଉରାଳି (?) ରେ ଦୁଇଶହ ବାହାଣ (?) ବରତନ କରି ରହିଲ ସାତଶ (?) ବର୍ଷ ସେଠାରେ ରହି ସେ ରାଜ୍ୟ ମାଡ଼ି ବସି ରଜା ହୋଇଲେ । ବଂଶ ରାଜ୍ୟ କରୁଅଛନ୍ତି ।

୩୪ । ଗଜସିଂଘଙ୍କ ପୁଅ ଧୃତରାଜ ସିଂଘ ଅଇଲେ । ତାଙ୍କ ପୁଅ ଦର୍ପ ସିଂଘ ଟୀକାଏତ । ବୁଢ଼ାବଳଙ୍ଗ * ବାନ୍ଧିଲେ । ତଥିରେ ଏବେ ହେଁ ଥିବପରା । ତାଙ୍କୁ ହାତୀ ମାଇଲା ।

ଅର୍ଜ୍ଜୁନ ସିଂଘ ବିକ୍ରମ ସିଂଘ ଦୁଇ ଭାଇ । ବିକ୍ରମ ସିଂଘ, ଗଜସିଂଘ ଦୁଇ ମାଲକୁ ମାଇଲେ । ପୋଡ଼ାହାଟ ପୁରୁଣା ଗଡ଼ରେ ମାଇଲେ । ଗଜପତିଙ୍କ ଘରେ ମତ୍ତହସ୍ତୀ ମାଇଲେ । ମତ୍ତହସ୍ତୀ ମାରି 'ମତ୍ତଗଜ ସିଂଘ' ପଦ ପାଇଲେ । ବିରୁଆଳ ଲକ୍ଷ୍ମୀସିଂଘ ସଙ୍ଗରେ ଥିଲେ । ଗଜସିଂଘ ପଦ ପାଇ ସେବା କଟକରି ଅଇଲେ ବିଦା ହୋଇ । ବିରୁଆଳକୁ ହଂସ ଶତକରୁ ଗୋଟିଏ ଦେଲେ । ଲକ୍ଷ୍ମୀପାହାଡ଼ି ଦେଶ ଦେଲେ । ଏଥିରେ କାଳି କୁଅଁର ଥାଇ ହତପାଟ ହୋଇଲା । କୁଣ୍ଡାଇ ଭୂୟାଁ ରାଜ୍ୟରୁ ଗଲେ । ବିକ୍ରମ ସିଂଘଙ୍କ ପୁଅ କାଶୀରାମ ସିଂଘ ରଜା ହେଲେ । ଏହାଙ୍କ ପୁଅ ତେଲନ ସିଂଘ ଟୀକାଏତଙ୍କୁ ଶ୍ରୀପଞ୍ଚମୀ ଦିନ ପାଶକୁ ଡାକିଆଣି କପାଳକୁ ଲାଗି ଚନ୍ଦନ ପୋଛି ଆଣି ଶ୍ରୀ ଅର୍ଜ୍ଜୁନ ସିଂଘ ଟୀକାଦେଲେ । ଆରଦିନ ଅନ୍ତର୍ଜଳକୁ ଗଲେ । ଛ'ଦିନ ଉତାରୁ ସାତ ଥାଳି ସିବରସର (?) ଯୁତ କଲେ, ଚଇତ୍ର ପ୍ରତିପ ଦିନ ରାତ୍ରଦଣ୍ଡେ ଠାବରେ ଅନ୍ୟସ୍ତ (ଅସ୍ତ ?) ହେଲେ । ତାଙ୍କ ପୁଅ ଶ୍ରୀଜଗନ୍ନାଥ ସିଂଘ ରାଜା ହୋଇଲେ । ବଂଶାବଳୀ ନାମ ଲଗା କରିଲେ । ଖରସୁଆଁ କାଭ୍ର ମାରି ନେଲେ । ଜଗନ୍ନାଥ ସିଂଘ ଦେବରାଜ ହେଲେ । ଏ ବଂଶ ଚରିତ ଲେଖି ରଖିଲେ, ଶ୍ରୀ ଜଗନ୍ନାଥ ସିଂଘ ରଜା ହେଲେ । କକଡ଼ା ଷଷ୍ଠୀ ଦିନ ରାତ୍ର ସାତଦଣ୍ଡଠାରେ ଜୟନ୍ତୀଗଡ଼ଠାରେ ଶ୍ରୀ ବୈ xxxxx ଏ ସମୟ ଅନ୍ତର୍ଦ୍ଧାନ ହୋଇଲେ । ୪୧ । ଏହାଙ୍କ ପୁଅ ଶ୍ରୀ ପୁରୁଷୋତ୍ତମ ସିଂଘ ଟୀକାଏତ ରଜା ହୋଇଲେ ।



* ସିଂହଭୂମରେ ବୁଢ଼ାବଳଙ୍ଗ ନଦୀ ଥିବାର ଜାଣେ ନାହିଁ । ବୁଢ଼ାବଳଙ୍ଗ ନଦୀ ମୟୂରଭଞ୍ଜର ପୂର୍ବାଂଶରେ ଅବସ୍ଥିତ ।

# ଓଡ଼ିଶାରେ ଇତିହାସ ଚର୍ଚ୍ଚାର ଅଗ୍ରଗତି

ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ବ୍ରିଟିଶ ରାଜତ୍ୱ ପ୍ରତିଷ୍ଠିତ ହେବାପରେ ଓଡ଼ିଶାର ଇତିହାସ ସଂପର୍କରେ ଷ୍ଟାର୍ଲିଂ ସାହେବ ୧୮୨୨ରେ ପ୍ରଥମେ ଯେଉଁ ପୁସ୍ତକ ଇଂରାଜୀରେ ଲେଖିଥିଲେ, ତହିଁରେ ଓଡ଼ିଶାର ଇତିହାସ ଯାହା ଲିଖିତ ହୋଇଥିଲା, ତାହାର ଉପାଦାନ ମାଦଳାପାଞ୍ଜି ପ୍ରଭୃତି କେତେକ କିମ୍ବଦନ୍ତୀମୂଳକ ଲେଖାରୁ ସଂଗୃହୀତ ହୋଇଥିଲା । ତତ୍ପରେ କିଟୋ ସାହେବ ୧୮୩୭ ଓ ୧୮୩୮ରେ ଓଡ଼ିଶାର କେତେକ ସ୍ଥାନର ପ୍ରତ୍ନତତ୍ତ୍ୱ ଉପରେ କେତେଗୁଡ଼ିଏ ଲେଖା ଲେଖିଥିଲେ 'ଏସିଆଟିକ୍ ସୋସାଇଟି'ର ପତ୍ରିକାରେ । ତତ୍ପରେ ୧୮୭୨ ରେ ହଣ୍ଟର ସାହେବ 'ଓଡ଼ିଶାର ଇତିହାସ' ଉପରେ ଦୁଇ ଖଣ୍ଡି ବହି ଇଂରାଜୀରେ ଲେଖିଥିଲେ । ତତ୍ପରେ ୧୮୭୫-୮୦ ମଧ୍ୟରେ ରାଜେନ୍ଦ୍ରଲାଲ ମିତ୍ର 'ଏଣ୍ଟିକ୍ୱିଟିଜ୍ ଅଫ୍ ଓଡ଼ିଶା' ନାମକ ଦୁଇଖଣ୍ଡି ପ୍ରକାଣ୍ଡ ପୁସ୍ତକ ଲେଖିଥିଲେ । ୧୮୮୦ ପୂର୍ବରୁ ପ୍ୟାରିମୋହନ ଆଚାର୍ଯ୍ୟ ପ୍ରଥମେ ଓଡ଼ିଆରେ 'ଓଡ଼ିଶାର ଇତିହାସ' ଲେଖିଲେ ପୂର୍ବୋକ୍ତ ଇଂରାଜୀ ପୁସ୍ତକଗୁଡ଼ିକରୁ ଉପାଦାନ ସଂଗ୍ରହ କରି । ୧୮୭୧ ଠାରୁ ୧୮୯୬ ମଧ୍ୟରେ ଓଡ଼ିଶାରୁ ମିଳିଥିବା ଅନେକଗୁଡ଼ିଏ ତମ୍ବାପଟା କଲିକତାର 'ଏସିଆଟିକ୍ ସୋସାଇଟିର' ପତ୍ରିକା'ରେ ଓ 'ଇଣ୍ଡିଆନ୍ ଏଣ୍ଟିକ୍ୱେରି' ପତ୍ରିକାରେ ମୁଦ୍ରିତ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ମନମୋହନ ଚକ୍ରବର୍ତ୍ତୀ ଓଡ଼ିଶାର ସୂର୍ଯ୍ୟବଂଶ ଓ ଗଙ୍ଗବଂଶ ଉପରେ ଦୁଇଟି ଉପାଦେୟ ପ୍ରବନ୍ଧ ଲେଖିଥିଲେ, ଯହିଁରେ କେବଳ ଲିପିତତ୍ତ୍ୱମୂଳକ ଉପାଦାନ ସଂଗୃହୀତ ହୋଇ ଆଲୋଚିତ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ 'ଏପିଗ୍ରାଫିଆ ଇଣ୍ଡିକା' ଗ୍ରନ୍ଥମାଳାରେ ଓଡ଼ିଶାରୁ ପ୍ରାପ୍ତ ଅନେକଗୁଡ଼ିଏ ତମ୍ବାପଟା ଓ ଶିଳାଲିପିର ପାଠ ମୁଦ୍ରିତ ହୋଇଥିଲା । ୧୯୧୫ରେ ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରିକାରେ ଓଡ଼ିଶାରୁ ପ୍ରାପ୍ତ ଅନେକ ତମ୍ବାପଟାର ପାଠ ମଧ୍ୟ ମୁଦ୍ରିତ ହୋଇଥିଲା । ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ତାଙ୍କର 'ଓଡ଼ିଶାର ଇତିହାସ'ରେ ଏହିସବୁ ଉପାଦାନ ଆଲୋଚନା କରିବାର ସୁଯୋଗ ପାଇ ନଥିଲେ ବୋଲି ମନେହେଲେ ମଧ୍ୟ ମୋଗଲ ଅଧିକାରଠାରୁ ଓଡ଼ିଶାର ଇତିହାସରେ ଅନେକ ନୂତନ ତଥ୍ୟ ସଂଗ୍ରହ କରିଥିବାରୁ ଓଡ଼ିଶାରେ ଚିରସ୍ମରଣୀୟ ରହିବେ । ତତ୍ପରେ ୧୯୩୦-୩୧ରେ ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟଙ୍କ 'ଓଡ଼ିଶାର ଇତିହାସ' ଇଂରାଜୀରେ

ଲିଖିତ ହୋଇଥିଲା । ଏହି ପୁସ୍ତକରେ ଷ୍ଟାର୍ଲିଂ ହଣ୍ଟର ରାଜେନ୍ଦ୍ର ଲାଲଙ୍କ ଅନୁସୃତ କିମ୍ବଦନ୍ତୀମୂଳକ ଇତିହାସ ବର୍ଜିତ ହୋଇ ପତ୍ନତାତ୍ତ୍ୱିକ ଓ ଅନ୍ୟାନ୍ୟ ଉପାଦାନ ଉପରେ ଓଡ଼ିଶାର ଇତିହାସ ସଂକଳିତ ହୋଇଥିଲା । ପ୍ରକୃତରେ ଓଡ଼ିଶା ଇତିହାସର ଏହା ଏକ ବୈଜ୍ଞାନିକ ମୂଳଦୁଆ କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୩୦-୩୧ ରୁ ୧୯୬୬ ମଧ୍ୟରେ ଓଡ଼ିଶାର ଇତିହାସର ଉପାଦାନ ବହୁଳଭାବେ ଆବିଷ୍କୃତ ହେବାଫଳରେ ଗଙ୍ଗବଂଶ ପୂର୍ବବର୍ତ୍ତୀ ରାଜବଂଶଗୁଡ଼ିକର ଇତିହାସ ସମ୍ପର୍କରେ ବହୁ ନୂତନ ତଥ୍ୟ ଜଣାଯାଇଛି । ସୋମବଂଶୀ ତାମ୍ରଶାସନ ଓ ଶିଳାଲିପିରୁ, ଭୌମବଂଶୀ ତାମ୍ରଶାସନଗୁଡ଼ିକରୁ ଓ ବିଗ୍ରହବଂଶୀ ତାମ୍ରଶାସନଗୁଡ଼ିକରୁ ଓଡ଼ିଶାର କିମ୍ବଦନ୍ତୀମୂଳକ କେଶରୀ ବଂଶର ଇତିହାସର ଅସ୍ତିତ୍ୱ ଏକାବେଳକେ ଅପ୍ରମାଣିତ ହୋଇଛି । ବାଲେଶ୍ୱର ଜିଲ୍ଲାର ଉତ୍ତରାଞ୍ଚଳ ଭୋଗରାଇ ନିକଟବର୍ତ୍ତୀ ଜୟରାମପୁର ଗ୍ରାମରୁ ପ୍ରାପ୍ତ ତମ୍ବାପଟାରୁ ଜଣାଯାଇଛି ଯେ ଖ୍ରୀ: ୫ମ-୬ଷ୍ଠ ଶତାବ୍ଦୀରେ ସେଠାରେ ଏକ ନୂତନ ରାଜବଂଶ ଦ୍ୱାରା ଅବଲୋକିତେଶ୍ୱରଙ୍କ ଉଦ୍ଦେଶ୍ୟରେ ଏକ ବୌଦ୍ଧବିହାର ସ୍ଥାପିତ ହୋଇଥିଲା । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ଅଞ୍ଚଳରୁ ଏତେ ପ୍ରାଚୀନ ଐତିହାସିକ ଉପାଦାନ ଇତିପୂର୍ବରୁ ନଥିଲା । ପ୍ରକୃତପକ୍ଷେ ବାଲେଶ୍ୱର ଜିଲ୍ଲାରୁ ଓଡ଼ିଶାର ଇତିହାସର ଖ୍ରୀ:୩ୟ ଶତାବ୍ଦୀଠାରୁ ୭ମ ଶତାବ୍ଦୀ ପର୍ଯ୍ୟନ୍ତ ଉପାଦାନ ମିଳିଅଛି— ଭଦ୍ରକର ଭଦ୍ରକାଳୀ ମନ୍ଦିର ବେଢ଼ାରୁ ମିଳିଥିବା ଶିଳାଲିପିରୁ, ସୋରର ତମ୍ବାପଟାଗୁଡ଼ିକରୁ ଓ ଜୟରାମପୁରର ତମ୍ବାପଟାରୁ । ଏଥିରୁ ବେଶ ଜଣାଯାଉଅଛି ଯେ ବାଲେଶ୍ୱର ଜିଲ୍ଲାର ଐତିହାସିକ ତଥ୍ୟ ସଂଗ୍ରହରେ ଆମ୍ଭେମାନେ ଆଦୌ ଯତ୍ନଶୀଳ ହୋଇନାହୁଁ ।

ଅଳ୍ପକାଳ ପୂର୍ବେ କେଉଁଝର ଜିଲ୍ଲାର ଚମ୍ପୁଆ ସବ୍‌ଡିଭିଜନ ଅନ୍ତର୍ଗତ ବାରିଆ ଥାନାର ଅସନପାଟ ଗ୍ରାମରୁ ଗୋଟିଏ ଶିଳାଲେଖ ଆବିଷ୍କୃତ ହୋଇଅଛି । ଏହି ଶିଳାଲେଖର ଛାପ ମୋର ବନ୍ଧୁ ପ୍ରବୀଣ ଲିପିତତ୍ତ୍ୱବିତ୍ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କର ହସ୍ତଗତ ହେବାରୁ ସେ ତାହା ପାଠ କରିଅଛନ୍ତି । ଶିଳାଲେଖଟିକୁ କେହି ପ୍ରତ୍ନତତ୍ତ୍ୱବିତ୍ ଦେଖିବାକୁ ଯାଇନାହାନ୍ତି, ତେଣୁ ତାର ଫଟୋ ସଂଗୃହୀତ ହୋଇନାହିଁ । ଏହି ଶିଳାଲେଖରୁ ଜଣାଯାଏ ଯେ ଶତ୍ରୁ ଭଞ୍ଜ ନାମକ ଜଣେ ସୂର୍ଯ୍ୟବଂଶୀୟ ରାଜା ବିହାର ରାଜ୍ୟର ପାଟଳିପୁତ୍ର ପର୍ଯ୍ୟନ୍ତ ଦିଗବିଜୟ କରିଥିଲେ । ତାଙ୍କ ରାଜ୍ୟ ବିନ୍ଧ୍ୟାଟବୀ ଅର୍ନ୍ତଭୁକ୍ତ ଥିଲା । ଓଡ଼ିଶାରେ ଖାରବେଳଙ୍କ ପରେ ଶତ୍ରୁଭଞ୍ଜ ହିଁ ଦିଗ୍‌ବିଜୟ କରି ଉତ୍ତର ଭାରତରେ ଗଙ୍ଗା ପର୍ଯ୍ୟନ୍ତ ଯାଇଥିଲେ । ଆଧୁନିକ ଝାଡ଼ଖଣ୍ଡ ପ୍ରାଚୀନ ବିନ୍ଧ୍ୟାଟବୀ ଅଞ୍ଚଳଭୁକ୍ତ ବୋଲି ମନେହୁଏ । ଏହି ଶିଳାଲେଖର ସମୟ ଖ୍ରୀ:ଅ: ୩ୟ ଶତାବ୍ଦୀ । ଜୟରାମପୁରର ତମ୍ବାପଟା ଓ ଅସନପାଟର ଶିଳାଲେଖର

ଲିପି ପାଠ କରିବା ବଡ଼ କଷ୍ଟକର ବ୍ୟାପାର । କେବଳ ପ୍ରବୀଣ ଲିପିତତ୍ତ୍ୱବିତ୍ ଶ୍ରୀ ସତ୍ୟ ନାରାୟଣ ରାଜଗୁରୁଙ୍କ ଦ୍ୱାରା ତାହା ସହଜସାଧ୍ୟ ହୋଇଅଛି । ଅସନପାଟ ଶିଳାଲେଖର ପାଠ ଜାଣିବା ପାଇଁ ମୁଁ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କଠାରେ କୃତଜ୍ଞ । ୧୯୫୦ ଠାରୁ ଓଡ଼ିଶାର ମିଉଜିଅମ୍ ଭୁବନେଶ୍ୱରରେ ସ୍ଥାପିତ ହେଲା ଦିନୁ ଓଡ଼ିଶାର ଐତିହାସିକମାନେ ଓଡ଼ିଶାର ଇତିହାସ ଉପରେ ନାନାପ୍ରକାର ଆଲୋକପାତ କରିଅଛନ୍ତି ।

୧୯୪୮ରେ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଆରେ 'ଓଡ଼ିଶାର ଇତିହାସ' ନାମକ ଏକ ପୂର୍ଣ୍ଣାଙ୍ଗ ପୁସ୍ତକ ପ୍ରକାଶିତ କରିଥିଲେ । ସେଥିରେ ପ୍ରକାଶ ବିଷୟଗୁଡ଼ିକର ଉପାଦାନ ବୈଜ୍ଞାନିକ ଓ କିମ୍ବଦନ୍ତୀମୂଳକ ଥିଲେ ମଧ୍ୟ ତହିଁରୁ ସାଧାରଣ ପାଠକ ଓଡ଼ିଶାର ଇତିହାସ ଉପରେ ଏକ ମୋଟାମୋଟି ଧାରଣା କରିପାରିଥିଲା । ତତ୍‌ପରେ ଡକ୍ଟର ମହତାବ 'ଓଡ଼ିଶାର ଇତିହାସ' ଇଂରାଜୀରେ ସଂକଳିତ କରିଥିଲେ । ୧୯୫୩ ରେ ଶ୍ରୀ ପ୍ରଭାତ ମୁଖାର୍ଜୀଙ୍କର 'ଓଡ଼ିଶାର ଗଜପତି ରାଜଗଣ' ପୁସ୍ତକ ଇଂରାଜୀରେ ପ୍ରକାଶିତ ହୋଇଥିଲା ।

ତତ୍ପରେ ୧୯୬୪ ରେ ଡକ୍ଟର ନବୀନକୁମାର ସାହୁଙ୍କ ଦ୍ୱାରା ସଂକଳିତ 'ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଶା ଇତିହାସ' ପ୍ରଥମ ଭାଗ ଇଂରାଜୀରେ ପ୍ରକାଶିତ ହେଲା । ଏଥିରେ ପ୍ରାଚୀନକାଳରୁ ଖ୍ରୀଃ ୫୦୦ ପର୍ଯ୍ୟନ୍ତ ସମୟର ଇତିହାସ ସ୍ଥାନ ପାଇଛି । ଏହି ପୁସ୍ତକଟି ବଜାରରେ କିଣିବାକୁ ମିଳୁନାହିଁ। ସବୁ ବହି ବିଶ୍ୱବିଦ୍ୟାଳୟର ଗୋଦାମରେ ରକ୍ଷିତ ଅଛି ବୋଲି ଶୁଣାଯାଏ ।

ଏପର୍ଯ୍ୟନ୍ତ ପ୍ରକାଶିତ ଓଡ଼ିଶାର ଇତିହାସଗୁଡ଼ିକରେ 'ଓଡ଼ିଶାର ଗଡ଼ଜାତର ଇତିହାସ' ଭଲ ଭାବରେ ସ୍ଥାନ ପାଇନାହିଁ କହିଲେ ଚଳେ । ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ପ୍ରାଚୀନ ହେଲେ ମଧ୍ୟ ସେଗୁଡ଼ିକର ତଥ୍ୟ ଭଲଭାବରେ ସଂଗୃହୀତ ହୋଇନାହିଁ । ପ୍ରସଙ୍ଗକ୍ରମେ ଓଡ଼ିଶା ଗଡ଼ଜାତର ତିନୋଟି ରାଜବଂଶ ଉପରେ କିଞ୍ଚିତ୍ ଆଲୋକପାତ ଏଠାରେ କରାଯାଉଛି ।

ବୋମ୍ବାଇ 'ଭାରତୀୟ ବିଦ୍ୟାଭବନ'ରୁ ପ୍ରକାଶିତ 'ଭାରତର ସଂସ୍କୃତି ଓ ଇତିହାସ' ଗ୍ରନ୍ଥମାଳାର ୫ମ ଭାଗରେ ଭାରତର ଜଣେ ପ୍ରସିଦ୍ଧ ଐତିହାସିକ ଡକ୍ଟର ରମେଶଚନ୍ଦ୍ର ମଜୁମ୍‌ଦାର୍ ଲେଖିଅଛନ୍ତି ଯେ, ଓଡ଼ିଶାର ଭଞ୍ଜ ରାଜବଂଶ ଏକ ପ୍ରାଚୀନ ରାଜବଂଶ, ଯାହାକି ୧୫୦୦ ବର୍ଷ ଧରି ଓଡ଼ିଶାରେ ରାଜତ୍ୱ କରିଥିବାର ଐତିହାସିକ ପ୍ରମାଣ ମିଳେ । ପୂର୍ବୋକ୍ତ ଅସନପାଟ ଶିଳାଲିପିର ଶତ୍ରୁଭଞ୍ଜଙ୍କ ସମୟ ଭାରତର ଗୁପ୍ତଯୁଗର ଇତିହାସର ପୂର୍ବବର୍ତ୍ତୀ ହେଉଥିବାରୁ ଭଞ୍ଜବଂଶର ରାଜତ୍ୱକାଳ ଆହୁରି ୨୦୦-୩୦୦ ବର୍ଷ କାଳ ପଛେଇଯାଇଛି ।

ଭଞ୍ଜବଂଶର ଏହି ପ୍ରାଚୀନ ଇତିହାସ କେବଳ ସମ୍ଭବ ହୋଇଛି ଦେଶରେ ପ୍ରଚଳିତ କିମ୍ବଦନ୍ତୀ ସହିତ ତମ୍ବପଟାର ଲିଖିତ କିମ୍ବଦନ୍ତୀର ସାମଞ୍ଜସ୍ୟ ଲାଗି । ଯଦି ବ୍ରିଟିଶ୍ ରାଜତ୍ୱର ମୁଦ୍ରିତ ଇତିହାସକୁ ଉପାଦାନ ବୋଲି ଧରାଯାଇଥା'ନ୍ତା, ତେବେ ଆଜି ଭଞ୍ଜବଂଶ ଇତିହାସର ଏହି ଗୌରବପୂର୍ଣ୍ଣ ପ୍ରାଚୀନତା ଲୋପ ପାଇଥାଆନ୍ତା । ହଣ୍ଟର ସାହେବ ଓଡ଼ିଶାର ଇତିହାସରେ ଲେଖିଥିଲେ ଯେ ମୟୂରଭଞ୍ଜର ଭଞ୍ଜବଂଶ ୨୦୦୦ ବର୍ଷ ପୂର୍ବରୁ ସ୍ଥାପିତ ହୋଇଥିବାର କିମ୍ବଦନ୍ତୀ ଅଛି । ସେ ଏହି କଥା କେଉଁଠାରୁ ପାଇଥିଲେ, ତାହାର ଅନୁସନ୍ଧାନ କରି ମୁଁ କିଛି ପାଇପାରି ନଥିଲି । ତପରେ 'ଓଡ଼ିଶାର ଫିଉଡେଟରି ରାଜ୍ୟର ଗେଜେଟିଅର୍' ପୁସ୍ତକରେ ମୟୂରଭଞ୍ଜର ଭଞ୍ଜବଂଶ ୧୩୦୦ ବର୍ଷ ପୂର୍ବେ ସ୍ଥାପିତ ହୋଇଥିବାର ଏକ କିମ୍ବଦନ୍ତୀର କଥା ଲେଖାଅଛି ଓ ତତ୍‌ସହିତ ରାଜପୁତନାର ରାଜପୁତ ଶବ୍ଦ ବ୍ୟବହୃତ ହୋଇଅଛି । ହଣ୍ଟରଙ୍କ ଲେଖାର ସମର୍ଥନ ମିଳିଲା ୧୮୩୩ରେ ମହାରାଜା ଯଦୁନାଥ ଭଞ୍ଜଙ୍କର କାୟଥୀ ଅକ୍ଷରରେ ଓ ପାର୍ଶୀ ଭାଷାରେ ଲିଖିତ ଏକ ଦରଖାସ୍ତରୁ, ଯାହା ସରକାରୀ ଅଫିସରୁ ନକଲରୂପେ ଏକ ମୋକଦ୍ଦମାରେ ସଂଗୃହୀତ ହୋଇଥିଲା । ଏହି ଦରଖାସ୍ତରେ ମହାରାଜା ଲେଖିଅଛନ୍ତି ଯେ ଭଞ୍ଜବଂଶ ୨୫୦ ପୁରୁଷ ପୂର୍ବେ ସ୍ଥାପିତ ହୋଇଥିଲା । ମାତ୍ର ମହାରାଜା ବୈଦ୍ୟନାଥ ଭଞ୍ଜଙ୍କ ପୂର୍ବବର୍ତ୍ତୀ ରାଜାମାନଙ୍କର ନାମ ବଂଶାବଳୀରୁ ମିଳେନାହିଁ । ମହାରାଜା ବୈଦ୍ୟନାଥ ଭଞ୍ଜ ଖ୍ରୀ: ୧୬୩୦ ପୂର୍ବରୁ ଇହଧାମ ତ୍ୟାଗ କରିଥିବାର ପ୍ରମାଣ 'ରସିକ ମଙ୍ଗଳ' ଗ୍ରନ୍ଥରୁ ମିଳେ । ବୋଧହୁଏ, ହଣ୍ଟର ସାହେବ ଏହି ଦରଖାସ୍ତର ଇଂରାଜୀ ନକଲ ପାଇ ତାଙ୍କ ଲେଖାରେ ବ୍ୟବହାର କରିଥିଲେ ।

ଭଞ୍ଜବଂଶ ପରି ସ୍ତମ୍ଭ ରାଜବଂଶର ଅନେକଗୁଡ଼ିଏ ତମ୍ବପଟା ମିଳିଛି । ସ୍ତମ୍ଭ ରାଜାମାନଙ୍କ ରାଜଧାନୀ ଢେଙ୍କାନାଳ ଜିଲ୍ଲାର କୁଆଲୁ (ସଂସ୍କୃତ କୋବାଳକ) ଠାରେ ଥିଲା । ସେ ପ୍ରାଚୀନ କୀର୍ତ୍ତିର ଭଗ୍ନାବଶେଷ ଅଛି । ଓଡ଼ିଶାର ଅନୁଗୋଳ ରାଜ୍ୟର ରାଜବଂଶରେ 'ସ୍ତମ୍ଭ' ଉପାଧି ଥିଲା ଓ ଅନୁଗୋଳ, ତାଳଚେର ଓ ଢେଙ୍କାନାଳ ଅଞ୍ଚଳରେ ଏବେ ମଧ୍ୟ ଅନେକ ସ୍ତମ୍ଭ-ସଂଜ୍ଞାଧାରୀ କ୍ଷତ୍ରିୟ ଅଛନ୍ତି । ଓଡ଼ିଶାରୁ ତୁଙ୍ଗ ରାଜବଂଶର କେତୋଟି ତମ୍ବପଟା ମିଳିଛି -- ଓଡ଼ିଶାର ତିଗିରିଆ ରାଜବଂଶରେ ରାଜାମାନଙ୍କ ନାମରେ ତୁଙ୍ଗ ଶବ୍ଦ ଥିବାର ଦେଖାଯାଏ । ଏଣୁ ଭଞ୍ଜବଂଶ ଓ ସ୍ତମ୍ଭବଂଶ ସଦୃଶ ତୁଙ୍ଗବଂଶୀୟ କ୍ଷତ୍ରିୟମାନେ ଅଦ୍ୟପି ଓଡ଼ିଶାର ଗଡ଼ଜାତରେ ଅଛନ୍ତି । ମୋର ମନେହୁଏ, ଓଡ଼ିଶା ଗଡ଼ଜାତର ରାଜବଂଶଗୁଡ଼ିକର ଇତିହାସ ଭଲଭାବରେ ଆଲୋଚନା କଲେ ଅନେକ ନୂତନ ଐତିହାସିକ ତଥ୍ୟ ଆବିଷ୍କୃତ ହୋଇପାରନ୍ତା । ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକର ଇତିହାସ ସହିତ ଗଞ୍ଜାମ ଓ

କୋରାପୁଟର ରାଜବଂଶଗୁଡ଼ିକର ଇତିହାସ ଏକତ୍ର ବିଗ୍ରର କରିବାକୁ ହେବ, କାରଣ ଏସବୁ ଓଡ଼ିଶା ଗଡ଼ଜାତର ଅନ୍ତର୍ଭୁକ୍ତ ।

ଏ ତ ଗଲା ରାଜନୈତିକ ଇତିହାସର କଥା । ଏଥିସହିତ ଓଡ଼ିଶାର ସାଂସ୍କୃତିକ ଇତିହାସ ଜଡ଼ିତ । ସାଂସ୍କୃତିକ ଇତିହାସର ଉପାଦାନ ଦେଶର ଗ୍ୱରିଆଡ଼େ ବିକ୍ଷିପ୍ତ ଅଛି । ଓଡ଼ିଶାରେ ସଂସ୍କୃତ ସାହିତ୍ୟର ଇତିହାସ ଅଛି । ଅସନପାଟ ଶିଳାଲେଖର ପ୍ରଶସ୍ତି ସଂସ୍କୃତ ଶ୍ଲୋକରେ ଲିଖିତ । ଏହା ସମୁଦ୍ରଗୁପ୍ତଙ୍କ ଏଲ୍ଲାହାବାଦ ପ୍ରଶସ୍ତିଠାରୁ ପ୍ରାଚୀନ । ଓଡ଼ିଶାର ବିଭିନ୍ନ ଧର୍ମମତର ଇତିହାସ ମଧ୍ୟ ଲିଖିତ ହୋଇପାରିବ । ଏଥିରୁ ମନେହୁଏ ଯେ ଓଡ଼ିଶାର ଇତିହାସ ଚର୍ଚ୍ଚାର ଭବିଷ୍ୟତ ଅତି ଉଜ୍ଜ୍ୱଳ ।



ସମାଜ, ୧୯୬୭, ଜୁଲାଇ

# ମାଦାଳପାଞ୍ଜି ପାଣ୍ଡୁଲିପିର ଗବେଷଣା

ଉପକ୍ରମ :

ଖ୍ରୀ:ଅ: ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଖ୍ରୀ:ଅ: ୧୮୧୮ରେ ଏଣ୍ଡ୍ରୁଜ ଷ୍ଟାର୍ଲିଂ ନାମକ ଜଣେ ଇଂରେଜ ଅଫିସର କଟକର କମିଶନରଙ୍କ ସେକ୍ରେଟାରୀରୂପେ କାର୍ଯ୍ୟ କରିବାକୁ ଆସିଲେ । ସେ ଜଣେ ନାନା ଭାଷାବିତ୍ ପଣ୍ଡିତ ଥିଲେ । ଓଡ଼ିଶାରେ ଅବସ୍ଥାନ ସମୟରେ ସେ ଓଡ଼ିଶାର ଇତିହାସ ଲେଖିବା ପାଇଁ ମନସ୍ଥ କରି ଉପାଦାନ ସଂଗ୍ରହ କଲେ । କଟକର କେଲକ୍ଟରିଏଟରୁ ଓଡ଼ିଶାର ରାଜସ୍ୱ ଉପରେ କେତେକ ପାର୍ସି କାଗଜପତ୍ର ପାଇଥିଲେ । ମୋଟାମୋଟି ଭାବରେ ମୋଗଲ ଅଧିକାର ସମୟ ୯୯୯ ସାଲ ବା ଖ୍ରୀ:ଅ: ୧୫୯୨ଠାରୁ ସେ ପାର୍ଶି ଲେଖା କାଗଜପତ୍ରରୁ ମୋଗଲ ଓ ମରହଟ୍ଟା ଶାସନ କାଳର ଇତିହାସ ପାଇଁ ଉପାଦାନ ପାଇଥିଲେ । ତତ୍ପୂର୍ବରୁ ସ୍ୱାଧୀନ ଓଡ଼ିଶାର ଇତିହାସ ପାଇଁ ନାନା ସ୍ଥାନରୁ ବିଶେଷତଃ ପଟିଆ ରାଜବଂଶରୁ ଏକ ସଂସ୍କୃତ ବଂଶାବଳୀ ଓ ପୁରୀର ଜଗନ୍ନାଥ ମନ୍ଦିରରୁ ମାଦଳାପାଞ୍ଜିର ବିବରଣ ପାଇଥିଲେ । ଏତିକି ଉପାଦାନ ଉପରେ ସେ ଓଡ଼ିଶାର ପ୍ରଥମ ଇତିହାସ ଲେଖି ଖ୍ରୀ:ଅ: ୧୮୨୨ରେ ଛପାଇଥିଲେ । ସେହି ଲେଖା କଲିକତାର ଏସିଆଟିକ୍ ସୋସାଇଟିରୁ ପ୍ରକାଶିତ 'ଏସିଆଟିକ୍ ରିସର୍ଚ୍ଚେସ' ନାମକ ଗ୍ରନ୍ଥମାଳାର ୧୫ଶ ଭାଗରେ ଖ୍ରୀ:ଅ: ୧୮୨୫ ରେ ପୁନର୍ମୁଦ୍ରିତ ହୋଇଥିଲା । ତପରେ ଭବାନୀଚରଣ ବନ୍ଦୋପାଧ୍ୟାୟ ନାମକ ଜଣେ ବଙ୍ଗୀୟ କର୍ମଗ୍ରାହୀ ମାଦଳାପାଞ୍ଜିର ବିବରଣକୁ ପଦ୍ୟାକାରରେ 'ପୁରୁଷୋତ୍ତମ ଚନ୍ଦ୍ରିକା' ନାମକ ପୁସ୍ତକରେ ଖ୍ରୀ:ଅ: ୧୮୪୫ରେ ଛପାଇଥିଲେ । ଖ୍ରୀ:ଅ: ୧୮୫୦ ରେ ବ୍ରଜକିଶୋର ଘୋଷ ପୁରୀର ଇତିହାସରେ ମାଦଳାପାଞ୍ଜିର ଉପକରଣ ଉପରେ ଏକ ବହି ଇଂରାଜୀରେ ମୁଦ୍ରଣ କରିଥିଲେ । ଖ୍ରୀ:ଅ: ୧୮୭୨ ରେ ମୁଦ୍ରିତ ହଣ୍ଟର ସାହେବଙ୍କର 'ଓଡ଼ିଶା' ପୁସ୍ତକରେ ସେ ପୁରୁଷୋତ୍ତମ ଚନ୍ଦ୍ରିକାକୁ ଷ୍ଟାର୍ଲିଂ ଲେଖା ଅପେକ୍ଷା ଅଧିକ ପ୍ରମାଣମୂଳକ ବୋଲି ଗ୍ରହଣ କରି ନିଜର ବହିରେ ବ୍ୟବହାର କରିଥିଲେ । ହଣ୍ଟର ଓ ଷ୍ଟାର୍ଲିଂଙ୍କ ବହିରୁ ପିଆରୀମୋହନ ଆଚାର୍ଯ୍ୟ ଓଡ଼ିଶାର ଇତିହାସ ପୁସ୍ତକ ଓଡ଼ିଆରେ ଖ୍ରୀ:ଅ: ୧୮୭୫ରେ ପ୍ରକାଶ କରିଥିଲେ । ରାଜେନ୍ଦ୍ରଲାଲ ମିତ୍ର ତାଙ୍କର ଏଣ୍ଟିକ୍ୱିଟିଜ୍ ଅଫ ଓଡ଼ିଶା ପୁସ୍ତକରେ ଷ୍ଟାର୍ଲିଂ ଓ ହଣ୍ଟରଙ୍କ

ପ୍ରକାଶିତ ବିବରଣ ଗ୍ରହଣ କରିଥିଲେ ଖ୍ରୀ:ଅ: ୧୮୭୫-୮୦ ମଧ୍ୟରେ । ଏହି ରୂପେ ପ୍ରାୟ ୫୦ ବର୍ଷକାଳ ତାଳପତ୍ରରେ ଲିଖିତ ମାଦଳାପାଞ୍ଜିର ମୌଳିକ ବିବରଣରୁ ଓଡ଼ିଶାର ଇତିହାସ ଲିଖିତ ହୋଇଥିଲା । ୧୯୦୪ରେ ଷ୍ଟାର୍ଲିଂଙ୍କ ପୁସ୍ତକର ପୁନର୍ମୁଦ୍ରଣ ବଙ୍ଗୀୟ ସେକ୍ରେଟାରୀଏଟ୍ ଛାପଖାନାରେ ହୋଇଥିଲା । ତତ୍ପରେ ଖ୍ରୀ:ଅ: ୧୯୧୬ ରେ ମାଦଳାପାଞ୍ଜିର 'ଦେଶଖଣ୍ଡା' ଅଂଶ ସଂଗ୍ରହ କରି ମନମୋହନ ଚକ୍ରବର୍ତ୍ତୀ ଓଡ଼ିଶାର ଭୂଗୋଳ ଉପରେ ଏକ ପ୍ରବନ୍ଧ କଲିକତାରୁ ପ୍ରକାଶିତ ଜର୍ଣ୍ଣେଲ ଏଣ୍ଡ ପ୍ରୋସିଡିଂସ୍ ଅଫ୍ ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶ କରିଥିଲେ ।

ମୁଁ ଖ୍ରୀ:ଅ: ୧୯୨୪ ଏପ୍ରିଲ ମାସରେ ମୟୂରଭଞ୍ଜ ରାଜ୍ୟର ପ୍ରତ୍ନତତ୍ତ୍ୱ ବିଭାଗରେ ନିଯୁକ୍ତ ହୋଇ ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱ ଓ ଐତିହାସ ସଂକଳନରେ ବ୍ରତୀ ହେଲି । ଖ୍ରୀ:ଅ: ୧୯୨୬ରେ ମାଦଳାପାଞ୍ଜିର ପାଣ୍ଡୁଲିପି ଉପରେ ଗବେଷଣା କରିବା ପାଇଁ ମୋର ଗୁରୁଦେବ ରାୟବାହାଦୂର ରମାପ୍ରସାଦଚନ୍ଦଙ୍କୁ ପ୍ରସ୍ତାବ ଦେବାରୁ ସେ ସେଥିରେ ରାଜିହୋଇ ନିଜେ ସେ କାର୍ଯ୍ୟ କରିବାକୁ ସମ୍ମତ ହେଲେ । ତଦନୁସାରେ ମୁଁ ପୁରୀର ତଦାନୀନ୍ତନ ରାଜାସାହେବ ରାମଚନ୍ଦ୍ର ଦେବଙ୍କର ଅନୁମତି ପ୍ରାର୍ଥନା କଲି ଓ ସେ ଆଗ୍ରହ ସହକାରେ ଅନୁମତି ଦେଇ ଦେଉଳକରଣ ଓ ତଡ଼ାଉକରଣ ଘରେ ଥିବା ତାଳପତ୍ର ବିଡ଼ାରେ ଲିଖିତ ମାଦଳାପାଞ୍ଜିର ବିବରଣ ଆମ୍ଭମାନଙ୍କୁ ଦେଇଥିଲେ । ୧୯୨୬ ପୂଜା ଛୁଟିରେ ମାଦଳାପାଞ୍ଜିର ପାଣ୍ଡୁଲିପିସବୁ ସଂଗ୍ରହ କରି ଚନ୍ଦ ମହାଶୟ ତାଙ୍କ କଲିକତାସ୍ଥିତ ଯାଦୁଘର ଅଫିସକୁ ନେଇଥିଲେ ଓ ସେଠାରେ ପାଣ୍ଡୁଲିପିର ପାଠ ଉଦ୍ଧାର କରାଯାଇଥିଲା । ତତ୍ପରେ ସେ 'Note of Madalapanji' ନାମକ ଇଂରାଜୀ ପ୍ରବନ୍ଧ ଲେଖି ତତ୍‌କାଳୀନ ବିହାର ଓ ଓଡ଼ିଶା ଗବେଷଣା ସମିତି ପତ୍ରିକାର ୧୨ଶ ଭାଗରେ ପୃ. ୧୦-୨୭ରେ ଛପାଇଥିଲେ । ସେ ଇଂରାଜୀ ପ୍ରବନ୍ଧରେ ମାଦଳାପାଞ୍ଜିର ପାଣ୍ଡୁଲିପି ଉପରେ ଇଂରାଜୀରେ ଯାହା ଲେଖିଥିଲେ, ତାହାର ଓଡ଼ିଆ ଅନୁବାଦ ତଳେ ଦିଆଗଲା । ସେଥିରୁ ପାଠକମାନେ ମାଦଳାପାଞ୍ଜି ପାଣ୍ଡୁଲିପି ଉପରେ ଯତ୍‌କିଞ୍ଚିତ୍ ଧାରଣା କରିପାରିବେ । ଏହା ପୂର୍ବରୁ ମାଦଳାପାଞ୍ଜିର ମୂଳ ଲେଖା ଉପରେ କୌଣସି ଐତିହାସିକ କାର୍ଯ୍ୟ କରି ନଥିଲେ । ମାଦଳାପାଞ୍ଜିର ପାଣ୍ଡୁଲିପି ଉପରେ ଯେଉଁମାନେ କାର୍ଯ୍ୟ କରିବାକୁ ଇଚ୍ଛୁକ, ସେମାନଙ୍କର ଉପକାର ପାଇଁ ଏ ପ୍ରବନ୍ଧ ମୁଁ ଲେଖିଲି ।

ଚନ୍ଦ ମହାଶୟ ଲେଖିଛନ୍ତି --

ଗତ ଅକ୍ଟୋବର (୧୯୨୬) ଅସଲ ମାଦଳାପାଞ୍ଜିର ପାଣ୍ଡୁଲିପି ଦେଖିବାପାଇଁ ମୁଁ ପୁରୀ ଯାଇଥିଲି । ମାଦଳାପାଞ୍ଜି ଜଗନ୍ନାଥ ମନ୍ଦିରର ଦୁଇ ଜଣ କର୍ମଚାରୀ—ଦେଉଳକରଣ

ଓ ତଡ଼ାଉକରଣଙ୍କ ତତ୍ତ୍ୱାବଧାନରେ ଥାଏ । ପୁରୀ ରାଜା ରାମଚନ୍ଦ୍ର ଦେବଙ୍କ ନିର୍ଦ୍ଦେଶ ଅନୁସାରେ ବାବୁ ଗୌରାଙ୍ଗଚରଣ ସାମନ୍ତରାୟ, ଏବର ଦେଉଳକରଣ ମୋତେ ଦୁଇଟି ପାଣ୍ଡୁଲିପି (କ ଓ ଖ) ଦେଖିବା ପାଇଁ ଦେଇଥିଲେ ଓ ବାବୁ ଶ୍ୟାମସୁନ୍ଦର ପଟ୍ଟନାୟକ, ଏବର ତଡ଼ାଉକରଣ ମୋତେ ତିନୋଟି (ଗ,ଘ ଓ ଙ) ପାଣ୍ଡୁଲିପି ଦେଇଥିଲେ । ଏହି ପାଣ୍ଡୁଲିପିଗୁଡ଼ିକ ତାଳପତ୍ରରେ ଲିଖିତ ଏକ ପ୍ରାଚୀନ ଓଡ଼ିଆ ଅକ୍ଷରରେ ଚଳନ୍ତି ଓଡ଼ିଆ ଭାଷାରେ ଲେଖାହୋଇଛି । ମୋର ଛାତ୍ର ବାବୁ ପରମାନନ୍ଦ ଆଗ୍ରର୍ଯ୍ୟ, ବି.ଏସ୍‌ସିଙ୍କ ସହ ଏହି ପାଣ୍ଡୁଲିପିଗୁଡ଼ିକର ପାଠୋଦ୍ଧାର କରୁଛି । ଏହି ନୋଟ ସେହି ପାଣ୍ଡୁଲିପିଗୁଡ଼ିକର ଏକ ପ୍ରାଥମିକ ରିପୋର୍ଟ ମାତ୍ର ।

କ : ଏହି ପାଣ୍ଡୁଲିପିରେ ୨୫ଯୋଡ଼ା ତାଳପତ୍ର ଅଛି । ଏଥିରୁ ୨୨ ଯୋଡ଼ା ପତ୍ର ଖଣ୍ଡବିଶେଷ । ଯାହାର ନାମ ରାଜାମାନଙ୍କ ରାଜ୍ୟ ଭୋଗକାଳ । ଏଥିରେ ସତ୍ୟଯୁଗର ରାଜାମାନଙ୍କର ତାଲିକା ସହ ରାଜା ବୀରକେଶରୀ ଦେବ ରାଜାଙ୍କ ୮ ଅଙ୍କ (ଖ୍ରୀ: ୧୭୪୨) ପର୍ଯ୍ୟନ୍ତ ଲେଖାଅଛି । ଶେଷ ୩ ଯୋଡ଼ା ପତ୍ର ପରବର୍ତ୍ତୀ କାଳରେ ଯୋଡ଼ା ହୋଇଛି । ଏଥିମଧ୍ୟରେ ପ୍ରଥମ ଦୁଇ ଯୋଡ଼ା ପତ୍ର (କ-୨) ଏକ ସ୍ୱତନ୍ତ୍ର ଖଣ୍ଡ । ଏଥିରେ ଖୋର୍ଦ୍ଧା ରାଜାମାନଙ୍କର ନାମର ତାଲିକା ସହ ରାଜତ୍ୱକାଳ ଅଙ୍କ ଦିଆଯାଇଛି ଓ ତତ୍ ସହିତ ବୀରକେଶରୀ ଦେବଙ୍କର ରାଜତ୍ୱ ପର୍ଯ୍ୟନ୍ତ ଅମଳି ସନ ୧୨୬୨ (ଖ୍ରୀ: ୧୮୫୭) ଲେଖାଅଛି । ୩ୟ ଯୁଗ୍ମପତ୍ର (କ-୨) ଏକ ସ୍ୱତନ୍ତ୍ର ଖଣ୍ଡ ଯହିଁରେ ଯୁଧିଷ୍ଠିରଙ୍କ ରାଜତ୍ୱକାଳରୁ ଲାଙ୍ଗୁଳା ନରସିଂହ ଦେବଙ୍କ ରାଜତ୍ୱରେ ଶେଷ ହୋଇଛି ।

ଖ : ଏହି ପାଣ୍ଡୁଲିପିଟି ୧୫ଟି ଯୁଗ୍ମ ପତ୍ରଯୁକ୍ତ ଖଣ୍ଡବିଶେଷ । ଏଥିରେ କଳିଯୁଗ ଠାରୁ ଆରମ୍ଭ କରି ମହାରାଜା ରାମଚନ୍ଦ୍ର ଦେବ ୩ୟଙ୍କ ରାଜତ୍ୱକାଳ ଶକାବ୍ଦ ୧୭୪୩ (ଖ୍ରୀ: ୧୮୨୦-୨୧) ପର୍ଯ୍ୟନ୍ତ ଲେଖାଅଛି । ଏହାର ନାମ ରାଜାମାନଙ୍କ ରାଜ୍ୟଭୋଗ ।

ଗ : ଏହି ପାଣ୍ଡୁଲିପିରେ ୨୩ଟି ଯୁଗ୍ମ ତାଳପତ୍ର ଅଛି, ଯାହାର ଅଧିକାଂଶ ପତ୍ର ପୋକ ଖାଇଯାଇଛି । ଏହାର ପ୍ରଥମ ୧୬ଟି ଯୁଗ୍ମପତ୍ର ଖଣ୍ଡବିଶେଷ । ଏହାର ନାମ— କଳିଯୁଗ ରାକାମାନଙ୍କ ଭୋଗକାଳ ।

ଏହା ଯୁଧିଷ୍ଠିରଙ୍କଠାରୁ ଆରମ୍ଭ ହୋଇଛି ଓ ଗୋବିନ୍ଦ ବିଦ୍ୟାଧରଙ୍କ ପୁତ୍ର ଚକା ପ୍ରତାପ ଦେବଙ୍କ ରାଜତ୍ୱକାଳରେ ଶେଷ ହୋଇଛି ।

୬ଟି ଯୁଗ୍ମପତ୍ର (ଗ.୨)ରେ କେବଳ ଯେ ଓଡ଼ିଶାର ରାଜାମାନଙ୍କ ନାମ ଅଛି ତାହା ନୁହେଁ, ଏଥିରେ ପତିଶା (ମୁସଲମାନ ରାଜାଙ୍କ) ମାନଙ୍କ ନାମ ଅଛି ।

ଘ : ଏହି ପାଣ୍ଡୁଲିପିରେ ୨୩ ଯୁଗ୍ମପତ୍ରରେ ୧୫ଟି କଥା ଉଲ୍ଲେଖ ଅଛି, ଯାହାକୁ ଘ-୧, ଘ-୨, ଘ-୩, ଇତ୍ୟାଦିରେ ଭାଗ କରାଯାଇଛି । ଏଥିମଧ୍ୟରୁ ୧୦ଟିରେ କେବଳ ଖଣ୍ଡିଏ ଯୁଗ୍ମପତ୍ର ଅଛି, ଯହିଁରେ କେବଳ ରାଜାମାନଙ୍କ ନାମ ଅଛି । ସର୍ବାପେକ୍ଷା ଦୀର୍ଘଖଣ୍ଡ ଘ-୧୦ରେ ୧୧ଟି ଯୁଗ୍ମପତ୍ର ଅଛି, ଯହିଁରେ କଳିଯୁଗର ଆରମ୍ଭରୁ ତେଲଙ୍ଗା ମୁକୁନ୍ଦ ଦେବଙ୍କ ରାଜତ୍ୱକାଳ ପର୍ଯ୍ୟନ୍ତ ଇତିହାସ ଦିଆଯାଇଛି ।

ଙ : ଏହି ପାଣ୍ଡୁଲିପି ପ୍ରଥମ ଯୁଗ୍ମପତ୍ରରେ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱକାଳ (୧୪୧୮ ଖ୍ରୀ: ୧୪୯୬) ଠାରୁ ରାଜାମାନଙ୍କ ଅଙ୍କ - ବର୍ଷ - ଶକାବ୍ଦ ସହ ଦିଆଯାଇଛି ଓ ଖୋର୍ଦ୍ଧାର ଗୋପୀନାଥଦେବଙ୍କ ୭ମ ଅଙ୍କ ଶକାବ୍ଦ ୧୬୪୪ (ଖ୍ରୀ: ୧୭୨୨) ପର୍ଯ୍ୟନ୍ତ ଲେଖାଅଛି ।

ଏହା ଲେଖିବାପରେ ଚନ୍ଦ ମହାଶୟ ପାଦଟୀକାରେ ଲେଖିଛନ୍ତି, ଛାପାଖାନାକୁ ପୂର୍ବୋକ୍ତ ଲେଖା ପଠାଇବା ପରେ ଆମ୍ଭେମାନେ ଏକ ପ୍ରାଚୀନ ତାଳପତ୍ର ପୋଥି ଦୀଘାପାତିଆର କୁମାର ଶରତ କୁମାର ରାୟଙ୍କ ସଂଗ୍ରହାଳୟରୁ ରାଜାମାନଙ୍କର ଏକ ତାଲିକା ପାଇଅଛୁ, ଯାହାକୁ କି ଗ-ଖଣ୍ଡ ଆଖ୍ୟା ଦିଆଯାଇଛି ।

ରମା ପ୍ରସାଦ ଚନ୍ଦ ମାଦଳାପାଞ୍ଜି ଉପରେ ଗବେଷଣା କରି ଯେଉଁ ଉପାଦେୟ ପ୍ରବନ୍ଧ ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରିକାରେ ୧୯୨୭ରେ ଲେଖିଥିଲେ, କୌତୂହଳୀ ପାଠକ ତାହା ପାଠକଲେ ଅନେକ ତଥ୍ୟ ଜାଣିପାରିବେ । ପ୍ରକୃତ କଥା ହେଉଛି, ପୌରାଣିକ ବଂଶାନୁଚରିତ ଅବଲମ୍ବନରେ ଏହା ଲିଖିତ ହୋଇ ନଥିବାରୁ ଏହା କେବେ ଲିଖିତ ହେଲା, ତାହାର ସମୟ ଜାଣିବା ବଡ଼ କଷ୍ଟକର ବ୍ୟାପାର । 'ମାଦଳାପାଞ୍ଜି'ରେ 'ମୋଗଲ' ଶବ୍ଦର ବ୍ୟବହାର ଦେଖି ଚନ୍ଦ ମହାଶୟ ତାହା ମୋଗଲ ରାଜତ୍ୱରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଲିଖିତ ହୋଇଥିବାର ଅନୁମାନ କରିଥିଲେ । ସେହିପରି ମାଦଳାପାଞ୍ଜିର କେଶରୀବଂଶ କଥା ଆଲୋଚନା କରିବାକୁ ଯାଇ ଷୋଡ଼ଶ ଶତାବ୍ଦୀରେ ପ୍ରତାପରୁଦ୍ରଦେବଙ୍କ ସେନାପତି ଜୀବଦେବ ଆଗ୍ରର୍ଯ୍ୟ ସୋମବଂଶୀ ରାଜା ଉଦ୍ୟୋତକେଶରୀ ଦେବଙ୍କ ନାମରୁ କେଶରୀ ଉପାଧି ଥିବାର ଅନୁମାନ କରି କେଶରୀ ବଂଶର କଥା ଲେଖିଥିଲେ । ତଦନୁସାରେ ମାଦଳାପାଞ୍ଜି ସଂକଳନକର୍ତ୍ତା ମାଦଳାପାଞ୍ଜିରେ କେଶରୀବଂଶୀୟ ରାଜତ୍ୱକାଳ ଖ୍ରୀ: ୪୭୪ରୁ

ଖ୍ରୀ ୧୧୩୨ ପର୍ଯ୍ୟନ୍ତ ରଖି ରାଜାମାନଙ୍କର ନାମୋଲ୍ଲେଖ କରିଥିଲେ, ମାତ୍ର ସମସାମୟିକ ଲେଖାରୁ ମାଦଳାପାଞ୍ଜିର ଏହି ଦାବୀ ପ୍ରମାଣିତ ହେଲାନାହିଁ । କିମ୍ବଦନ୍ତୀ ଯଦି ଅସଲ ହୋଇଥା'ନ୍ତା, ତେବେ ସମସାମୟିକ ଇତିହାସରୁ ତାହା ପ୍ରମାଣିତ ହୋଇଥାଆନ୍ତା । ସେହିପରି ଗଙ୍ଗବଂଶ ରାଜାମାନଙ୍କର ନାମ ମାଦଳାପାଞ୍ଜିରେ ଛ' ଦେବ ଛ' ନରସିଂହ, ଛ' ଭାନୁ—ଏ ରୂପ ୧୮ ପାଟ ରାଜାଙ୍କର ନାମ ଥିଲେ ମଧ୍ୟ ସମସାମୟିକ ଲେଖାରୁ କେବଳ ୭ ଦେବ ୪ ନରସିଂହ ଓ ୪ ଭାନୁ—ଏ ରୂପ ୧୪ ପାଟ ରାଜାଙ୍କର ନାମ ମିଳିବାରୁ ଏପରିକି ଗଙ୍ଗବଂଶର କିମ୍ବଦନ୍ତୀରେ ମାଦଳାପାଞ୍ଜିର ସତ୍ୟ ପ୍ରତିପାଦିତ ହେଲାନାହିଁ। ସେହିପରି ମାଦଳାପାଞ୍ଜିର ଏକ ପୋଥିରେ କେଶରୀବଂଶର ପ୍ରଥମ ରାଜା ଯଯାତିକେଶରୀଙ୍କ ରାଜତ୍ୱ ଶକ ୪୪୮ରେ ଶେଷ ହୋଇଥିବାର କଥା ଓ ସେହିଦିନଠାରୁ କେଶରୀବଂଶୀୟ, ଗଙ୍ଗବଂଶୀୟ ଓ ଭୋଇବଂଶୀୟ ରାଜା ମୁକୁନ୍ଦଦେବଙ୍କ ରାଜତ୍ୱକାଳ ଶକ ୧୭୦୦ ପର୍ଯ୍ୟନ୍ତ ଥିବାର ଲେଖାରେ ଶକାବ୍ଦ ଚଳିଥିବାର ତାହା ବିଶ୍ୱାସଯୋଗ୍ୟ ହେଉନାହିଁ, କାରଣ ଗଙ୍ଗବଂଶୀୟ ରାଜା ଚୋଡ଼ଗଙ୍ଗ ଦେବଙ୍କ ଗୋସାଇଁ ବାପା ବଜ୍ରହସ୍ତ ଦେବ ଶକ ୯୬୦-୬୧ ଅବ୍ଦ ତାଙ୍କ ଶିଳାଲିପିରେ ବ୍ୟବହାର କରିଥିବାରୁ ଓ ତତ୍‌ପୂର୍ବର ସୋମବଂଶୀ, ଭୌମବଂଶୀ, ଭଞ୍ଜବଂଶୀ ଆଦି ରାଜାମାନଙ୍କର ଲିପିରେ ଶକାବ୍ଦର ବ୍ୟବହାର ନ ଥିବାରୁ ଶକାବ୍ଦରେ ସର୍ବପ୍ରଥମ ବ୍ୟବହାର ଶକ ୯୪୦ ଓଡ଼ିଶାରେ ହୋଇଥିଲା । ଏଣୁ ମାଦଳାପାଞ୍ଜିରେ ଶକ ୪୪୮ ବ୍ୟବହାର ସଂଶୟମୂଳକ ଓ କାଳ୍ପନିକ ।

ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ସମସ୍ତଙ୍କର ଧନ୍ୟବାଦର ପାତ୍ର ଯେ ସେ ମାଦଳାପାଞ୍ଜିର ପାଠ ପ୍ରଥମେ ମୁଦ୍ରଣ କରିଛନ୍ତି । ତାଙ୍କର ମାଦଳାପାଞ୍ଜି ୧୯୪୦ରେ ପ୍ରାଚୀ ସମିତି ପକ୍ଷରୁ ମୁଦ୍ରିତ ହୋଇଥିଲା ଓ ତତ୍‌ପୂର୍ବରୁ ଆଂଶିକ ଭାବରେ ମାଦଳାପାଞ୍ଜିର ପାଠ ଗଦ୍ୟ ଓ ପଦ୍ୟାଦର୍ଶ ପୁସ୍ତକରେ ମୁଦ୍ରିତ ହୋଇଥିଲା । ସେ ମଧ୍ୟ 'ପୁରୀର ରାଜା ଓ ଅଜୟବାବୁଙ୍କ ଆନୁକୂଲ୍ୟରେ ତଡ଼ଉକରଣ ଓ ଦେଉଳକରଣଙ୍କ ଗୃହରୁ ମାଦଳାପାଞ୍ଜି ପାଠ କରିବାର ସୁବିଧା'' ପାଇଥିଲେ ଓ ''ମାଦଳାପାଞ୍ଜିର ଗୋଟିଏ ପାଣ୍ଡୁଲିପି ଲେଖି'' ଆଣିଥିଲେ । ତପରେ ପୁରୀରାଜାଙ୍କ ଉଆସରୁ ମାଦଳାପାଞ୍ଜିର ଏକ ପାଣ୍ଡୁଲିପି ପାଇଥିଲେ । ସେ ମୁଖବନ୍ଧରେ ଲେଖିଅଛନ୍ତି, ''ମାଦଳାପାଞ୍ଜି ପାଠ କଲେ ଜଣାଯାଏ ଯେ ଚୋଡ଼ଗଙ୍ଗଦେବଙ୍କ ପରକାଳପରୁ ଧାରାବାହିକ ରୂପେ ମାଦଳାପାଞ୍ଜି ଲିଖିତ ହୋଇଅଛି ।'' ଡକ୍ଟର ମହାନ୍ତି ସାହିତ୍ୟ ବିଶାରଦ ଥିଲେ । ମାତ୍ର ମାଦଳାପାଞ୍ଜିର ଭାଷାରେ ଖ୍ରୀଃ ଦ୍ୱାଦଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଯେଉଁ ଭାଷା ପରିଲକ୍ଷିତ ହୁଏ, ସେଥିରେ ଭାଷାର

ଧାରାବାହିକ ବା କ୍ରମବିକାଶର ଚିହ୍ନ ଲିଖିତ ହୁଏନାହିଁ । ସାରଳା ଦାସଙ୍କ ଲେଖା ପଦ୍ୟରେ ଓଡ଼ିଆ ଭାଷାର ଯେଉଁ ପରିମାର୍ଜିତ ବ୍ୟବହାର ଦେଖାଯାଏ, ଗଙ୍ଗରାଜା ନରସିଂହ ୪ର୍ଥଙ୍କ ଭୁବନେଶ୍ୱର ଲିପି, କପିଳେନ୍ଦ୍ର ଦେବଙ୍କ ଗଦ୍ୟ ଲିପିରେ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ଭାଷାର ଯେପରି ବିକାଶ ଖଡ଼ପଦାର ପୁରୁଷୋତ୍ତମଦେବଙ୍କ ଲିପିରେ ସେପରି ବିକାଶ ଦେଖିବାକୁ ମିଳେନାହିଁ । ସତ୍ୟ କହିବାକୁ ଗଲେ, ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ କ୍ରମଶଃ ଗଦ୍ୟ ଓଡ଼ିଆ ଭାଷା ଶିଶୁବେଦ ଓ ରୁଦ୍ରସୁଧାନିଧି ମାଧ୍ୟମରେ ଅଷ୍ଟାଦଶ ଶତାବ୍ଦୀର ବଡ଼ଜେନାଙ୍କ ଲେଖା ଚତୁର ବିନୋଦ ଯେପରି ଅବସ୍ଥାରେ ପହଞ୍ଚିଛି, ତାହାର ଶତାବ୍ଦୀ କ୍ରମବିକାଶ ଆମ୍ଭେମାନେ ଚେଷ୍ଟା କରିନାହୁଁ । ପ୍ରକୃତରେ ମାଦଳାପାଞ୍ଜି ସାହିତ୍ୟିକ ଦୃଷ୍ଟିକୋଣରୁ ଆଲୋଚିତ ହୋଇନାହିଁ କହିଲେ ଚଳେ ।

ଜଗନ୍ନାଥ ମନ୍ଦିରର ପ୍ରାଚୀନତା କେହି ଅସ୍ୱୀକାର କରିବେ ନାହିଁ । ସେହି ମନ୍ଦିରର ଇତିହାସ ଭାଗ ବଂଶାନୁସରିତ ଉପରେ ଆମ୍ଭେମାନେ ଆଲୋଚନା ଚଳାଇଅଛୁଁ । ମାତ୍ର ମାଦଳାପାଞ୍ଜିର ଅନ୍ୟାନ୍ୟ ଅଂଶ ଅଛି । ମନମୋହନ ଚକ୍ରବର୍ତ୍ତୀ ୧୯୧୬ରେ ମାଦଳାପାଞ୍ଜିର ଏକ ଅଂଶ-ଦେଶ ଖଞ୍ଜା ଉପରେ କାର୍ଯ୍ୟ କରି ଓଡ଼ିଶାର ସପ୍ତଦଶ ଶତାବ୍ଦୀରେ ଭୌଗୋଳିକ ବିବରଣ ଯାହା ପୂର୍ବ ଲିଖିତ ପ୍ରବନ୍ଧରେ ଲେଖିଅଛନ୍ତି, ସେଥିରେ ଅନେକ ନୂତନତ୍ୱ ଅଛି । ତଡ଼ଉକରଣ ଘରୁ ବଡ଼ମ୍ବର ପଣ୍ଡିତ ଶ୍ରୀବତ୍ସ ମିର୍ ହବିବଙ୍କ ଦ୍ୱାରା କେଉଁ ବାଟରେ ନାଗପୁର ମରହଟ୍ଟା ରାଜାଙ୍କୁ ଓଡ଼ିଶାକୁ ଅଣାଇଥିଲେ, ତାହାର ବିବରଣ ଏକ ଚିଠି ପାଇଥିଲେ ଏବଂ ସେହି ଚିଠି ଉପରେ ମୁଁ ଗୋଟିଏ ଇଂରାଜୀରେ ପ୍ରବନ୍ଧ India Historical Records Commission ର ଏକ ସଭାରେ ପାଠ କରିଥିଲି । ଏଥିରୁ ମୋର ମନେହୁଏ ଜଗନ୍ନାଥ ମନ୍ଦିର ସଂପର୍କରେ ଦେଉଳକରଣ ଓ ତଡ଼ାଉକରଣଙ୍କ ଘରେ ଅନ୍ୟାନ୍ୟ ଅନେକ ଉପାଦାନ ଅଛି । ତତ୍‌ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷିତ ହୋଇନାହିଁ । ମୋର ମନେହୁଏ ଯୁବକ କୌତୂହଳୀ ଐତିହାସିକ ପୁରୀକୁ ଯାଇ ପୁଙ୍ଖାନୁପୁଙ୍ଖ ରୂପେ ଦେଉଳକରଣ, ତଡ଼ାଉକରଣ ଓ ଅନ୍ୟାନ୍ୟ ଜଗନ୍ନାଥ ମନ୍ଦିରର ସେବକମାନଙ୍କ ଘରେ ଅନୁସନ୍ଧାନ ଚଳାଇଲେ ଓଡ଼ିଶା ଇତିହାସର ଉପାଦାନ ଉପରେ ଅନେକ କାଗଜପତ୍ର ମିଳିବ ।



ଝଙ୍କାର, ୨୧/୧୧

# ଅନଙ୍ଗଭୀମଦେବଙ୍କ ଅଭିଭାଷଣର ଐତିହାସିକ ଓ ସାହିତ୍ୟିକ ମୂଲ୍ୟ

୧୯୭୦ ବି.ଏ. ପରୀକ୍ଷାପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ମୁଦ୍ରିତ (Courses of studies) ବହିର ଅଷ୍ଟମ ପୃଷ୍ଠାରେ ଲିଖିତ ଅଛି ଯେ ଗଦ୍ୟପାଠ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଗଦ୍ୟ ସଂକଳନ 'ସାହିତ୍ୟପ୍ରବେଶ' ତୃତୀୟଭାଗରେ 'ମାଦଳାପାଞ୍ଜି' -- 'ଅନଙ୍ଗଭୀମଦେବ' ପାଠ ରହିଛି ।

୧୯୪୦ ପ୍ରାଚୀ ସମିତିଦ୍ୱାରା ମୁଦ୍ରିତ ଓ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂକଳିତ 'ମାଦଳାପାଞ୍ଜି' ପୁସ୍ତକରେ ୨୭ ପୃଷ୍ଠାଠାରୁ ୩୨ ପୃଷ୍ଠା ପର୍ଯ୍ୟନ୍ତ ଅନଙ୍ଗଭୀମଦେବଙ୍କର ବିବରଣ ମୁଦ୍ରିତ ଅଛି । ଅନଙ୍ଗଭୀମଦେବଙ୍କ ରାଜତ୍ୱକାଳ ୧୨୧୧ରୁ ୧୨୩୮ ପର୍ଯ୍ୟନ୍ତ ଐତିହାସିକମାନଙ୍କ ଦ୍ୱାରା ସ୍ଥିରୀକୃତ ହୋଇଛି । ଏହି ବିବରଣୀ ଲିଖିତ ହେବାର କାରଣ ଯଦି ସମସାମୟିକ ହୋଇଥାଏ, ତେବେ ତାହା ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ ପ୍ରଥମାର୍ଦ୍ଧ ବୋଲି ସହଜରେ ନିର୍ଦ୍ଦେଶିତ ହେବ । ଅର୍ଥାତ୍ ଓଡ଼ିଆ ସାହିତ୍ୟର ବିକାଶରେ ଅନଙ୍ଗଭୀମଦେବଙ୍କର ଜଗନ୍ନାଥ ମନ୍ଦିର ନିର୍ମାଣ ସମ୍ପର୍କରେ ମିଳିଥିବା 'ମାଦଳାପାଞ୍ଜି'ର ଏଇ ଅଭିଭାଷଣ ସମସାମୟିକ ହୋଇଥିଲେ ଓଡ଼ିଆ ସାହିତ୍ୟ ଏକ ଜ୍ୱଳନ୍ତ ନିଦର୍ଶନ ବୋଲି ସ୍ୱୀକାର କରିବାକୁ ପଡ଼ିବ ।

ଅନଙ୍ଗଭୀମଦେବଙ୍କର ଏଇ ଅଭିଭାଷଣର ସାହିତ୍ୟିକ ମୂଲ୍ୟବୋଧ କରିବାକୁ ହେଲେ 'ମାଦଳାପାଞ୍ଜି'ର ଲିଖନକାଳର ସମୟ ସ୍ଥିର କରାଯିବା ଏକାନ୍ତ ପ୍ରୟୋଜନ ।

ମୁଦ୍ରିତ 'ମାଦଳାପାଞ୍ଜି'ରେ ରାଜଭୋଗର ଇତିହାସ କଳିଯୁଗର ଆରମ୍ଭରୁ ଲେଖାହୋଇଥିବା କଥା ଲେଖାଅଛି । ତତ୍‌ପରେ ୪୭୪ ଖ୍ରୀଷ୍ଟାବ୍ଦରେ କେଶରୀ ବଂଶୀୟ ଯଯାତିକେଶରୀଙ୍କ କଥା ଲେଖା ହୋଇଚି । ଏହି ବହିରେ କେଶରୀବଂଶର ରାଜତ୍ୱକାଳ ଖ୍ରୀଷ୍ଟୀୟ ୧୧୩୨ ପର୍ଯ୍ୟନ୍ତ ଧରାଯାଇଛି । ତତ୍‌ପରେ ଗଙ୍ଗବଂଶୀୟ ଚୋଡ଼ଗଙ୍ଗଦେବ ଓଡ଼ିଶାରେ ରାଜତ୍ୱ କଲେ । 'ମାଦଳାପାଞ୍ଜି' କିମ୍ବଦନ୍ତୀରେ ଯାହା ବର୍ଣ୍ଣିତ ଅଛି, ସମସାମୟିକ ଲିପିଯୁକ୍ତ ପ୍ରମାଣଦ୍ୱାରା ତାହା ସମର୍ଥିତ ହୁଏନାହିଁ । ଏଣୁ ଗଙ୍ଗବଂଶୀୟ ଲିପି ଅନୁସାରେ

ଗ୍ଭେଡ଼ଗଙ୍ଗ (ଯେ କି ୧୦୭୬ ରେ ଓଡ଼ିଶାର କଳିଙ୍ଗାଞ୍ଚଳରେ ରାଜା ହୋଇଥିଲେ ।) ପ୍ରକୃତରେ ଖ୍ରୀଷ୍ଟୀୟ ୧୧୧୨ରେ ଓଡ଼ିଶା ବିଜୟ କରିଥିବା ତାଙ୍କ ପ୍ରଦତ୍ତ ତମ୍ବାପଟା ବିବରଣୀରୁ ପ୍ରମାଣିତ ହୁଏ । ସେ ୧୧୫୦ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ ଓ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ନିଜର ରାଜତ୍ୱ ବିସ୍ତାର ୧୧୩୫ ପୂର୍ବରୁ କରିଥିଲେ । ଏଇ କଥା ଦାସଗୋବା ତମ୍ବାପଟାର ଦ୍ୱାବିଂଶ ଶ୍ଳୋକରେ ବର୍ଣ୍ଣିତ ଅଛି । ଗ୍ଭେଡ଼ଗଙ୍ଗଦେବ ଉତ୍କଳ ବିଜୟ କରି ନିଜ ରାଜତ୍ୱର ଶେଷାନ୍ତରେ ପୁରୀର ପ୍ରସିଦ୍ଧ ଜଗନ୍ନାଥ ମନ୍ଦିରର ବିମାନ ଓ ଜଗମୋହନ ନିର୍ମାଣ କରାଇ ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥ ମହାପ୍ରଭୁଙ୍କର ତିନିମୂର୍ତ୍ତି ମନ୍ଦିରରେ ସ୍ଥାପନ କରାଇଥିଲେ । ଜଗନ୍ନାଥ ମନ୍ଦିର ଗଠନର ସମୟ ଖ୍ରୀଷ୍ଟୀୟ ୧୧୩୫ ରୁ ୧୧୫୦ ମଧ୍ୟରେ ନିର୍ଦ୍ଦେଶିତ ହୋଇପାରେ । ଦାସଗୋବା ତମ୍ବାପଟା ଗ୍ଭେଡ଼ଗଙ୍ଗଙ୍କ ନାତି ରାଜରାଜ ୩ୟଙ୍କ ଦ୍ୱାରା ଖ୍ରୀଷ୍ଟୀୟ ୧୧୯୮ରେ ପ୍ରଦତ୍ତ ଦାସଗୋବା ତମ୍ବାପଟାରେ ଲିଖିତ ଅଛି । ରାଜରାଜ ୩ୟଙ୍କ ପୁତ୍ରଙ୍କର ନାମ ଅନଙ୍ଗଭୀମ ଦେବ, ଯିଏ କି ୧୨୧୧ରେ ରାଜା ହୋଇଥିଲେ । ଅନଙ୍ଗଭୀମ ଦେବଙ୍କର ନଗରୀ ତମ୍ବାପଟା ୧୨୩୦ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ହୋଇଥିଲା । ତହିଁରୁ ଜଣାଯାଏ ଯେ ନିଜେ ଅନଙ୍ଗଭୀମଦେବ ତାଙ୍କ ତମ୍ବାପଟାରେ ଦାସଗୋବା ତମ୍ବାପଟାର ଶ୍ଳୋକ ଉଦ୍ଧୃତ କରି ଜଗନ୍ନାଥ ମନ୍ଦିର ଗ୍ଭେଡ଼ଗଙ୍ଗଙ୍କ ଦ୍ୱାରା ନିର୍ମିତ ହୋଇଥିବାର କଥା ଲେଖିଅଛନ୍ତି । ଏପରି ଅବସ୍ଥାରେ ମାଦଳାପାଞ୍ଜିରେ ମୁଦ୍ରିତ ଅନଙ୍ଗଭୀମଦେବଙ୍କର ଅଭିଭାଷଣରେ ସେ ନିଜେ ଜଗନ୍ନାଥମନ୍ଦିର ନିର୍ମାଣ କରିଥିବାର କଥା ଲେଖିବା ଏକ ପରବର୍ତ୍ତୀକାଳୀନ କିମ୍ବଦନ୍ତୀ ବୋଲି ସ୍ୱୀକାର କରିବାକୁ ହେବ । ତେବେ ଏଇ କିମ୍ବଦନ୍ତୀର ସମୟକାଳ କେବେ ? ଏଇ ପ୍ରଶ୍ନର ଉତ୍ତର ଦେବାକୁ ହେଲେ ମାଦଳାପାଞ୍ଜିରେ ମୁଦ୍ରିତ ଗ୍ଭେଡ଼ଗଙ୍ଗଦେବଙ୍କର ବିବରଣରୁ (ମାଦଳାପାଞ୍ଜିର ୨୧ ପୃଷ୍ଠାରୁ ୨୩ ପୃଷ୍ଠା ମଧ୍ୟରେ ମୁଦ୍ରିତ ଅଛି) ଜଣାଯାଏ ଯେ କେଶରୀବଂଶର ରାଜା ସିଦ୍ଧେଶ୍ୱର ରାଜତ୍ୱ ସମୟରେ 'ପଠାଣ' ଶବ୍ଦ ବ୍ୟବହୃତ ହୋଇଅଛି, ଯେଉଁ ପଠାଣ ଦ୍ୱାରା ବ୍ରାହ୍ମଣ ବାସୁଦେବ ରଥ ନିଜର 'ଟଙ୍କା' ସମ୍ପତ୍ତି କରାଇଥିଲେ ଓ ଭୁବନେଶ୍ୱର-ଲିଙ୍ଗରାଜଙ୍କୁ ସେବା କରି ଗ୍ଭେଡ଼ଗଙ୍ଗଙ୍କୁ ଓଡ଼ିଶାକୁ ଅଣାଇ କେଶରୀବଂଶ ଧ୍ୱଂସ କରିଥିଲେ । ପୂର୍ବେ ବୋଲାଯାଇଛି ଯେ ଗ୍ଭେଡ଼ଗଙ୍ଗଙ୍କର ଓଡ଼ିଶା ଅଧିକାର ଦ୍ୱାଦଶ ଶତାବ୍ଦୀର ପ୍ରଥମ ଦଶନ୍ଧିବେଳକୁ ହୋଇଥିଲା । ହଠାତ୍ ଗ୍ଭେଡ଼ଗଙ୍ଗଙ୍କର ଓଡ଼ିଶା ରାଜତ୍ୱବେଳକୁ ଓଡ଼ିଶାରେ ପଠାଣମାନଙ୍କର ପ୍ରାବଲ୍ୟ ଥିବାର ସ୍ୱୀକାର କରିବାକୁ ପଡ଼ିବ । ଖ୍ରୀଷ୍ଟୀୟ ୧୩୦୩ରେ ପଠାଣ ଭକ୍ତିୟାର ଖିଲିଜି ବିହାର ଓ ବଙ୍ଗଦେଶ ଅଧିକାର କରିବା

ପୂର୍ବରୁ କୌଣସି ପଠାଣମାନଙ୍କର ନାମ ପୂର୍ବଭାରତରେ ଜଣା ନଥିଲା । ଏଥିରୁ ପ୍ରମାଣିତ ହେଉଛି ଯେ ମାଦଳାପାଞ୍ଜିର କିମ୍ବଦନ୍ତୀ ଐତିହାସିକ ଭିତ୍ତିଶୂନ୍ୟ । କେବଳ ସେତିକି ନୁହେଁ, ମୁଦ୍ରିତ ମାଦଳାପାଞ୍ଜି ପୁସ୍ତକର ୧୪ ପୃଷ୍ଠାରେ ବର୍ଣ୍ଣିତ ଅଛି ଯେ ଘଟକେଶ୍ୱରୀ ନାମକ ରାଜା କଟକରେ 'ଲାଲବାଗ କଚେରୀ' କଲେ । 'ଲାଲବାଗ' ଶବ୍ଦଟି ପାରସିକ ଶବ୍ଦ । ଏଇ ଦୁଇଟି ମୁସଲମାନ ଶବ୍ଦ ପ୍ରୟୋଗଦ୍ୱାରା ସ୍ପଷ୍ଟ ପ୍ରତୀୟମାନ ହେଉଛି ଯେ ଅନଙ୍ଗଭୀମଦେବଙ୍କ ରାଜତ୍ୱ ପୂର୍ବରୁ ଓଡ଼ିଶାରେ ମୁସଲମାନ କିମ୍ବଦନ୍ତୀ ପ୍ରଚଳିତ ହେବାପରେ ମାଦଳପାଞ୍ଜିର କିମ୍ବଦନ୍ତୀ ରଚିତ ହୋଇଥିଲା । ଏଣୁ ମାଦଳାପାଞ୍ଜିର ରଚନା କାଳ ଖ୍ରୀଷ୍ଟୀୟ ୧୬ଶତ ଶତାବ୍ଦୀ ବୋଲି ଅନୁମିତ ହେଉଅଛି । ସେତେବେଳକୁ ଖ୍ରୀଷ୍ଟୀୟ ୧୫୬୮ ରେ ଓଡ଼ିଶା ସ୍ୱାଧୀନତା ହରାଇବା ପୂର୍ବରୁ ମଧ୍ୟ ଖ୍ରୀ: ୧୩୬୧ଠାରୁ ଓଡ଼ିଶାରେ ମୁସଲମାନ ଆକ୍ରମଣ ଯୋଗୁଁ ଓଡ଼ିଶାରେ ପାରସିକ ଶବ୍ଦର ବ୍ୟବହାର ସମ୍ଭବପର ହୋଇଥିଲା ।

ଅନଙ୍ଗଭୀମଦେବଙ୍କ ଅଭିଭାଷଣରେ ଲିଖିତ ଅଛି ଯେ, "ଏତ ଓଡ଼ିଶା ରାଇଜ ଯେ କେଶରୀ ରାଜାମାନଙ୍କୁ ଆଦିକରି ଗଙ୍ଗବଂଶେ ଆମ ଛପାଟ ସରିକି ରାଜ୍ୟ ଆଏ ହେଉଥିଲା । ପୂର୍ବଦିଗେ ଅର୍କକ୍ଷେତ୍ର ସୋମେନ୍ଦ୍ର ତୀରଠାରୁ ପଶ୍ଚିମେ ଭୀମନଗର ଦଣ୍ଡପାଟ ସରିକି ଆଏ ହେଉଥିଲା । ଦକ୍ଷିଣେ ମହୋଦଧି ଉତ୍ତର ତୀରଠାରୁ କାସାଁ (କାଁସବାଁସ) ସରିକି ଆଏ ହେଉଥିଲା । ଉତ୍ତରରେ କାଆଁସାଁ ବାଆଁସାଁ (କାଁସବାଁଶ) ଠାରୁ ଦକ୍ଷିଣେ ଋଷିକୁଲ୍ୟା ନଦୀ ସରିକି ।"

"ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପଦାରବିନ୍ଦ ପ୍ରସାଦେ ବ୍ରାହ୍ମଣମାନଙ୍କର କଲ୍ୟାଣେ, ଖଣ୍ଡାରେ ଯଶକରି ଭୂୟାଁ ପୁରାଣମାନଙ୍କୁ ଜୟ କରି ଆଏ କଲୁ ଉତ୍ତରଦିଗେ କାଁସାବାଆସାଁଠାରୁ ବନାଇବୁଡ଼ି ନଦୀସରିକି, ଦକ୍ଷିଣେ ଆଏ କଲୁ ଋଷିକୋଇଲା ନଦୀଠାରୁ ରାଜମହାନ୍ଦ୍ର ଦଣ୍ଡପାଟ ସରିକି, ପଶ୍ଚିମେ ଆଏକଲୁ ଭୀମନଗର ଦଣ୍ଡପାଟଠାରୁ ବଉଦସୀମା ସୋନପୁର ସରିକି । ଏ ତିନି ଦିଗରୁ ରାଇଜ ଆୟ କଲି ଜିତସୁନା ୨୦ ଲକ୍ଷ ମାଢ଼ ।" ପୂର୍ବେ ବର୍ଣ୍ଣିତ ହୋଇଅଛି ଯେ ଚ୍ଚୋଡ଼ଗଙ୍ଗଦେବ ଗୃହ୍ଣାତିସ୍ମ କରଂଭୂମୌ ଗଙ୍ଗା ଗୌତମୀ ଗଙ୍ଗୟୋ । ଉପରିଲିଖିତ ଶ୍ଳୋକରୁ ଚ୍ଚୋଡ଼ଗଙ୍ଗ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଉତ୍କଳ ରାଜ୍ୟ, ଯାହା ବିସ୍ତାର କରିବାର କଥା ଲେଖାଅଛି, ମାଦଳାପାଞ୍ଜିର ଅନଙ୍ଗଭୀମଦେବଙ୍କ ଅଭିଭାଷଣରେ ତାହା ଉତ୍ତରରେ କାଁସବାଁସ ନଦୀଠାରୁ ଗଙ୍ଗା ପର୍ଯ୍ୟନ୍ତ, ଦକ୍ଷିଣରେ ଋଷିକୁଲ୍ୟାଠାରୁ ରାଜମହିନ୍ଦ୍ରୀ ବା ଗୋଦାବରୀ ପର୍ଯ୍ୟନ୍ତ ନିଜେ ଅନଙ୍ଗଭୀମଙ୍କ ଦ୍ୱାରା ଅଧିକୃତ ହୋଇଥିବାର କଥା ବର୍ଣ୍ଣିତ ଅଛି । ମାଦଳାପାଞ୍ଜିର କିମ୍ବଦନ୍ତୀ ଲେଖକଙ୍କର ଲେଖାଠାରୁ

ସମସାମୟିକ ନଗରୀ ତମ୍ବପଟା ଲେଖା ନିଶ୍ଚୟ ଅଧିକ ବିଶ୍ୱାସଯୋଗ୍ୟ; ଏଣୁ ସମସାମୟିକ ଇତିହାସରୁ ଅନଙ୍ଗଭୀମଦେବଙ୍କ ଜଗନ୍ନାଥ ମନ୍ଦିରର ନିର୍ମାଣ ସମ୍ପର୍କରେ ମାଦଳାପାଞ୍ଜିରେ ମୁଦ୍ରିତ ଅଭିଭାଷଣ ଏକ ନ ଥିବାରୁ ମାଦଳାପାଞ୍ଜିର କିମ୍ବଦନ୍ତୀ ଲେଖାକୁ ସ୍ପଷ୍ଟଭାବରେ ପରବର୍ତ୍ତୀକାଳର ଲେଖା ବୋଲି ସ୍ୱୀକାର କରିବାକୁ ପଡ଼ିବ । ଏହାର ଗୋଟିଏ ପ୍ରମାଣ ଜଗନ୍ନାଥ ମନ୍ଦିରର ଭିତର ବେଢ଼ା ଉତ୍ତରଦ୍ୱାର ନିକଟରେ ଥିବା ଉତ୍ତରେଶ୍ୱର ମନ୍ଦିରର ଭିତରପାଖ କାନ୍ଥରେ ଅନଙ୍ଗଭୀମଦେବଙ୍କର ଯେଉଁ ଲେଖାଗୁଡ଼ିକ ଅଛି, ସେଥିରେ ସେ କୁତ୍ରାପି ଜଗନ୍ନାଥ ମନ୍ଦିରର ନିର୍ମାତା ବୋଲି ନିଜକୁ ଲେଖିନାହାନ୍ତି । ସମ୍ଭବତଃ ଜଗନ୍ନାଥ ମନ୍ଦିରର ବେଢ଼ାରେ ଅନଙ୍ଗଭୀମଦେବଙ୍କର ଏହି ଲେଖାଯୋଗୁଁ ସେ ଯେ ଜଗନ୍ନାଥ ମନ୍ଦିରର ନିର୍ମାତା ଥିଲେ,ତାହା ମାଦଳାପାଞ୍ଜିର କିମ୍ବଦନ୍ତୀ-ଲେଖକଙ୍କ ଦ୍ୱାରା ଗୃହୀତ ହୋଇଥିଲା । କାରଣ ନଗରୀ ତମ୍ବପଟା ତାଙ୍କର ପିତାଙ୍କର ପ୍ରଦତ୍ତ ଓ ଦାସଗୋବ, ତମ୍ବପଟାରେ ସ୍ପଷ୍ଟ ବର୍ଣ୍ଣିତ ଅଛି ଯେ ଜଗନ୍ନାଥ ମନ୍ଦିରର ନିର୍ମାତା ଚୋଡ଼ଗଙ୍ଗଦେବ ଥିଲେ । ଐତିହାସିକ ଦୃଷ୍ଟିକୋଣରୁ ବିଗ୍ରହଦ୍ୱାରା ପ୍ରତିପାଦିତ ହେଉଛି ଯେ ଜଗନ୍ନାଥ ମନ୍ଦିରର ପ୍ରକୃତ ନିର୍ମାତା ଗଙ୍ଗବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗ ଥିଲେ । ମାଦଳାପାଞ୍ଜିର କିମ୍ବଦନ୍ତୀ ଲେଖିଲାବେଳକୁ ତାହା କିମ୍ଭୂତକିମ୍ବାକାର ରୂପ ଧାରଣ କରି ଅନଙ୍ଗଭୀମଦେବଙ୍କୁ ଜଗନ୍ନାଥ ମନ୍ଦିର ନିର୍ମାତା ବୋଲି ଯାହା ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି, ତାହା ଏକାନ୍ତ ଐତିହାସିକ ଭିତ୍ତିଶୂନ୍ୟ ।

ଅନଙ୍ଗଭୀମ ଦେବ 'ଅଭିନବ ବାରଣାସୀ କଟକ' ଅର୍ଥାତ୍ ଆଧୁନିକ କଟକ ନଗର ରାଜଧାନୀ ବସାଇଥିଲେ । ଖ୍ରୀଃ ୧୩୬୧ ରେ ଦିଲ୍ଲୀର ଫିରୋଜସାହ କଟକ ଅଭିଯାନରେ ଆସି କଟକସ୍ଥିତ ବିଷ୍ଣୁମନ୍ଦିର ଭାଙ୍ଗି ଦେଇଥିଲେ । ଇତିହାସର ଏହି ମନ୍ଦିର କିମ୍ବଦନ୍ତୀରେ ପୁରୀ ଜଗନ୍ନାଥ ମନ୍ଦିର ଉପରେ ଆରୋପିତ ହୋଇଥିବାର ଅନୁମିତ ହୁଏ । ନଗରୀ ତମ୍ବପଟାରେ ମଧ୍ୟ କଟକରେ ଅନଙ୍ଗଭୀମଦେବ ଏକ ବିଷ୍ଣୁମନ୍ଦିର ନିର୍ମାଣ କରିଥିବାର କଥା ଲେଖାଅଛି ।

ବର୍ତ୍ତମାନ ସାହିତ୍ୟିକ ଦୃଷ୍ଟିକୋଣରୁ ଅନଙ୍ଗଭୀମଦେବଙ୍କ ଅଭିଭାଷଣ ଲେଖାକଥା ବିଗ୍ରହ କରାଯାଉଛି । ଅନଙ୍ଗଭୀମଦେବଙ୍କ ରାଜତ୍ୱକାଳ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ପୂର୍ବାର୍ଦ୍ଧ । ଏଇ ସମୟରେ କୌଣସି ସମସାମୟିକ ପ୍ରମାଣ ଦ୍ୱାରା ଓଡ଼ିଆ ସାହିତ୍ୟରେ ଏତେ ଉନ୍ନତ ଭାଷା ଦେଖିବାକୁ ମିଳେନାହିଁ । ଓଡ଼ିଶାରେ ଚଳିତ ଦୁଇଟି ପ୍ରାଚୀନ ଗ୍ରନ୍ଥ (୧) ରୁଦ୍ର ସୁଧାନିଧି ଓ (୨) ଶିଶୁବେଦ -- ଏ ଦୁଇଟି ଗ୍ରନ୍ଥର ଲିଖନ ପ୍ରଣାଳୀ ସହିତ ଅନଙ୍ଗଭୀମଦେବଙ୍କର ଅଭିଭାଷଣର ଲିଖନ ପ୍ରଣାଳୀ ତୁଳନା କଲେ ବେଶ୍ ବୁଝାଯାଏ ଯେ ମାଦଳାପାଞ୍ଜିର ଲେଖା ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ନୁହେଁ ।

ମୁଦ୍ରିତ ମାଦଳାପାଞ୍ଜିର ଯେଉଁ ପାଣ୍ଡୁଲିପିରୁ ନକଲ ହୋଇ ମୁଦ୍ରିତ ହୋଇଛି, ସେଇ ପାଣ୍ଡୁଲିପିର ସମୟ ଊନବିଂଶ ଶତାବ୍ଦୀ ବା ଅଷ୍ଟାଦଶ ଶତାବ୍ଦୀ ବୋଲି ଧରାଯାଇଛି । ଷ୍ଟାର୍ଲିଂ ସାହେବ ପ୍ରଥମେ ୧୮୨୨ ରେ ମାଦଳାପାଞ୍ଜିର ଯେଉଁ ଇଂରାଜୀ ଅନୁବାଦ ଛପାଇ ଥିଲେ, ତାହା ସହିତ ମୁଦ୍ରିତ ମାଦଳାପାଞ୍ଜିର ପାଠ ଏକ ଥିବାର ଅନୁମିତ ହୁଏ । ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ୬୦୦ ବର୍ଷ ମଧ୍ୟରେ ଓଡ଼ିଆ ଗଦ୍ୟସାହିତ୍ୟର ଯେଉଁ ଉନ୍ନତି ହୋଇଥିଲା, ତାହାର ଶତାବ୍ଦୀ ଅନୁସାରେ ସମସାମୟିକ ପ୍ରମାଣ ନ ପାଇବାଯାଏ ଅନଙ୍ଗଭୀମଦେବଙ୍କର ଅଭିଭାଷଣର ପ୍ରକୃତ ସମୟ ନିରୂପଣ କରିବା ଏକ କଷ୍ଟକର ବ୍ୟାପାର । ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ପ୍ରକାଶିତ ଗଦ୍ୟପଦ୍ୟାଦର୍ଶରେ ଯେଉଁସବୁ ଓଡ଼ିଆ ସନନ୍ଦ ମୁଦ୍ରିତ ହୋଇଛି, ତାହାସବୁ ରାଜକୀୟ ଦଲିଲପତ୍ର । ସେଥିରେ ସାହିତ୍ୟର ଭାଷା ଅତି ଅଳ୍ପ ଥିବା ଦେଖାଯାଏ । ଏହିସବୁ ଐତିହାସିକ ଓ ସାହିତ୍ୟିକ ଦୃଷ୍ଟିକୋଣରୁ ବିଗ୍ଚର କଲେ ଅନଙ୍ଗଭୀମଦେବଙ୍କର ଅଭିଭାଷଣ ଆମ୍ଭମାନଙ୍କଠାରେ ଯେତେ ଆଦରଣୀୟ ବୋଲି ଗୃହୀତ ହେଉଥିଲେ ମଧ୍ୟ ପ୍ରକୃତରେ ତାହାର କୌଣସି ସମସାମୟିକ ପ୍ରମାଣ ନାହିଁ ।

**ଅନଙ୍ଗଭୀମଦେବଙ୍କର ବିରୁଦାବଳିର ଐତିହାସିକ ବିଗ୍ଚର :**

'ପ୍ରାଚୀସମିତି' ପ୍ରକାଶିତ ମାଦଳାପାଞ୍ଜିର ୨୬ ପୃଷ୍ଠାରେ ଅନଙ୍ଗଭୀମ ଦେବଙ୍କର ବିରୁଦାବଳିର 'ମୁଦଳ' ଲିଖିତ ଅଛି --

"ରାଜା x x x ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦରଶନ କରି ଛାମୁରେ ଶାଢ଼ି ପ୍ରସାଦଲାଗି ହୋଇ ଶ୍ରୀନଗରେ ବିଜେ କରି ମୁଦଲ କରାଇଲେ । ଏ ମୁଦଲରଭାଷା ଶ୍ରୀବୀର ଶ୍ରୀଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲବରଗେଶ୍ୱର ଅଭିରାଏ ଭୂତଭୈରବ ଦୁଃସହ ଦୁଶାସନ ଅନିକରଣେ ରାଉତରାୟ ଅତୁଳବଳ ପରାକ୍ରମ ସଂଗ୍ରାମ ସହସ୍ରବାହୁ ଧୂମକେତୁ ଶ୍ରୀ ଅନଙ୍ଗଭୀମଦେବ" ଇତ୍ୟାଦି ।

ଏହାପୂର୍ବରୁ ଗ୍ଚୋଡ଼ଗଙ୍ଗଙ୍କ ବିରୁଦାବଳି ମନମୋହନ ଚକ୍ରବର୍ତ୍ତୀ ୧୯୦୩ର ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ ପତ୍ରିକାର ୧୧୦ ପୃଷ୍ଠାରେ ନିମ୍ନୋକ୍ତ ଭାବରେ ଲେଖିଥିଲେ --

"ସମର ମୁଖାନେକ ରିପୁଦର୍ପ ମର୍ଦ୍ଦନ ଭୁଜବଳ ପରାକ୍ରମ ପରମ ମାହେଶ୍ୱର ପରମଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ନବନବତି ସହସ୍ରକୁଞ୍ଜରାଧିଶ୍ୱର ତ୍ରିକଳିଙ୍ଗାଧିପତି ଗଙ୍ଗାନ୍ୱୟାବଳମ୍ବନସ୍ତମ୍ଭ ।"

ଏହି ବିରୁଦାବଳିଠାରୁ ଅନଙ୍ଗଭୀମଦେବଙ୍କର ବିରୁଦାବଳି ସ୍ୱତନ୍ତ୍ର ।

ବର୍ତ୍ତମାନ ଦେଖାଯାଉ ମାଦଳାପାଞ୍ଜିରେ ଥିବା ବିରୁଦାବଳି "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବରଗେଶ୍ୱର" ପଦବୀଗୁଡ଼ିକର ବ୍ୟବହାର କେଉଁଠାରେ ମିଳେ । ଅନଙ୍ଗଭୀମ ଦେବଙ୍କ ପୂର୍ବର ରାଜାମାନଙ୍କଠାରେ ଏ ବିରୁଦ ମିଳେନାହିଁ । ତାଙ୍କର ପରବର୍ତ୍ତୀ କେଉଁ ରାଜାମାନଙ୍କ ଦ୍ୱାରା ଏହି ବିରୁଦଗୁଡ଼ିକ ବ୍ୟବହୃତ ହୋଇଥିଲା, ତାହାର ପ୍ରମାଣସ୍ୱରୂପ ଏପିଗ୍ରାଫିଆ ଇଣ୍ଡିକା ଗ୍ରନ୍ଥମାଳାର ଭା. ୩୩ ପୃ. ୪ରେ ଡକ୍ଟର ଦୀନେଶ ଚନ୍ଦ୍ର ସରକାରଙ୍କ ଲେଖାର ଓଡ଼ିଆ ଅନୁବାଦ ତଳେ ଉଦ୍ଧୃତ ହେଲା ।

'ଗଜପତି ପଦବୀଟି ଗଙ୍ଗବଂଶୀୟ ଶେଷ ରାଜାମାନଙ୍କ ରାଜତ୍ୱକାଳରେ ଜନପ୍ରିୟ ଭାନୁ ୧ମ ଦ୍ରକ୍ଷାରାମ ଲିପିରେ ଗଜପତି ବା ମନହଟାପତି ବର୍ଣ୍ଣିତ ଅଛି । (S.I.I. Vol. IV. p.361no. 1084) ଏହାର ସମୟ ଶକ ୧୧୯୬—ଖ୍ରୀ: ୧୨୭୪ । ନରସିଂହଦେବ ୩ୟ ସାମାଚଳର ଶକ ୩୦୫ = ୫ ଖ୍ରୀ: ୧୩୮୩ ଲିପିରେ ଗଜପତି ପେଦୀ ନରସିଂହ ଲେଖିଅଛନ୍ତି । Ibid Vol. VI ନରସିଂହ ୪ର୍ଥ ସାମାଚଳର କେତେକ ଲିପିରେ ଗଜପତି ବୋଲି ବର୍ଣ୍ଣିତ ଅଛନ୍ତି (Ibid p. 277 no 731) । ସେହିପରି ଭାନୁଦେବ ୪ର୍ଥ ସାମାଚଳର ଶକ ୧୩୩୭ = ଖ୍ରୀ: ୧୪୧୪ ଓ ଶକ ୧୩୩୯ = ୧୪୧୭ ଲିପିରେ ଗଜପତି ବା ଗଜନିବହ ପତି ଆଖ୍ୟାରେ ଭୂଷିତ ହୋଇଅଛନ୍ତି (Ibid pp. 447-48 etc.) ।

ସୂର୍ଯ୍ୟବଂଶୀୟ ମହାରାଜା କପିଳେନ୍ଦ୍ର ଦେବ ତାଙ୍କର ଲିପିଗୁଡ଼ିକରେ 'ଗଜପତି' ବିରୁଦ ସହ "ଗୌଡେଶ୍ୱର, ନବକୋଟି କର୍ଣ୍ଣାଟ କଳବରଗେଶ୍ୱର ବିରୁଦଗୁଡ଼ିକ ମଧ୍ୟ ପ୍ରଥମ ବ୍ୟବହାର କରିଥିଲେ ଖ୍ରୀ: ୧୪୩୫-୧୪୪୭ ମଧ୍ୟରେ ।

ଅନଙ୍ଗଭୀମ ଦେବଙ୍କ ବିରୁଦାବଳିରେ ବିରୁଦଗୁଡ଼ିକ କିପରି ଭାବରେ ସ୍ଥାନ ପାଇଲା, ତାହା ବୁଝିବା କଷ୍ଟକର; କିନ୍ତୁ ଆମ୍ଭେମାନେ ଯଦି କଳ୍ପନା କରୁଁ ଯେ କପିଳେନ୍ଦ୍ର ଦେବଙ୍କ ପରେ ମାଦଳପାଞ୍ଜି ଲିଖିତ ହୋଇଥାଏ, ତେବେ ଅନଙ୍ଗଭୀଦେବଙ୍କ ପକ୍ଷରେ ଲେଖକକାର ଐତିହାସିକ ଘଟଣାବଳୀ କ୍ରମର ବ୍ୟତିକ୍ରମ କରି ଲେଖିଅଛନ୍ତି । ମାଦଳାପାଞ୍ଜି ଲେଖନକାଳ ପରବର୍ତ୍ତୀ ସମୟରେ ହୋଇଥିବାର ଏହା ମଧ୍ୟ ଗୋଟିଏ ଅନ୍ୟ ପ୍ରମାଣ ।

ମାଦଳାପାଞ୍ଜିର ଐତିହାସିକ ଓ ସାହିତ୍ୟିକ ମୂଲ୍ୟ ନିର୍ଦ୍ଧାରଣ କରିବାକୁ ହେଲେ ଆହୁରି ଅନେକ କଥାର ଆଲୋଚନା ଆବଶ୍ୟକ । ଭବିଷ୍ୟତର ଐତିହାସିକମାନଙ୍କ ପାଇଁ

ମୋର ଏହି ମତ କେତେକ ପରିମାଣରେ ନିର୍ଦ୍ଦେଶକ ହେବ ବୋଲି ଆଶାକରେଁ । କେହି ଜଣେ ଉତ୍ସାହୀ ଐତିହାସିକ ଦେଉଳକରଣ ଓ ତଡ଼ଉକରଣ ଘରେ ଥିବା ତାବତୀୟ ଉପାଦାନ ସଂଗ୍ରହ କରିପାରିଲେ ଓଡ଼ିଶା ଇତିହାସର ଅନେକ ନୂତନ ଉପାଦାନ ମିଳିବ ।

ରମାପ୍ରସାଦ ଚନ୍ଦ ମାଦଳାପାଞ୍ଜିର ପାଣ୍ଡୁଲିପିର ଯେଉଁ ନକଲ କରିଥିଲେ, ତାହା ନଷ୍ଟ ହୋଇଯାଇଛି । ସେଥିରୁ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି କେବଳ ୩ଟି ପାଣ୍ଡୁଲିପିର ନକଲ ମୁଦ୍ରିତ କରିଅଛନ୍ତି । ଅନ୍ୟଗୁଡ଼ିକର ମୁଦ୍ରଣ ନିତାନ୍ତ ଆବଶ୍ୟକ ।

ପ୍ରାଚୀସମିତି ପ୍ରକାଶିତ ମାଦଳାପାଞ୍ଜିର ପୃ. ୨୦ରେ ମୁଦ୍ରିତ ୧ମ ପାଞ୍ଜି ମତେ ବସୁକଳ୍ପ କେଶରୀଙ୍କ ରାଣୀଙ୍କ ନାମ 'ତୁଳାବତୀ' ମୁଦ୍ରିତ ଅଛି; ମାତ୍ର ମୁଁ ନିଜେ ଦେଉଳକରଣଙ୍କ ଘର ପାଞ୍ଜିବିଡ଼ାରେ 'କୋଳାବତୀ' ନାମ ପଢ଼ିଥିଲି । କୋଳାବତୀ ହେଉଛନ୍ତି ସୋମବଂଶୀ ରାଜା ଉଦ୍ୟୋତକେଶରୀଙ୍କ ରାଣୀ । ଭୁବନେଶ୍ୱରର ବ୍ରହ୍ମେଶ୍ୱର ଶିଳାଲିପି କୋଳାବତୀଙ୍କ ଦ୍ୱାରା ଖୋଦିତ ହୋଇଥିଲା । ଏହି ଲିପିର ପ୍ରମାଣ ଅନୁସାରେ କୋଳାବତୀଙ୍କ ସ୍ୱାମୀ ବସୁକଳ୍ପ କେଶରୀଙ୍କ ପ୍ରକୃତ ନାମ ଉଦ୍ୟୋତକେଶରୀ । ନକଲକାରୀର ଭ୍ରମରେ ଇତିହାସରେ କିପରି ଭ୍ରମ ଜନ୍ମେ, ଏହା ତାହାର ଏକ ବିଶିଷ୍ଟ ଉଦାହରଣ ।



ଝଙ୍କାର, ୨୧/୧୨

# ଆକାଶର ଜ୍ୟୋତିଷ୍କବର୍ଗ

ପୃଥିବୀପୃଷ୍ଠର ମନୁଷ୍ୟମାନେ ଆବହମାନ କାଳରୁ ଆକାଶର ଜ୍ୟୋତିଷ୍କବର୍ଗ ପ୍ରତି ଆକୃଷ୍ଟ ହୋଇ କ୍ରମଶଃ ତତ୍‌ସଂପର୍କରେ ନୂତନ ନୂତନ ତଥ୍ୟ ଆବିଷ୍କାର କରୁଅଛନ୍ତି । ସୂର୍ଯ୍ୟୋଦୟ ଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମୟ ମଧ୍ୟରେ ଆକାଶରେ ଏକମାତ୍ର ଜ୍ୟୋତିଷ୍କ ସୂର୍ଯ୍ୟ ବିଦ୍ୟମାନ ଥିବାର ଦେଖାଯାଏ ଓ ଆକାଶକୁ ଚାହିଁଲେ ଆମ୍ଭେମାନେ କେବଳ ନୀଳବର୍ଣ୍ଣ ଆକାଶ ଦେଖୁଁ; କିନ୍ତୁ ସୂର୍ଯ୍ୟାସ୍ତ ପରେ ସେହି ଆକାଶର ରୂପ ଏକାବେଳକେ ବଦଳିଯାଏ ଓ ଆମ୍ଭେମାନେ ଅଗଣିତ ଜ୍ୟୋତିଷ୍କ ଆକାଶରେ ବିଦ୍ୟମାନ ଥିବାର ଦେଖୁଁ । ଏଗୁଡ଼ିକର ସଂଖ୍ୟା ଅକଳନ ଓ ଏଗୁଡ଼ିକର ଦୂରତ୍ୱ ପୃଥିବୀଠାରୁ କେତେଦୂର ବ୍ୟାପୀ, ତାହା ଅଙ୍କରେ ଲେଖିହେବ ନାହିଁ କହିଲେ ଚଳେ । ସେଥିପାଇଁ ସେ ଜ୍ୟୋତିଷ୍କଗୁଡ଼ିକ ଆମ୍ଭମାନଙ୍କର ଆଖିରେ ଏତେ କ୍ଷୁଦ୍ର ବିଜୁଳି ପୋକ ସଦୃଶ ଦେଖାଯାଆନ୍ତି ।

**ନାକ୍ଷତ୍ରିକ ଜଗତ :**

ପ୍ରକାଣ୍ଡ ଆକାଶ ମାର୍ଗରେ ଦେଖାଯାଉଥିବା ଜ୍ୟୋତିଷ୍କମଣ୍ଡଳୀ ମଧ୍ୟରୁ ଆମ୍ଭମାନଙ୍କର ପାଞ୍ଜିରେ ବ୍ୟବହୃତ ୨୭ଟି ନକ୍ଷତ୍ରପୁଞ୍ଜ, ୧୨ଟି ରାଶି ଓ ପୃଥିବୀବ୍ୟତୀତ ୯ଟି ଗ୍ରହ ଛଡ଼ା ଆହୁରି ଅନେକ ତାରାପୁଞ୍ଜ ମଧ୍ୟ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ । ସେଗୁଡ଼ିକ ମଧ୍ୟରୁ କେବଳ ଧ୍ରୁବତାରାଟି ଅଚଳ ଅବସ୍ଥାରେ ଓ ଅନ୍ୟଗୁଡ଼ିକ ଚକ୍ରବାଳଠାରେ ପୂର୍ବଦିଗରେ ଉଦୟ ହୋଇ ପୁଣି ଚକ୍ରବାଳରେ ପଶ୍ଚିମଦିଗରେ ଅସ୍ତ ହୋଇଯାଆନ୍ତି । ଧ୍ରୁବତାରା ସହିତ ସପ୍ତର୍ଷିମଣ୍ଡଳ ଓ ଶିଶୁମାର ମଣ୍ଡଳର (Ursa Major ଓ Ursa Minor) ଘନିଷ୍ଠ ସଂପର୍କ ଅଛି । ଶିଶୁମାର ମଣ୍ଡଳର ୭ଟି ତାରାର ପୁଚ୍ଛ ହେଉଛି ଧ୍ରୁବତାରା । ସପ୍ତର୍ଷିମଣ୍ଡଳର ସମ୍ମୁଖସ୍ଥ ଦୁଇ ତାରାଠାରୁ ଏକ ସରଳରେଖା ଟାଣିଲେ ତାହା ଠିକ୍ ଧ୍ରୁବତାରା ଉପରେ ପଡ଼ିଥାଏ । ଏଣୁ ଆକାଶମାର୍ଗରେ ଏହି ଦୁଇଟି ତାରାପୁଞ୍ଜ ଋତୁଭେଦରେ ଉତ୍ତରଦିଗରେ ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୁଅନ୍ତି । ଏଗୁଡ଼ିକର ସ୍ଥାନ ଅପରିବର୍ତ୍ତନୀୟ ହୋଇଥିବାରୁ ଅନ୍ଧକାର ରାତ୍ରିରେ ଦିଗନିର୍ଣ୍ଣୟ କରିବାରେ ସ୍ଥଳପଥର ପଥଗ୍ରାମୀ ବା ଜଳପଥର ନାବିକମାନଙ୍କ ପାଖରେ ସୁପରିଚିତ । ଏହାଛଡ଼ା ଉତ୍ତର ଗୋଲାର୍ଦ୍ଧରେ କାଶ୍ୟପ (cassiopeia),

ଏଣ୍ଡ୍ରିରୋମିଡ଼ା ପ୍ରଭୃତି କେତୋଟି ତାରାପୁଞ୍ଜ ଓ ଦକ୍ଷିଣ ଗୋଲାର୍ଦ୍ଧରେ ଅଗସ୍ତ୍ୟ ଓ କାଳପୁରୁଷ ପ୍ରଭୃତି କେତୋଟି ତାରାପୁଞ୍ଜ ଅଛି ।

ଆକାଶମାର୍ଗରେ ସୂର୍ଯ୍ୟ ଓ ଗ୍ରହଗଣର ଗତିପଥ ବା କ୍ରାନ୍ତିବୃତ୍ତର ଉତ୍ତର ଦକ୍ଷିଣ ପାର୍ଶ୍ୱରେ ୨୭ଟି ନକ୍ଷତ୍ରପୁଞ୍ଜ ମଧ୍ୟରେ ୧୨ଟି ରାଶି ନାମକ ନକ୍ଷତ୍ରପୁଞ୍ଜ ଆମେ ନିର୍ମଳ ଆକାଶରେ ଦେଖୁଁ । ୧୨ଟି ଯାକ ରାଶିର ନାମ ଯଥା - ୧. ମୀନ, ୨. ମେଷ, ୩. ବୃଷ, ୪. ମିଥୁନ, ୫. କର୍କଟ, ୬. ସିଂହ, ୭. କନ୍ୟା, ୮. ତୁଳା, ୯. ବିଛା, ୧୦. ଧନୁ, ୧୧. ମକର ଓ ୧୨ କୁମ୍ଭ । ଏହି ୧୨ଟି ରାଶିର ନାମ ଜୀବଜନ୍ତୁଙ୍କ ନାମକରଣ ଅନୁସାରେ ଗ୍ରୀକ୍ ଜ୍ୟୋତିର୍ବିଦମାନେ କଳ୍ପନାକରି ପ୍ରତ୍ୟେକର ଆକାର ଓ ରୂପ ଅଙ୍କନ କରିଥିଲେ ।

୨୭ଟି ଯାକ ନକ୍ଷତ୍ର ଏହି ୧୨ଟି ରାଶିଚକ୍ର ମଧ୍ୟରେ ଅବସ୍ଥିତ । ସୌର-ଜଗତରେ ପୃଥିବୀର ଉପଗ୍ରହ ଚନ୍ଦ୍ର ନିଜର ଗତିପଥରେ ଯେଉଁ ରାଶିରେ ପ୍ରବେଶ କରି ଅବସ୍ଥାନ କରେ, ସେହି ରାଶି ଅନୁସାରେ ଚନ୍ଦ୍ରର ନାମକରଣ ହୁଏ । ଯଥା— ମୀନ ରାଶିର ଦ୍ରାଘିମା ଉପରେ ଚନ୍ଦ୍ରର ଅବସ୍ଥାନ ହେଲେ ତାହାକୁ ମୀନଚନ୍ଦ୍ର କୁହାଯାଏ । ୨୭ଟି ନକ୍ଷତ୍ରର କ୍ଷେତ୍ର ଉପରେ ଚନ୍ଦ୍ରର ଗତିପଥ ପଡ଼ିଲେ ରାଶିର ନାମ ଅନୁସାରେ ଓ ନକ୍ଷତ୍ର ଅନୁସାରେ ଚନ୍ଦ୍ରର ନାମକରଣ ହୁଏ -- ଯଥା, ଉତ୍ତର ଭାଦ୍ରପଦ ନକ୍ଷତ୍ରଯୁକ୍ତ ମୀନଚନ୍ଦ୍ର ବା ରେବତୀ ନକ୍ଷତ୍ରଯୁକ୍ତ ମୀନଚନ୍ଦ୍ର । ନକ୍ଷତ୍ରର ଦୂରତା ଅନୁସାରେ ଚନ୍ଦ୍ର ବେଳେ ବେଳେ ଦୁଇଟି ନକ୍ଷତ୍ର ଭୋଗ କରି ୩ୟ ନକ୍ଷତ୍ରର ଅଂଶ ଭୋଗ କରେ ଓ ତଦନୁସାରେ ଚନ୍ଦ୍ରର ଅବସ୍ଥାନର ନାମକରଣ ହୁଏ । ଚନ୍ଦ୍ରର ଅବସ୍ଥାନ ଏବଂ ନକ୍ଷତ୍ର ଓ ରାଶିର ଅବସ୍ଥାନ ମଧ୍ୟରେ ବହୁ ଲକ୍ଷ ମାଇଲ ଦୂରତ୍ୱ ଥିଲେ ମଧ୍ୟ ଏକ କାଳ୍ପନିକ ଦ୍ରାଘିମା ଉପରେ ଚନ୍ଦ୍ର ରାଶି ଓ ନକ୍ଷତ୍ର ଅବସ୍ଥିତ ଥିଲେ ତଦନୁସାରେ ରାଶି ଓ ନକ୍ଷତ୍ରଯୁକ୍ତ ଚନ୍ଦ୍ରର ଅବସ୍ଥାନର ନାମକରଣ ହୁଏ ।

ଚଳିତ ବର୍ଷ ତଳେ ପ୍ରଦତ୍ତ ଟେବୁଲ୍‌ରୁ ଚନ୍ଦ୍ର ସହିତ ରାଶି ଓ ନକ୍ଷତ୍ରର ଅବସ୍ଥାନ ବେଶ୍ ବୁଝାଯିବ ।

| *ତାରିଖରେ ଚନ୍ଦ୍ର* | *ରାଶିରେ ପ୍ରବେଶ କରି* | *ନକ୍ଷତ୍ରରେ* | *ପ୍ରବେଶ କରିଥିଲା* |
|---|---|---|---|
| ତା ୧୬ ଏପ୍ରିଲ୍ ମେଷ ସଂ | ୫/୫୨ | ଅଶ୍ୱିନୀ | ସଂ ୫/୫୨ |
| ତା ୧୭ ଏପ୍ରିଲ ମେଷ ସଂ | ଅହୋରାତ୍ର | ଅଶ୍ୱିନୀ | ସଂ ୭/୨ |
| ତା ୧୮ ଏପ୍ରିଲ୍ ମେଷ ସଂ | ରାତ୍ର ୩/୭ | ଦ୍ୱିଜା | ସଂ ୮/୩୯ |

| | | | |
|---|---|---|---|
| ତା ୧୯ ଏପ୍ରିଲ୍ ବୃଷ ଙ୍ | ଅହୋରାତ୍ର | କୃତିକା | ରା ୧୦/୪୩ |
| ତା ୨୦ ଏପ୍ରିଲ୍ ବୃଷ ଙ୍ | ଅହୋରାତ୍ର . | ରୋହିଣୀ | ୧/୧୧ |
| ତା ୨୧ ଏପ୍ରିଲ୍ ବୃଷ ଙ୍ | ୨/୩୩ | ମୃଗଶିରା | ୩/୫୮ |
| ତା ୨୨ ଏପ୍ରିଲ୍ ମିଥୁନ | ଅହୋରାତ୍ର | ଆର୍ଦ୍ରା | ଅହୋରାତ୍ର |
| ତା ୨୩ ଏପ୍ରିଲ ମିଥୁନ | ୩/୭ | ଆର୍ଦ୍ରା | ୭/୫୫ |
| ତା ୨୪ ଏପ୍ରିଲ୍ କର୍କଟ | ଅହୋରାତ୍ର | ପୂନର୍ବସୁ | ୯/୫୦ |
| ତା ୨୫ ଏପ୍ରିଲ୍ କର୍କଟ | ଅହୋରାତ୍ର | ପୁଷ୍ୟା | ୧୨/୩୧ |
| ତା ୨୬ ଏପ୍ରିଲ୍ କର୍କଟ | ୨/୪୪ | ଅଶ୍ଳେଷା | ୨/୪୪ |
| ତା ୨୭ ଏପ୍ରିଲ୍ ସିଂହ | ଅହୋରାତ୍ର | ମଘା | ୪/୨୧ |
| ତା ୨୮ ଏପ୍ରିଲ୍ ସିଂହ | ୧/୨୦ | ପୂର୍ବ.ଫାଲଗୁନୀ | ୫/୧୪ |
| ତା ୨୯ ଏପ୍ରିଲ୍ କନ୍ୟା | ଅହୋରାତ୍ର | ଉତ୍ତରାଫାଲଗୁନୀ | ୫/୨୧ |
| ତା ୩୦ ଏପ୍ରିଲ୍ କନ୍ୟା | ୪/୧୧ | ହସ୍ତା | ୪/୪୫ |
| ତା ୧ ମେ ତୁଳ | ଅହୋରାତ୍ର | ଚିତ୍ରା | ୩/୨୯ |
| ତା ୨ ମେ ତୁଳ | ଅହୋରାତ୍ର | ସ୍ୱାତୀ | ୧/୪୨ |
| ତା ୩ ମେ ତୁଳ | ୬/୪୭ | ବିଶାଖା | ୧୧/୩୩ |
| ତା ୪ ମେ ବିଛା | ଅହୋରାତ୍ର | ଅନୁରାଧା | ୯/୧୧ |
| ତା ୫ ମେ ବିଛା | ୬/୪୬ | ଜ୍ୟେଷ୍ଠା | ୭/୪୬ ଗତେ |
| | | ମୂଳା | ୪/୨୮ |
| ତା ୬ ମେ ଚନ୍ଦ୍ର ଧନୁ | ଅହୋରାତ୍ର | ପୂର୍ବାଷାଢ଼ା | ୨/୨୫ |
| ତା ୭ ମେ ଚନ୍ଦ୍ର ଧନୁ | ୭/୫୮ | ଉତ୍ତରାଷାଢ଼ା | ରା ୧୨/୪୪ |
| ତା ୮ ମେ ଚନ୍ଦ୍ର ମକର | ଅହୋରାତ୍ର | ଶ୍ରବଣା | ରା ୧୧/୩୦ |
| ତା ୯ ମେ ଚନ୍ଦ୍ର ମକର | ୧୧/୩ | ଧନିଷ୍ଠା | ରା ୧୦/୫୪ |
| ତା ୧୦ ମେ ଚନ୍ଦ୍ର କୁମ୍ଭ | ଅହୋରାତ୍ର | ଶତଭିଷା | ରା ୧୦/୨୮ |
| ତା ୧୧ ମେ ଚନ୍ଦ୍ର କୁମ୍ଭ | ୪/୩୬ | ପୂର୍ବଭାଦ୍ରପଦ | ରା ୧୦/୪୫ |
| ତା ୧୨ ମେ ଚନ୍ଦ୍ର ମୀନ | ଅହୋରାତ୍ର | ଉତ୍ତରଭାଦ୍ରପଦ | ତା ୧୧/୨୨ |
| ତା ୧୩ ମେ ଚନ୍ଦ୍ର ମୀନ | ରାତ୍ର ୧୧/୨୭ | ରେବତୀ | ରା ୧୨/୨୯ |

ଚନ୍ଦ୍ର ଏକ ରାଶିରେ ପ୍ରବେଶ କରି ପୁଣି ସେହି ରାଶିକୁ ଫେରିବାକୁ ୨୯ ଦିନ ସମୟ ଲାଗେ । ଏହିପରି ଚନ୍ଦ୍ରର ଗତି ଅନୁସାରେ ରାଶିର ଚକ୍ର ଓ ନକ୍ଷତ୍ରର ନାମକରଣ ହୋଇଥାଏ ।

ବେଦିକ୍ ଇଣ୍ଡେକ୍ସ (Vedic Index) ପୁସ୍ତକରେ ଦ୍ୱାଦଶ ରାଶିର ନାମ ନାହିଁ; କିନ୍ତୁ ୨୭ଟି ନକ୍ଷତ୍ରର ନାମ ଅଛି । ଏଣୁ ମନେହୁଏ ଯେ ସେ ସମୟରେ ମାସର ନାମ ମେଷବୃଷାଦି ନଥିଲା । ମାସର ନାମ ଥିଲା ନକ୍ଷତ୍ର ଅନୁସାରେ ଯଥା -- ବୈଶାଖ ଜ୍ୟେଷ୍ଠାଦି । ଦ୍ୱାଦଶ ରାଶିଚକ୍ରର ନାମ ଓ ରାଶିଚକ୍ର ବେଦ ବ୍ୟତୀତ ପରବର୍ତ୍ତୀ ସମୟରେ ଜ୍ୟୋତିଷ ଶାସ୍ତ୍ରରେ ସ୍ଥାନ ପାଇନଥିଲା । ଗ୍ରୀକ୍‌ମାନେ ଯେଉଁସବୁ ଜୀବଜନ୍ତୁର ନାମ ଅନୁସାରେ ଆକାଶରେ ନକ୍ଷତ୍ରପୁଞ୍ଜର ଚିତ୍ର କଳ୍ପନା କରିଥିଲେ, ତଦନୁସାରେ Zodiac ବା ରାଶିଚକ୍ରର ନକ୍ଷତ୍ରଗୁଡ଼ିକର ନାମକରଣ ହୋଇଥିଲା । ଭାରତବର୍ଷ ରାଶିଚକ୍ରକୁ ପାଶ୍ଚାତ୍ୟ ସଭ୍ୟତାରୁ ଗ୍ରହଣ କରିଥିଲା ବୋଲି Report of the Calender Reforms Committee ରେ ଲିଖିତ ହୋଇଛି । ଏହି ରିପୋର୍ଟ ଭାରତ ସରକାର ୧୯୫୫ରେ ଗ୍ରହଣ କରି ମୁଦ୍ରିତ କରିଥିଲେ ।

ରାଶିଚକ୍ରର ଦ୍ୱାଦଶଟି ନକ୍ଷତ୍ରପୁଞ୍ଜର ଦୂରତା ସୌରଜଗତର ପୃଥିବୀଠାରୁ କେତେଦୂରରେ ଅବସ୍ଥିତ, ତାହା ଅଙ୍କରେ ଲେଖିଲେ ବହୁସଂଖ୍ୟକ ହୁଏ । ରାଶିଚକ୍ର ଅନ୍ତର୍ଭୁକ୍ତ ବୃଷରାଶିର ଦୁଇଟି ତାରାପୁଞ୍ଜ ଯଥା -- ହାଏଡସ୍ (Hyades) ଓ ପ୍ଲିଏଡିସ୍ (Pleiades) ଛାୟାପଥ ମଧ୍ୟର ଅବସ୍ଥିତ ଅଛି । କେବଳ ହାଏଡିସ ତାରାପୁଞ୍ଜର ଦୂରତା ପୃଥିବୀଠାରୁ ୧୩୦ ଆଲୋକବର୍ଷ । ଆଲୋକର ଗତି ପ୍ରତିସେକେଣ୍ଡରେ ୧୮୬.୦୦୦ ମାଇଲ । ତେଣୁ ବର୍ଷକୁ ଆଲୋକବର୍ଷର ଦୂରତ୍ୱ ୧୮୬,୦୦୦ x ୩୬୫ x ୨୪ x ୬୦ x ୬୦ ମାଇଲ । ଅତଏବ୍ ୧୩୦ ଆଲୋକ ବର୍ଷର ଦୂରତ୍ୱ ଉପରଲିଖିତ ସଂଖ୍ୟାର ୧୩୦ ଗୁଣ । ପୃଥିବୀରୁ ପରିଦୃଷ୍ଟ ସୂର୍ଯ୍ୟ ଓ ଚନ୍ଦ୍ର ରାଶିଚକ୍ର ବୃଷରାଶିରେ ପ୍ରବେଶ କଲାବେଳେ ସୌର ଜଗତର ଏହି ଦୁଇଟି ଗ୍ରହଠାରୁ କେତେଦୂରରେ ଅବସ୍ଥିତ, ପାଠକେ ତାହା କଳ୍ପନା କରିପାରିବେ । ରାଶିଚକ୍ରର ଉର୍ଦ୍ଧ୍ୱରେ ଛାୟାପଥ ଓ ତଦୁର୍ଦ୍ଧ୍ୱରେ ଜ୍ୟୋତିଷ୍କବର୍ଗ ଅଛି, ଯହିଁରେ ଆମ୍ଭମାନଙ୍କର ସୂର୍ଯ୍ୟ କେବଳ ଗୋଟିଏ ମାତ୍ର ତାରାବିଶେଷ । ଏଥିରୁ କଳ୍ପନା କରାଯାଇପାରିବ ଏ ବିଶ୍ୱବ୍ରହ୍ମାଣ୍ଡ ଜଗତ କି ବିଶାଳ !

**ସୌରଜଗତ :**

(କ) ସୂର୍ଯ୍ୟ : ପୃଥିବୀପୃଷ୍ଠରୁ ସକାଳେ ଓ ସନ୍ଧ୍ୟାବେଳେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସମୟରେ ସୂର୍ଯ୍ୟ ଏକ ସୁନାପେଣ୍ଡୁଳା ସଦୃଶ ଗୋଲାକାର ବସ୍ତୁସ୍ୱରୂପ ଦେଖାଯାଏ; କିନ୍ତୁ ତାହା ସୂର୍ଯ୍ୟୋଦୟର କିଛିକ୍ଷଣ ପରେ ଏକ ଜ୍ୱଳନ୍ତ ଗୋଲାକାର ସଦୃଶ ଦେଖାଯାଏ, ଯାହାକୁ ଖାଲି ଆଖିରେ ଅନାଇ ହୁଏନାହିଁ । ଏହି ସୂର୍ଯ୍ୟ କିରଣର ତେଜ ଅଳ୍ପରୁ ଅଧିକ ହୁଏ ବର୍ଷ ମଧ୍ୟରେ ବିଭିନ୍ନ ଋତୁରେ ।

ସୂର୍ଯ୍ୟ ସମ୍ପର୍କରେ ପ୍ରାଚୀନ ଓ ଆଧୁନିକ ଜ୍ୟୋତିଷୀ ବୈଜ୍ଞାନିକମାନେ ବହୁ ଆଲୋଚନା କରିଅଛନ୍ତି । ପ୍ରାଚୀନ ଜ୍ୟୋତିଷୀମାନେ ସୂର୍ଯ୍ୟର ଗତି ଇତ୍ୟାଦି ଅନେକ କଥା ସ୍ଥିର କରିଥିଲେ । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ କୋପାରନିକସ (୧୪୭୩-୧୫୪୩) ପ୍ରଥମ ଗଣନା ଦ୍ୱାରା ସ୍ଥିର କଲେ ଯେ ସୂର୍ଯ୍ୟ ସୌର ଜଗତର କେନ୍ଦ୍ରରେ ଅବସ୍ଥିତ -- ପୃଥିବୀ ନୁହେଁ । ତଦନୁସାରେ ସୂର୍ଯ୍ୟର ଗ୍ରହଗୁଡ଼ିକର ଗତି ପ୍ରଭୃତି ସ୍ଥିର କଲେ । ୟୁରୋପରେ ସୌରଜଗତ ଉପରେ ବୈଜ୍ଞାନିକ ପ୍ରଣାଳୀରେ ନାନାବିଧ ଆଲୋଚନା ଚାଲିଲା । କିନ୍ତୁ ଭାରତରେ ପ୍ରାଚୀନ ଗଣନାରୀତି ଗ୍ରୁଲୁ ରହିଲା । ଏପରିକି ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ପ୍ରସିଦ୍ଧ ଜ୍ୟୋତିଷୀ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତ ପୃଥିବୀକୁ ସୌର ଜଗତର କେନ୍ଦ୍ର ସ୍ଥିର କରି ଗଣନା କରିଥିଲେ । 'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥରେ ତାଙ୍କର ଅଭିମତ ସେ ସ୍ପଷ୍ଟ ଭାବରେ ଲେଖିଯାଇଅଛନ୍ତି ।

ଜ୍ୟୋତିଷୀମାନେ ସ୍ଥିର କରିଅଛନ୍ତି ଯେ ସୂର୍ଯ୍ୟର ବ୍ୟାସ ୮୬୪,୦୦୦ ମାଇଲ ଯାହାକି ପୃଥିବୀର ବ୍ୟାସର ପ୍ରାୟ ୧୦୦ ଗୁଣ । ଆଲୋକର ଗତି ପ୍ରତି ସେକେଣ୍ଡରେ ୧୮୬,୦୦୦ ମାଇଲ ଧରାଯାଇଥିବାରୁ ସୂର୍ଯ୍ୟର ଆଲୋକ ଗତି କରି ପୃଥିବୀରେ ୮ ମିନିଟରେ ପହୁଞ୍ଚେ । ସୂର୍ଯ୍ୟ ଯେଉଁ ଆଲୋକ ବିକିରଣ କରେ, ତାହା ଅତି ତେଜୀୟାନ୍, ମାତ୍ର ପୃଥିବୀର ଚତୁର୍ଦ୍ଦିଗରେ ବାୟୁମଣ୍ଡଳ ପୃଥିବୀପୃଷ୍ଠକୁ ମୋଟା କମ୍ବଳ ସଦୃଶ ଢାଙ୍କି ରଖିଥିବାରୁ ସେ କିରଣର ଉତ୍ତାପ ପୃଥିବୀପୃଷ୍ଠରେ ପହୁଞ୍ଚିଲା ବେଳକୁ ଅନେକ ପରିମାଣରେ ଶୀତଳ ହୋଇଯାଇଥାଏ ।

ଜ୍ୟୋତିଷୀ ବୈଜ୍ଞାନିକମାନେ ସୂର୍ଯ୍ୟ ଉପରେ ବହୁତ କଥା ଆଲୋଚନା କରିଅଛନ୍ତି; ମାତ୍ର ସେ ସବୁ ବିଷୟ ଏ ପ୍ରବନ୍ଧରେ ଆଲୋଚିତ ହେଲାନାହିଁ ।

(ଖ) ଗ୍ରହ, ଉପଗ୍ରହ ଓ ଗ୍ରହାଣୁପୁଞ୍ଜ : ବୈଦିକ ଯୁଗରେ ସୂର୍ଯ୍ୟ ଓ ନକ୍ଷତ୍ର ବ୍ୟତୀତ ପୃଥିବୀ ଓ ଚନ୍ଦ୍ରର ଉଲ୍ଲେଖ ଦେଖାଯାଏ । ସେ ସମୟରେ 'ଗ୍ରହ' ଶବ୍ଦର ବ୍ୟବହାର

ଥିବାର ଜଣାଯାଏନାହିଁ । ଏଣୁ ସାପ୍ତାହିକ 'ବାର' ବ୍ୟବହାର ନଥିଲା । ଚାନ୍ଦ୍ର ଓ ନାକ୍ଷତ୍ରିକ ମତରେ ମାସର ଗଣନା ତିଥି ଅନୁସାରେ ଚଳୁଥିଲା । ପୃଥିବୀକୁ ଗୋଟିଏ ଗ୍ରହ ବୋଲି ଧରାଯାଉ ନଥିଲା । ତଦ୍ରୂପ ଚନ୍ଦ୍ର ମଧ୍ୟ । ବିଶ୍ୱଜଗତର କେନ୍ଦ୍ରରେ ପୃଥିବୀ ଅବସ୍ଥିତ ଥିବାରୁ 'ଭୂକେନ୍ଦ୍ରିକ' ମତ ଚଳୁଥିଲା । ଏଣୁ ପୃଥିବୀକୁ ଗଣନାରୁ ବାଦ୍ ଦେବାକୁ ପଡୁଥିଲା । କେବଳ ଚନ୍ଦ୍ର ଓ ସୂର୍ଯ୍ୟ ପୃଥିବୀପୃଷ୍ଠରେ ଭ୍ରାମ୍ୟମାଣ ହେଉଥିବାର ଧାରଣା ସମସ୍ତଙ୍କର ଥିଲା । ଶୂନ୍ୟ ମଣ୍ଡଳରେ ସୂର୍ଯ୍ୟ ଯେଉଁ ମାର୍ଗରେ ଗତି କରେ, ତାହାର ନାମ 'ରବିମାର୍ଗ' ବା କ୍ରାନ୍ତିବୃତ୍ତ । ଚନ୍ଦ୍ରର ଗତିମାର୍ଗ ଏହି ମାର୍ଗଠାରୁ ଅଳ୍ପ ଦୂରବର୍ତ୍ତୀ । ରବିର ଗତି ମାର୍ଗ ସର୍ବପ୍ରଥମେ କେଲଡିୟ ବା ବେବିଲୋନୀୟ ଜ୍ୟୋତିଷୀମାନେ ଆବିଷ୍କାର କରିଥିଲେ । ଏହି ମାର୍ଗର ୯ ଡିଗ୍ରୀ ଉତ୍ତର ଓ ଦକ୍ଷିଣବର୍ତ୍ତୀ ସ୍ଥାନରେ ଗ୍ରହଗୁଡ଼ିକର ମାର୍ଗ ମଧ୍ୟ ସ୍ଥିରୀକୃତ ହୋଇଥିଲା । ନାକ୍ଷତ୍ରିକ ଜଗତର ୧୨ଟି ପ୍ରସିଦ୍ଧ ନକ୍ଷତ୍ରପୁଞ୍ଜ ରବିମାର୍ଗର ଉତ୍ତର ଓ ଦକ୍ଷିଣାବର୍ତ୍ତୀ ୯ ଡିଗ୍ରୀ ସ୍ଥାନରେ ଅବସ୍ଥିତ । ନାକ୍ଷତ୍ରିକ ଜଗତର ଏହି ରାଶିଚକ୍ର ସହିତ ସୌରଜଗତର ଗ୍ରହଗୁଡ଼ିକର ସଂପର୍କ ଘନିଷ୍ଠ ଭାବରେ ଜଡ଼ିତ ।

**ସୌରଜଗତର ଗ୍ରହ, ଉପଗ୍ରହ, ଗ୍ରହାଣୁପୁଞ୍ଜ ନକ୍ଷତ୍ର ଲଞ୍ଜା ବା ଧୂମକେତୁ ଓ ଉଲ୍କାପିଣ୍ଡ :** ସୌର ଜଗତର ସୂର୍ଯ୍ୟ ଓ ଚନ୍ଦ୍ର ଉଭୟେ ଦିବସ ଓ ରାତ୍ରିରେ ଉଦୟ ହେବା ବହୁ ପ୍ରାଚୀନ କାଳରୁ ଲୋକମାନେ ଆକାଶରେ ଦେଖୁଥିଲେ । କେଲଡୀୟ ବା ବେବିଲୋନୀୟମାନେ ପ୍ରଥମେ ସୌରଜଗତର ଗ୍ରହ- ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ନାକ୍ଷତ୍ରିକ ଜଗତର ଜ୍ୟୋତିଷ୍କଗୁଡ଼ିକଠାରୁ ସ୍ୱତନ୍ତ୍ର ଗତିଶୀଳ ଜ୍ୟୋତିଷ୍କରୂପେ ଆକାଶରେ ଉଦୟ ଓ ଅସ୍ତ ହେଉଥିବାରୁ ସେଗୁଡ଼ିକର ସ୍ୱତନ୍ତ୍ର ନାମକରଣ କରିଥିଲେ । ବୁଧ ଓ ଶୁକ୍ର ଜ୍ୟୋତିଷ୍କଗୁଡ଼ିକ ସାନ୍ଧ୍ୟତାରା ବା ପ୍ରତ୍ୟୁଷ ତାରାରୂପେ ଆବିର୍ଭୂତ ହେଉଥିଲେ, କିନ୍ତୁ ସେମାନେ ଏହାର କାରଣ ସ୍ଥିର କରିପାରି ନଥିଲେ । ତେଣୁ ଏଗୁଡ଼ିକର ନାମ ଗ୍ରହ ନ ରଖି ନକ୍ଷତ୍ର ବୋଲି ରଖିଥିଲେ ଓ ତଦନୁସାରେ ଗଣିତମୂଳକ ଜ୍ୟୋତିଷଶାସ୍ତ୍ର ରଚନା କରିଥିଲେ ଖ୍ରୀ:ପୂ: ୧୨୦୦ ବର୍ଷ ଆଗେ ।

ବେବିଲୋନୀୟମାନଙ୍କ ଦ୍ୱାରା ଆବିଷ୍କୃତ ଭ୍ରାମ୍ୟମାଣ ପାଞ୍ଚଟି ଜ୍ୟୋତିଷ୍କର ନାମ ବେବିଲୋନୀୟ ଭାଷାରେ କି ନାମ ଥିଲା ଜାଣିପାରି ନାହିଁ । ଗ୍ରୀକ୍ ଭାଷା ମଧ୍ୟରେ ପ୍ରବେଶ କରି ଲାଟିନ୍ ଭାଷାରେ ସେଗୁଡ଼ିକର ନାମ Mass, Mercury, Juptior, Venus ଓ Saturn ନାମରେ ପରିଚିତ ହୋଇଥିଲା ଏବଂ ଏଗୁଡ଼ିକ ସବୁ ରୋମକ ଜାତିର ପୌରାଣିକ ଦେବତାଙ୍କର ନାମ । ଏହି ପାଞ୍ଚଟି ଜ୍ୟୋତିଷ୍କର ନାମ ସହ ରବି ଓ

ଚନ୍ଦ୍ର ମିଶି ସଂସ୍କୃତ ଭାଷାରେ ସାତଟି ଜ୍ୟୋତିଷ୍କର ନାମ ହୋଇଛି -- ରବି, ସୋମ, (ଚନ୍ଦ୍ର) ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି । ଇଂରାଜୀ ଭାଷାରେ ସପ୍ତବାର ନାମ Sunday, Monday, Tuesday, Wednesday, Thrusday, Friday ଓ Saturday । Sunday ସୂର୍ଯ୍ୟରୁ, Monday ସୋମ ବା ଚନ୍ଦ୍ରରୁ ହୋଇଛି । Tuesday ପ୍ରାଚୀନ Saxon ଭାଷାରୁ ଆସିଛି, Wednesday ୟୁରୋପୀୟ ପୌରାଣିକ ନାମରୁ ଜର୍ମାନୀ ଭାଷାରେ ହୋଇଛି । Thursday ସ୍ୱିଡେନ୍ ଭାଷାରୁ ଆସିଛି, ଯାହାକି ଲାଟିନ୍ ଭାଷାରେ Juptior ସହିତ ସମାନ । Friday ଏଙ୍ଗଲୋ-ସେଂକସନ୍ ଭାଷାର ଶବ୍ଦ। ସେହିପରି Saturday ଏଙ୍ଗଲୋ ସେକ୍ସନ ଭାଷାରୁ ଉଦ୍ଭୁତ ।

ବୈଦିକ ଯୁଗରେ ଗ୍ରହର ନାମ ନ ଥିବାରୁ ଗ୍ରହାନୁସାରେ ବାର ନଥିଲା । ଭାରତୀୟ ସପ୍ତବାର ନାମ ବେବିଲୋନୀୟ ଭାଷାରୁ ଗ୍ରୀକ୍ ଭାଷା ବା ପାରସିକ ଭାଷାରୁ ଭାରତକୁ ଆସି ଭାରତୀୟ ପୌରାଣିକ ଆଖ୍ୟାନର ଦେବତାମାନଙ୍କ ନାମରେ କଥିତ ହୋଇଥିବାର ଅନୁମାନ ହୁଏ । ବର୍ତ୍ତମାନ ପ୍ରଶ୍ନ ହେଉଛି ଭାରତରେ ସପ୍ତବାରର ନାମ କେବେଠାରୁ ଚଳିଲା ? Report of the Calender Reforms Commitees ପୁସ୍ତକର ୨୩୪ ପୃଷ୍ଠାରେ ମୁଦ୍ରିତ ଅଛି ଯେ ଗୁପ୍ତ ସମ୍ରାଟ ବୁଦ୍ଧଗୁପ୍ତଙ୍କର ଗୁପ୍ତା଼ ୧୬୫ ବା ଖ୍ରୀ: ୪୮୫ରେ ଲିଖିତ ଶିଳାଲିପିରେ 'ସୁରଗୁରୁର୍ଦ୍ଦିବସେ' ବ୍ୟବହୃତ ହୋଇଛି ଅର୍ଥାତ୍ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ଶେଷପାଦରେ ସପ୍ତବାର ମଧ୍ୟରୁ ଗୁରୁବାର ନାମ ଭାରତରେ ବ୍ୟବହୃତ ହୋଇଥିବାର ପ୍ରମାଣ ମିଳିଛି । ଏଥିରୁ ଜଣାଯାଉଛି ଯେ ବେବିଲୋନର ସପ୍ତବାର ଠିକ୍ ସଂସ୍କୃତରେ ରୂପାନ୍ତରିତ ହୋଇ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀରେ ସର୍ବପ୍ରଥମେ ଭାରତରେ ଚଳିଥିଲା । ଏପରି ହୋଇପାରେ ଯେ ସପ୍ତବାରର ନାମ ଅନ୍ତତଃ ଏକଶତ ବର୍ଷ ପୂର୍ବରୁ ମଧ୍ୟ ବ୍ୟବହୃତ ହୋଇପାରିଥାଏ । କିନ୍ତୁ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀ ଧରିବା ଠିକ୍ । ଏହି ସମୟକୁ ରବି ଓ ଚନ୍ଦ୍ର ସହିତ ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଓ ଶନିବାର ନାମରେ ସପ୍ତବାର ଭାରତରେ ଚଳୁଥିଲା । ଏଣୁ ଦେଖାଯାଉଛି ଯେ ସପ୍ତବାରର ବ୍ୟବହାର ସପ୍ତଗ୍ରହ ନାମାନୁସାରେ ୧୫୦୦ ବର୍ଷ ପୂର୍ବେ ଭାରତରେ ପ୍ରସିଦ୍ଧିଲାଭ କରିଥିଲା ।

ଖ୍ରୀ: ପଞ୍ଚମ ଶତାବ୍ଦୀରେ ସୌର ଜଗତରେ 'ଭୂକୈନ୍ଦ୍ରିକ' ଗଣନା ଅନୁସାରେ ସାତଟି ଗ୍ରହ -- ରବି, ସୋମ, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଗ୍ରହଗୁଡ଼ିକ ଆବିଷ୍କୃତ ହୋଇଥିଲା ।

ଏଠାରେ ସାତୋଟି ଗ୍ରହର ନାମ ମିଳେ । ଭାର ଏ ଫଳିତ ଜ୍ୟୋତିଷରେ ନବଗ୍ରହ ସୁବିଦିତ । ମାତ୍ର ସୌର ଜଗତରେ ନବଗ୍ରହ ମଧ୍ୟରୁ ରାହୁ ଓ କେତୁ ଗ୍ରହରୂପେ ଦୃଷ୍ଟ ହୁଅନ୍ତି ନାହିଁ । ଖ୍ରୀ: ୮ମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱର ପରଶୁରାମେଶ୍ୱର ମନ୍ଦିରରେ ରାହୁ ସହିତ ସପ୍ତ ଗ୍ରହ ମିଶି ସପ୍ତଗ୍ରହ ମୂର୍ତ୍ତି ଖୋଦିତ ଅଛି । ଲକ୍ଷ୍ମଣେଶ୍ୱର ମନ୍ଦିରରେ ତଦ୍ରୁପ ଅଷ୍ଟଗ୍ରହ ଅଛି । ଖଣ୍ଡଗିରିର ଏକ ଗୁମ୍ଫାରେ ଖୋଦିତ ମୂର୍ତ୍ତିରେ ଅଷ୍ଟଗ୍ରହ ଅଛି, ଜୈନ ପୁରାଣ ମତରେ, ଫଳିତ ଜ୍ୟୋତିଷ ଅଷ୍ଟୋତରୀଦଶା ଅନୁସାରେ ଅଷ୍ଟଗ୍ରହ ଓ ବିଂଶୋଭରୀ ଦଶା ଗଣନାରେ କେତୁ ସହ ନବଗ୍ରହର ନାମ ମିଳେ । ଭୁବନେଶ୍ୱରର ମନ୍ଦିରରେ ଗ୍ରହପାଟରେ ନବଗ୍ରହ ମୂର୍ତ୍ତି ଅଛି । କୋଣାର୍କର ନବଗ୍ରହ ପାଟ ପ୍ରସିଦ୍ଧ ।

ସୌର ଜଗତର ଗ୍ରହଗଣ :

ୟୁରୋପୀୟ ଜ୍ୟୋତିଷୀ କୋପାରନିକସ (ଖ୍ରୀ: ୧୪୭୩ରୁ ୧୫୪୩)ଙ୍କ ପୂର୍ବରୁ ସମଗ୍ର ପୃଥିବୀରେ ଜ୍ୟୋତିଷୀମାନଙ୍କର ଧାରଣା ଥିଲା ଯେ ଗ୍ରହଜଗତ ଭୂକୈନ୍ଦ୍ରିକ । କୋପାରନିକାସ୍ ଗବେଷଣା କରି ପ୍ରମାଣିତ କଲେ ଯେ ସୌରଜଗତର କେନ୍ଦ୍ରରେ ସୂର୍ଯ୍ୟ ଅବସ୍ଥିତ ଓ ସୂର୍ଯ୍ୟକୁ କେନ୍ଦ୍ର କରି ବୁଧ, ଶୁକ୍ର, ପୃଥିବୀ, ମଙ୍ଗଳ, ବୃହସ୍ପତି ଓ ଶନି ଗ୍ରହଗୁଡ଼ିକ ଅବସ୍ଥିତ । ଚନ୍ଦ୍ର ପୃଥିବୀର ଏକ ଉପଗ୍ରହମାତ୍ର । ଯାହାହେଉ ଚନ୍ଦ୍ରକୁ ଫଳିତ ଜ୍ୟୋତିଷରେ ଏକ ଗ୍ରହରୂପେ ଗ୍ରହଣ କରିଥିବାରୁ ସୂର୍ଯ୍ୟକୁ ମିଶାଇ ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଏହି ସପ୍ତଗ୍ରହ ନାମରେ ସପ୍ତାହ ବା ସପ୍ତବାର ସ୍ଥିରୀକୃତ ହେଲା ଓ ତାହା ଅଦ୍ୟାପି ମଧ୍ୟ ଚଳୁଅଛି । କୋପାରନିକାସ୍‌ଙ୍କ ପରେ ଗେଲିଲିଓ (ଖ୍ରୀ: ୧୬୪୩-୧୭୩୯) ଦୂରବୀକ୍ଷଣ ଯନ୍ତ୍ର ଆବିଷ୍କାର କରିବାରୁ ସୌରଜଗତ, ନକ୍ଷତ୍ର ଜଗତ ଓ ଛାୟାପଥ ଉପରେ ଗବେଷଣା କରି ୟୁରୋପୀୟ ଜ୍ୟୋତିଷୀମାନେ ବହୁବିଧ ନୂତନ ଗଣିତ-ଜ୍ୟୋତିଷ ସଂପର୍କରେ ଗବେଷଣା କରି ନାନାବିଧ ନୂତନ ତତ୍ତ୍ୱ ଆବିଷ୍କାର କରିଅଛନ୍ତି । ଦୂରବୀକ୍ଷଣ ଆବିଷ୍କୃତ ହେବା ପୂର୍ବରୁ ଶନି ଗ୍ରହଠାରୁ ଦୂରକୁ ଅବସ୍ଥିତ କୌଣସି ଗ୍ରହ ସୌରଜଗତରେ ଥିବାର ଜଣା ନଥିଲା । କିନ୍ତୁ ଦୂରବୀକ୍ଷଣ ସାହାଯ୍ୟରେ ଶନି ଗ୍ରହ ପରେ ୟୁରେନସ୍ (Uranes) ନେପଚ୍ୟୁନ୍ (Neptune) ଓ ପ୍ଳୁଟୋ (Pluto) ନାମକ ଆଉ ନୂତନ ତିନୋଟି ଗ୍ରହ ସୌରଜଗତରେ ଆବିଷ୍କୃତ ହୋଇଛି । ସୌରଜଗତର ଗ୍ରହଗୁଡ଼ିକୁ ସୂର୍ଯ୍ୟଠାରୁ ପୃଥିବୀର ମଧ୍ୟବର୍ତ୍ତୀ ଓ ସୂର୍ଯ୍ୟଠାରୁ ପୃଥିବୀର ଦୂରବର୍ତ୍ତୀ ଅବସ୍ଥିତି ଅନୁସାରେ ଦୁଇ ଭାଗରେ ବିଭକ୍ତ କରାଯାଇଛି ।

ସୂର୍ଯ୍ୟ ସମ୍ପର୍କରେ ପୂର୍ବେ ଆଲୋଚିତ ହୋଇଛି । ସୂର୍ଯ୍ୟ ଓ ପୃଥିବୀର ଅନ୍ତର୍ବର୍ତ୍ତୀ ଗ୍ରହଗୁଡ଼ିକ ମଧ୍ୟରେ ବୁଧ ଓ ଶୁକ୍ର ସ୍ଥାନ ପାଇଅଛନ୍ତି ।

ବୁଧ : ସୂର୍ଯ୍ୟଠାରୁ ଅତି ନିକଟବର୍ତ୍ତୀ ଗ୍ରହର ନାମ ବୁଧ । ଏହାର ଗ୍ରୀକ୍ ନାମ (Mercury) । ଏହି ଗ୍ରହଟି ସୂର୍ଯ୍ୟକୁ ଗୋଲ ମାର୍ଗରେ ତିନି ମାସରେ ଭ୍ରମଣ କରେ । ଏହା ସୂର୍ଯ୍ୟଠାରୁ ୩୬ ଅଯୂତ ମାଇଲ ଦୂରରେ ଅବସ୍ଥିତ ଓ ସୂର୍ଯ୍ୟର ଅତି ନିକଟବର୍ତ୍ତୀ ଗ୍ରହ । ପୃଥିବୀର ବ୍ୟାସ ୧ ଧରାଗଲେ ଏହାର ବ୍ୟାସ ୦.୩୮୭ ମାଇଲ ବା ଚନ୍ଦ୍ରର ବ୍ୟାସର ଅର୍ଦ୍ଧେକମାତ୍ର । ଏହା ନିଜ କକ୍ଷରେ ପୃଥିବୀକୁ ୮୮ ଦିନରେ ପରିକ୍ରମା କରେ । ଶୁକ୍ରର ଗୋଟିଏ ପୃଷ୍ଠ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ ଚନ୍ଦ୍ରପରି । ଏହାର ଆଲୋକିତ ଭାଗ ଯେପରି ଅତ୍ୟଧିକ ଗରମ, ଅପର ଭାଗଟି ସେହିପରି ଅତ୍ୟଧିକ ଥଣ୍ଡା । ଏଠାରେ ଜୀବ ଥିବାର କିଛି ପ୍ରମାଣ ମିଳିନାହିଁ । ଏହାର ଆବର୍ତ୍ତନ ଓ ଘୂର୍ଣ୍ଣନର ସମୟ ପ୍ରାୟ ସମାନ ।

ଶୁକ୍ର : ଏହା ପୃଥିବୀପୃଷ୍ଠ ସହିତ ଅନେକ ବିଷୟରେ ସମାନ । ଏହାର ବ୍ୟାସ ପୃଥିବୀ ତୁଳନାରେ ୦.୭୨ ମାଇଲ । ଏହାର ଆବର୍ତ୍ତନର ସମୟ ୭ ମାସ । ଏହା ସୂର୍ଯ୍ୟଠାରୁ ୬୭ ଅଯୂତ ମାଇଲ ଦୂରରେ ଅବସ୍ଥିତ । ଏହା ଗୋଟିଏ ଅତି ଉଜ୍ଜ୍ୱଳ ଗ୍ରହ, ଯାହା ତାରାସଦୃଶ ଦେଖାଯାଏ । ଏହାର ଆବହାୱାରେ ଜୀବ ପ୍ରାଣୀ ରହିବାର ସମ୍ଭାବନା ଅଛି ପୃଥିବୀର ତୁଳନାରେ ।

ବୁଧ ଓ ଶୁକ୍ର ଗ୍ରହ ଦୁଇଟି ସୂର୍ଯ୍ୟ ଓ ପୃଥିବୀର ମଧ୍ୟବର୍ତ୍ତୀ ଗ୍ରହ ଥିବାରୁ ଆମ୍ଭେମାନେ ଏ ଦୁଇଟି ଗ୍ରହର ଉଦୟ ଓ ଅସ୍ତ କେବଳ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ପରେ ଆକାଶରେ ହେଉଥିବାର ଦେଖୁଁ । ଉଭୟ ଗ୍ରହର ଗତି ଅନୁସାରେ ଆମ୍ଭେମାନେ ଏଗୁଡ଼ିକୁ ସାନ୍ଧ୍ୟ ବା ଖବୁଆ ତାରା ଓ ସକାଳ ବା ପୁହା ତାରା କହିଥାଉଁ ।

ପୃଥିବୀ : ପୃଥିବୀ ମନୁଷ୍ୟମାନଙ୍କ ଆବାସସ୍ଥଳ ହୋଇଥିବାରୁ ଏହା ଉପରେ ଆମ୍ଭମାନଙ୍କର ବହୁତ କିଛି ଅଭିଜ୍ଞତା ଜନ୍ମିଛି । ପୃଥିବୀରେ ଅବହାୱା ଅଛି ଓ ଏଥିରେ ଅମ୍ଳଜାନ ୨୧ ଭାଗ ଥିବାରୁ ଏଠାରେ ଉଦ୍ଭିଦ ଓ ଜୀବ ଉଭୟେ ବଞ୍ଚି ରହୁଛନ୍ତି । ଏଠାରେ ସ୍ଥାନ ବିଶେଷରେ ଖରା, ବର୍ଷା ଓ ଶୀତ ଋତୁ ହେଉଅଛି ।

ସୂର୍ଯ୍ୟଠାରୁ ପୃଥିବୀର ଦୂରତ୍ୱ ୯୩ ଅଯୂତ ମାଇଲ ।

ପୃଥିବୀର ପରିଧି ୨୫୦୦୦ ମାଇଲ ଓ ବ୍ୟାସ ୮୦୦୦ ମାଇଲ । ଏହା ନିରକ୍ଷବୃତ୍ତଠାରେ ଗୋଲାକାର ହେଲେ ମଧ୍ୟ ଦକ୍ଷିଣ ଓ ଉତ୍ତର ମେରୁଠାରେ କେତେକଟା

ଚେପଟା । ପୃଥିବୀର ଦୁଇଟି ଗତି -- ଆହ୍ନିକ ଓ ବାର୍ଷିକ ନାମରେ କଥିତ । ପୃଥିବୀ ପ୍ରତି ସେକେଣ୍ଡରେ ପ୍ରାୟ ୧୮ ମାଇଲ ଗତି କରୁଥିଲେ ମଧ୍ୟ ସେ ଗତି ଆମ୍ଭେମାନେ ଅନୁଭବ କରି ପାରୁନାହୁଁ ।

ପୃଥିବୀର ବହିର୍ଭାଗକୁ ଆମ୍ଭେମାନେ ଭୂଗୋଳ ହିସାବରେ ଆଲୋଚନା କରି ଅନେକ ତଥ୍ୟ ଜାଣିଅଛୁଁ । ସେହିଠାରେ ପୃଥିବୀର ଅନ୍ତର୍ଭାଗ ସମ୍ପର୍କରେ ଭୂତତ୍ତ୍ୱ ବିଦ୍ୟାଦ୍ୱାରା ଅନେକ କିଛି ଜଣାଯାଇଛି । ପୃଥିବୀର ଉପରିଭାଗ କାଳକ୍ରମେ ଶୀତଳ ହୋଇଥିବାରୁ ତାହାର ପୃଷ୍ଠଭାଗର ମାଟି ପଥର ଇତ୍ୟାଦି ଅଛି; କିନ୍ତୁ ପୃଥିବୀର ଗଭୀରତର ଭାଗ ଅଦ୍ୟାପି ଯେ ଉଷ୍ଣ ଅଛି, ତାହାର ପ୍ରମାଣ ଆମ୍ଭେମାନେ ଉଷ୍ଣପ୍ରସବଣ ଓ ଆଗ୍ନେୟଗିରିଗୁଡ଼ିକର ଅସ୍ତିତ୍ୱରୁ ଜାଣିପାରିଛୁ ।

ଏ ପ୍ରବନ୍ଧ କେବଳ ଜ୍ୟୋତିଷ ବିଦ୍ୟା ଉପରେ ଲିଖିତ ହୋଇଥିବାରୁ ପୃଥିବୀ ଉପରେ ଅଧିକ କିଛି ଲେଖିବାର ପ୍ରୟୋଜନ ମନେ କରୁନାହିଁ ।

**ପୃଥିବୀର ଉପଗ୍ରହ ଚନ୍ଦ୍ର** : ଚନ୍ଦ୍ର ପୃଥିବୀର ଏକମାତ୍ର ଉପଗ୍ରହ । ଏହା ପୃଥିବୀ ପରି ଗୋଲାକାର ଓ ଏଥିର ବ୍ୟାସ ୨୧୬୦ ମାଇଲ । ଏହା ନିଜ କକ୍ଷରେ ପୃଥିବୀର ଚତୁର୍ଦ୍ଦିଗରେ ଘୂରୁଅଛି । ସୂର୍ଯ୍ୟ, ପୃଥିବୀ ଓ ଚନ୍ଦ୍ରର ଅବସ୍ଥାନ ହେତୁ ସୂର୍ଯ୍ୟାଲୋକ ଦ୍ୱାରା ଶୁକ୍ଳ ପ୍ରତିପଦାଠାରୁ କ୍ରମଶଃ ବଢ଼ି ବଢ଼ି ପୂର୍ଣ୍ଣିମା ଦିନ ପୂର୍ଣ୍ଣଭାବରେ ଚନ୍ଦ୍ରର ଅର୍ଦ୍ଧାଂଶ ଭାଗରେ ପଡ଼େ ଓ ସେହିପରି କୃଷ୍ଣ ପ୍ରତିପଦାଠାରୁ କ୍ରମଶଃ କ୍ଷୀଣ ହୋଇ ହୋଇ ଅମାବାସ୍ୟା ଦିନ ଚନ୍ଦ୍ର ଉପରେ ସୂର୍ଯ୍ୟକିରଣ ନ ପଡ଼ିବାରୁ ତାହା ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏନାହିଁ ।

ସୂର୍ଯ୍ୟ, ପୃଥିବୀ ଓ ଚନ୍ଦ୍ର ଅବସ୍ଥାନ ଉପରେ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟ ଗ୍ରହଣ ହୋଇଥାଏ । ଜ୍ୟୋତିଷୀମାନେ ସୂର୍ଯ୍ୟ, ପୃଥିବୀ ଓ ଚନ୍ଦ୍ରର ଗତି ଗଣନା ନ କରି ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟ ଗ୍ରହଣର ସମୟ ନିରୂପଣ କରିଅଛନ୍ତି ।

ପୃଥିବୀର ମନୁଷ୍ୟମାନଙ୍କ ବୈଜ୍ଞାନିକ ଜ୍ଞାନ ବଳରେ ଅଳ୍ପକାଳ ହେଲା ମନୁଷ୍ୟ ଶୂନ୍ୟ ମାର୍ଗରେ ଯନ୍ତ୍ର ସାହାଯ୍ୟରେ ଗତିକରି ଚନ୍ଦ୍ରପୃଷ୍ଠରେ ଅବତରଣ କରିଛି, ଏହା ଆରମ୍ଭ ମାତ୍ର । ଏହାର ଭବିଷ୍ୟତ ମନୁଷ୍ୟର କାର୍ଯ୍ୟକୁ ଯେ କେତେଦୂର ଆଗେଇବ, ତାହା କେହି କଳ୍ପନା କରିବା ସହଜସାଧ୍ୟ ନୁହେଁ ।

ଗ୍ରୀକ୍ ଜ୍ୟୋତିଷୀ ମେଟନଙ୍କ ଗଣନାନୁସାରେ ଚନ୍ଦ୍ର ପ୍ରତି ୧୯ ବର୍ଷପରେ ପୁନର୍ବାର ନିଜ ସ୍ଥାନକୁ ଫେରିଆସେ । କେବଳ ଚନ୍ଦ୍ରୋଦୟର ସମୟ କେତେକ ମିନିଟ୍ ମାତ୍ର ଆଗରୁ ଚନ୍ଦ୍ରୋଦୟ ହୋଇଥାଏ ।

**ମଙ୍ଗଳ ଗ୍ରହ :** ସୌରଜଗତରେ ଏହା ୪ର୍ଥ ଗ୍ରହ ଓ ପୃଥିବୀର ବହିର୍ଭାଗସ୍ଥିତ ଗ୍ରହ ମଧ୍ୟରେ ପ୍ରଥମ । ଏହାର ଦୂରତା ସୂର୍ଯ୍ୟଠାରୁ ୧୪୧ ନିୟୁତ ମାଇଲ । ଏହା ସୂର୍ଯ୍ୟକୁ ପ୍ରଦକ୍ଷିଣ କରେ ୬୮୭ ଦିନରେ । ଏହା ସୂର୍ଯ୍ୟର ବିପରୀତ ଦିଗରେ ଅବସ୍ଥାନ କରିବା ସମୟରେ ସର୍ବପେକ୍ଷା ଉଜ୍ଜ୍ୱଳ ଦେଖାଯାଏ । ଏହାର ଆଲୋକର ରଙ୍ଗ ଲାଲ । ଏହାର ବ୍ୟାସ ୪୨୨୦ ମାଇଲ । କେହି କେହି ଜ୍ୟୋତିଷୀ ଅନୁମାନ କରନ୍ତି ଯେ ମଙ୍ଗଳରେ କ୍ଷୁଦ୍ର କ୍ଷୁଦ୍ର ଉଦ୍ଭିଦ ଅଛି ।

ଏହାର ଦୁଇଟି ଗୋଂବୋସ ଓ ଡେମୋସ ନାମକ ଉପଗ୍ରହ ଅଛି । ଗୋଟିକର ବ୍ୟାସ ୧୦ ମାଇଲ ଓ ଅନ୍ୟଟିର ବ୍ୟାସ ୫ ମାଇଲ ମାତ୍ର ।

ଭରତୀୟ ଜ୍ୟୋତିବିଦ୍‌ଙ୍କ ମତରେ ମଙ୍ଗଳ ଗ୍ରହର ଅନ୍ୟ ନାମ ଭୂମିସୁତ; ମାତ୍ର ଏହି ନାମର ପୌରାଣିକ ଉପାଖ୍ୟାନ କଣ ଅଛି, ତାହା ମୁଁ ଜାଣିପାରିନାହିଁ ।

**ଗ୍ରହାଣୁପୁଞ୍ଜ :** ଗେଲିଲିଓଙ୍କ ଦୂରବୀକ୍ଷଣ ଯନ୍ତ୍ରର ଆବିଷ୍କାର ପରେ ୟୁରୋପୀୟ ଜ୍ୟୋତିଷୀମାନେ ସୌରଜଗତ ଉପରେ ନାନାପ୍ରକାର ଗବେଷଣାରେ ମନୋନିବେଶ କରିଥିଲେ । ତନ୍ମଧ୍ୟରୁ ବୋଡ଼େ ସୂର୍ଯ୍ୟଠାରୁ ଗ୍ରହର ଦୂରତା ଉପରେ ଆଲୋଚନା କରି ସ୍ଥିର କଲେ ଯେ ମଙ୍ଗଳ ଓ ବୃହସ୍ପତି ଗ୍ରହଦ୍ୱୟ ମଧ୍ୟରେ ଦୂରତ୍ୱର ପରିମାଣ ଅନ୍ୟାନ୍ୟ ଗ୍ରହର ଦୂରତ୍ୱର ପରିମାଣ ଅନୁସାରେ ଅତ୍ୟଧିକ । କିନ୍ତୁ ଏହାର ସମାଧାନ ସେ କରିପାରି ନଥିଲେ । ତାଙ୍କର ଗବେଷଣା ବୋଡ଼େଙ୍କ ନିୟମ (Bodes law) ବୋଲି ଗୃହୀତ ହୋଇଥିଲା । ଖ୍ରୀ: ୧୮୦୧ ରେ ପିଆଜି (Piazzi) ସର୍ବପ୍ରଥମେ ସିରସ (Ceres) ନାମକ ଗ୍ରହାଣୁପୁଞ୍ଜ ଆବିଷ୍କାର କଲେ । ଏହାର ବ୍ୟାସ ୪୮୦ ମାଇଲ ମାତ୍ର । ସିରସ ନାମଟି ଗ୍ରୀକ୍ ଉପାଖ୍ୟାନର ଏକ ଦେବତାଙ୍କ ନାମ ଥିବାରୁ ପିଆଜି ତଦନୁସାରେ ଗ୍ରହାଣୁପୁଞ୍ଜଟିର ନାମ ରଖିଥିଲେ । ଆଜି ପର୍ଯ୍ୟନ୍ତ ୧୫୦୦ରୁ ଅଧିକ ଗ୍ରହାଣୁପୁଞ୍ଜ ଆବିଷ୍କୃତ ହୋଇଛି ।

ଉନବିଂଶ ଶତାବ୍ଦୀରେ ଓଡ଼ିଶାର ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ଗଣିତ-ଜ୍ୟୋତିଷ ଉପରେ ପ୍ରାଚୀନ ପନ୍ଥାନୁସାରେ ଜ୍ୟୋତିଷ ଚର୍ଚ୍ଚା କରି ନିଜର କୃତିତ୍ୱ ଓ ଅନୁସନ୍ଧାନର ପନ୍ଥା ଦେଖାଇଥିଲେ । ତାଙ୍କର ଗ୍ରନ୍ଥ 'ସିଦ୍ଧାନ୍ତ ଦର୍ପଣ' ଆଜକୁ ଏକଶତ ବର୍ଷ ହେଲାଣି । କିନ୍ତୁ ଦୁର୍ଭାଗ୍ୟର କଥା ଯେ ସେ ଗ୍ରନ୍ଥର ବିଶେଷତ୍ୱ ଅଦ୍ୟାପି ପୁଙ୍ଖାନୁପୁଙ୍ଖ ରୂପେ କେହି ଆଲୋଚନା କରିନାହାନ୍ତି । ସୌଭାଗ୍ୟର କଥା ଯେ ଉତ୍କଳ ବିଶ୍ୱବିଦ୍ୟାଳୟ

ଓ ଓଡ଼ିଶା ସରକାର ଏ ବର୍ଷ ତତ୍‌ସମ୍ବନ୍ଧରେ ଆଲୋଚନା କରିବା ପାଇଁ ଯତ୍ନବାନ୍ ହୋଇଅଛନ୍ତି । ଉତ୍କଳ ବିଦ୍ୟାଳୟରେ ବି.ଏ ଓ ଏମ୍.ଏ. ପାଠ୍ୟ ତାଲିକାରେ ଗଣିତ-ଜ୍ୟୋତିଷର ସ୍ଥାନ ନାହିଁ । ମେଥମେଟିକସ ଛାତ୍ରମାନେ ବି.ଏ. ଅନର୍ସ ଓ ଏମ୍.ଏ.ର ପାଠ୍ୟ ତାଲିକାରେ ଗଣିତ-ଜ୍ୟୋତିଷର ବ୍ୟବସ୍ଥା ନ ଥିବାରୁ ଏହି ବିଷୟରେ କିଛି ଜାଣି ପାରୁନାହାନ୍ତି । ପୁରୀର ସଂସ୍କୃତ କଲେଜରେ ଫଳିତ ଜ୍ୟୋତିଷ ଶିକ୍ଷାର ବ୍ୟବସ୍ଥା ନାହିଁ । ଏପରିକି ଓଡ଼ିଶାରେ ଗୋଟିଏ ବଡ଼ ଧରଣର ଦୂରବୀକ୍ଷଣ ଯନ୍ତ୍ର କୌଣସି ଅନୁଷ୍ଠାନରେ ରଖାଯାଇନାହିଁ, ଯାହାଦ୍ୱାରା ଆକାଶତତ୍ତ୍ୱ ଜାଣିବା ପାଇଁ ଛାତ୍ରମାନେ କୌତୂହଳୀ ହୁଅନ୍ତେ ।

ବୃହସ୍ପତି : ଗ୍ରହାଣୁପୁଞ୍ଜ ସିରସ ବ୍ୟତୀତ ଜୁପିଟାର ବା ବୃହସ୍ପତିର ସ୍ଥାନ ଗ୍ରହମାନଙ୍କ ମଧ୍ୟରେ ପଞ୍ଚମ । ଏହା ସୌର ଜଗତରେ ସର୍ବବୃହତ୍ ଗ୍ରହ । ସୂର୍ଯ୍ୟଠାରୁ ଏହାର ଦୂରତ୍ୱ ୪୮୩ ଅୟୁତ ମାଇଲ । ପୃଥିବୀକୁ ପ୍ରଦକ୍ଷିଣ କରିବାକୁ ଏହାକୁ ପ୍ରାୟ ୧୨ ବର୍ଷ ଲାଗେ । ପୃଥିବୀଠାରୁ ଏହାର ଗୁରୁତ୍ୱ ୩୧୮ ଗୁଣ ଅଧିକ । ଏହା କକ୍ଷରେ ଘୂରିବା ପାଇଁ ୧୦ ଘଣ୍ଟା ଲାଗେ । ସୌରଜଗତରେ ବୃହସ୍ପତି ସର୍ବାପେକ୍ଷା ପ୍ରଧାନ ଗ୍ରହ ଆକାରରେ ଓ ଗୁରୁତ୍ୱରେ । ଏଥିପାଇଁ ରୋମକମାନେ ତାଙ୍କର ପୌରାଣିକ ରାଜା ଜୁପିଟର (Jupiter) ନାମାନୁସାରେ ଏହାର ନାମକରଣ କରିଥିଲେ ।

ବୃହସ୍ପତିର ୧୨ଟି ଉପଗ୍ରହ ବା ଚନ୍ଦ୍ର ଅଛି । ତନ୍ମଧ୍ୟରୁ ବଡ଼ ଗ୍ୱରୋଟି ଗେଲିଲିଓଙ୍କ ଦ୍ୱାରା ଖ୍ରୀ: ୧୬୧୦ରେ ଆବିଷ୍କୃତ ହୋଇଥିଲା । ଶେଷୋକ୍ତ ଉପଗ୍ରହଟି ୧୯୫୧ ରେ ଆବିଷ୍କୃତ ହେଲା ।

ଶନି : ରୋମକ ପୌରାଣିକ ଉପାଖ୍ୟାନ ଅନୁସାରେ ଶନି ଏକ ବିଶିଷ୍ଟ ଦେବତା । ଏହା କୃଷି ଓ ସଭ୍ୟତାର ଦେବତା । ଶନି, ଜୁପିଟରଙ୍କ ପିତା । ଜୁପିଟାର ତାଙ୍କୁ ସିଂହାସନଚ୍ୟୁତ କରିଥିଲେ ।

ଏହାର ଦୂରତ୍ୱ ସୂର୍ଯ୍ୟଠାରୁ ୮୮୬ ଅୟୁତ ମାଇଲ । ପୃଥିବୀ ପ୍ରଦକ୍ଷିଣ କରିବାକୁ ଶନିକୁ ୨୯,୪୫୮ ବର୍ଷ ଲାଗିଥାଏ । ଏହାର ନିରକ୍ଷ ବୃତ୍ତର ପରିମାଣ ୭୪, ୧୦୦ ମାଇଲ ଓ ଏହା ଆକୃତିରେ ସୌରଜଗତର ଦ୍ୱିତୀୟ ବୃହତ୍ ଗ୍ରହ । ଗୁରୁତ୍ୱରେ ମଧ୍ୟ ଏହା ଦ୍ୱିତୀୟ ଓ ପୃଥିବୀଠାରୁ ୯୫ ଗୁଣ ଅଧିକ । ଏହାର 'ଅକ୍ଷ'ରେ ବୁଲିବା ପାଇଁ ପ୍ରାୟ ୧୦ ଘଣ୍ଟା ୧୪ ମିନିଟ୍ ଲାଗେ । ଏଣୁ ବୃହସ୍ପତିଠାରୁ ଏହାର ଗତି ସାମାନ୍ୟ କମ୍ ।

ଶନି ଗ୍ରହର ୯ଟି ଉପଗ୍ରହ ଅଛି । ଏହି ଗ୍ରହର ବିଶେଷତ୍ୱ ଏହି ଯେ ଏହାର ଗୁଡ଼ିଏ ମୁଦ୍ରିକା (ring) ଅଛି । ଏହି ମୁଦ୍ରିକାଗୁଡ଼ିକ ଗେଲିଲିଓ ଖ୍ରୀ: ୧୬୧୦ରେ ଆବିଷ୍କାର

କରିଥିଲେ । ନିକଟତମ ମୁଦ୍ରିକାଟି ୬୦୦୦-୭୦୦୦ ମାଇଲ୍ ଦୂରରେ ଶନିର ପୃଷ୍ଠରୁ ଅବସ୍ଥିତ । ମୁଦ୍ରିକାଗୁଡ଼ିକର ବ୍ୟାସ ୧୭୧,୦୦୦ ମାଇଲ । ମୁଦ୍ରିକାଗୁଡ଼ିକର ସ୍ଥୂଳତା ୧୦-୨୦ ମାଇଲ୍ ମୋଟା । ଜ୍ୟୋତିଷୀମାନେ ସ୍ଥିର କରିଅଛନ୍ତି ଯେ ଏହି ମୁଦ୍ରିକାଗୁଡ଼ିକ ଅସଂଖ୍ୟାକ ଗ୍ରହାଣୁଖଣ୍ଡ ଦ୍ୱାରା ଗଠିତ । ଶନି ଗ୍ରହରେ କୌଣସି ପ୍ରକାର ଜୀବନର ପ୍ରମାଣ ମିଳିନାହିଁ ।

ୟୁରନାସ (**Uranus**) : ଗ୍ରୀକ୍ ପୌରାଣିକ ଉପାଖ୍ୟାନ ଅନୁସାରେ ଏକ ପ୍ରାଚୀନ ବେଦତାର ନାମ । ଏ ଶନି ବା ସଟାର୍ଣ୍ଣର ପିତା ଓ ଆକାଶର ଦେବତା ମଧ୍ୟ । ଏହି ଗ୍ରହ ହାରସେଲ (**Herochel**) ନାମକ ୟୁରୋପୀୟ ଜ୍ୟୋତିଷୀଙ୍କ ଦ୍ୱାରା ଖ୍ରୀଃ ୧୭୮୧ରେ ଆବିଷ୍କୃତ ହୋଇଥିଲା । ତେଣୁ ଏହାର ନାମ ଭାରତୀୟ ଜ୍ୟୋତିଷୀମାନେ ଜାଣନ୍ତି ନାହିଁ । ଏହାର ବ୍ୟାସ ୩୨,୦୦୦ ମାଇଲ ଓ ଏହା ପୃଥିବୀଠାରୁ ୧୪.୭ ଗୁଣ ଗୁରୁତ୍ୱରେ ଅଧିକ । ଏହା ସୂର୍ଯ୍ୟଠାରୁ ୧,୭୮୨,୦୦୦,୦୦୦ ମାଇଲ ଦୂରରେ ଅବସ୍ଥିତ ଥିବାରୁ ଏହାର ଆଲୋକ ଏତେ କ୍ଷୀଣ ଦେଖାଯାଏ । ଏହାର ଆହ୍ନିକ ଗତି ପ୍ରାୟ ୧୦ ଘଣ୍ଟା ୪୫ ମିନିଟ୍, ଯାହାକି ଶନିର ଗତି ସହିତ ପ୍ରାୟ ସମାନ ।

ଏ ଗ୍ରହର ବିଶେଷତ୍ୱ ଏହି ଯେ ଏହା ପୂର୍ବରୁ ପଶ୍ଚିମକୁ ବିପରୀତ ଭାବରେ ଗତି କରେ । ଅନ୍ୟାନ୍ୟ ଗ୍ରହଙ୍କର ଗତି ପଶ୍ଚିମରୁ ପୂର୍ବକୁ ହୁଏ ।

ଏହି ଗ୍ରହର ୫ଟି ଉପଗ୍ରହ ବା ଚନ୍ଦ୍ର ଅଛି ।

ନେପ୍‌ଚୁନ (**Neptun**) : ଗ୍ରୀକ୍ ପୌରାଣିକ ଉପାଖ୍ୟାନ ଅନୁସାରେ ଏହା ସାଗରର ଦେବତା, ଶନିର ପୁତ୍ର ଓ ଜୁପିଟାରର ଭ୍ରାତା । ଗଣିତ ଶାସ୍ତ୍ରାନୁସାରେ ଏହା ଖ୍ରୀଃ ୧୮୪୬ରେ ଆଡ଼ାମ୍‌ସ ଓ ଲେଭେରିଆର (Adams and Leverrier)ଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା । ଏହାର ବ୍ୟାସ ୩୩,୦୦୦ ମାଇଲ । ଏହା ୧୬୫ ବର୍ଷରେ ଥରେ ପୃଥିବୀକୁ ପରିକ୍ରମଣ କରେ । ଏହା ସୂର୍ଯ୍ୟଠାରୁ ୨୭୪୩ ଅୟୁତ ମାଇଲ ଦୂରରେ ସୂର୍ଯ୍ୟଠାରୁ ଅବସ୍ଥିତ । ଏହାର ଗତି ୧୭ଘଣ୍ଟା ମାତ୍ର । ଏହାର ଦୁଇଟି ମାତ୍ର ଉପଗ୍ରହ ବା ଚନ୍ଦ୍ର ଅଛି ।

ଊନବିଂଶ ଶତାବ୍ଦୀରେ ଏହି ଗ୍ରହ ଆବିଷ୍କୃତ ହୋଇଥିବାରୁ ଭାରତୀୟ ଜ୍ୟୋତିଷ ଶାସ୍ତ୍ରରେ ଏହା ସ୍ଥାନ ପାଇନାହିଁ ।

**ପ୍ଲୁଟୋ (Pluto) :** ଗ୍ରୀକ୍ ପୌରାଣିକ ଉପାଖ୍ୟାନ ଅନୁସାରେ ଶନି (Saturn)ଙ୍କ ପୁତ୍ର ନେପ୍‌ଚୁନ୍ (Neptune) ନେପଚ୍ୟୁନଙ୍କ ପୁତ୍ର ପ୍ଲୁଟୋ (Pluto) ପାତାଳ ରାଜ୍ୟର ଅଧିପତି । ତାଙ୍କ ନାମାନୁସାରେ ସୌରଜଗତର ଏହି ନବଦିସ୍କୃତ ଗ୍ରହର ନାମ ଜ୍ୟୋତିଷୀମାନେ ନାମକରଣ କରିଅଛନ୍ତି । ଏହି ଗ୍ରହଟି ସୂର୍ଯ୍ୟଠାରୁ ସର୍ବାପେକ୍ଷା ଅଧିକ ଦୂରବର୍ତ୍ତୀ । ଏହା ଜ୍ୟୋତିଷୀ ଲୋଓ୍ୱେଲ (Lowell) ଓ ପିକେରିଂ (Pickering) । ଏହାର ଅସ୍ତିତ୍ୱ ସେମାନେ କାଳ୍ପନିକ ଭାବରେ ଗଣନା କରିଥିଲେ । ଏହି ଗ୍ରହର ଫଟୋଗ୍ରାଫ ପ୍ରଥମେ ଖ୍ରୀଃ ୧୯୩୦ରେ ଗୃହୀତ ହୋଇଥିଲା । ଏହାର ଦୂରତ୍ୱ ସୂର୍ଯ୍ୟଠାରୁ ୩୭୭ ଅଯୁତ ମାଇଲ । ଏହାର ବ୍ୟାସ ୩୬୦୦ ମାଇଲ । ଏହା ଆକାରରେ ପୃଥିବୀସଦୃଶ । ଏହାର କୌଣସି ଉପଗ୍ରହ ନାହିଁ ବା ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ।

ସୌରଜଗତର ଗ୍ରହମାନଙ୍କ ଉପରେ ନିମ୍ନରେ କେତେକ ଜ୍ଞାତବ୍ୟ ବିବରଣ ଦିଆଗଲା । ସୂର୍ଯ୍ୟଠାରୁ ପୃଥିବୀର ଦୂରତ୍ୱକୁ ୧ ଜ୍ୟୋତିଷୀକ ମାଇଲ (Astronomical mile) ଧରାଗଲେ ତଦନୁସାରେ ଅନ୍ୟାନ୍ୟ ଗ୍ରହର ତୁଳନାମୂଳକ ଦୂରତ୍ୱ ଦିଆଯାଇଛି ।

## ଧୂମକେତୁ ବା ନକ୍ଷତ୍ରଲଞ୍ଜା

ସୌର ଜଗତରେ ଧୂମକେତୁଗୁଡ଼ିକ ଅତି କୌତୂହଳୋଦ୍ଦୀପକ ବସ୍ତୁ । ସେଗୁଡ଼ିକର ଉଜ୍ଜ୍ୱଳ ପୁଚ୍ଛ ଏକ ଆକସ୍ମିକ ବ୍ୟାପାର । ପ୍ରାୟ ୧୦୦୦ ଧୂମକେତୁ ଆବିଷ୍କୃତ ହେଲାଣି । ଦୂରବୀକ୍ଷଣ ଯନ୍ତ୍ର ଆବିଷ୍କୃତ ହେବା ଆଗରୁ ସେଗୁଡ଼ିକର ସଂଖ୍ୟା ପ୍ରାୟ ୪୦୦ ଥିଲା । ଧୂମକେତୁଗୁଡ଼ିକ ଉପରେ ବହୁତ କଥା ଲିଖିତ ହୋଇଛି ।

## କେତୋଟି ପ୍ରସିଦ୍ଧ ଧୂମକେତୁ

୧ । ହେଲିଙ୍କ ଧୂମକେତୁ : ଏହା ପ୍ରଥମେ ଖ୍ରୀଃ ୨୮୦ ରେ ଜଣାଯାଇଥିଲା । ଖ୍ରୀଃ ୧୬୮୨ରେ ହେଲି ସାହେବ ଏହା ଉପରେ ଆଲୋଚନା କରିଥିବାରୁ ଏହା ତାଙ୍କ ନାମରେ ପରିଚିତ । ଏହା ପ୍ରାୟ ୭୫ ବର୍ଷରେ ଥରେ ଆବିର୍ଭୂତ ହୁଏ । ଏହା ୧୯୧୦ ରେ ଦେଖାଯାଇଥିଲା ।

୨ । ୟିକେୟ ସେକି ଧୂମକେତୁ : ଏହି ଧୂମକେତୁ ଜାପାନର ଦୁଇ ଜଣ ଜ୍ୟୋତିଷୀ ଆବିଷ୍କାର କରିଥିଲେ । ୧୯୬୫ ଅକ୍ଟୋବର ୨୧ ତାରିଖରେ ଏହା ପୃଥିବୀର ନିକଟବର୍ତ୍ତୀ ହୋଇଥିଲା । ଏହା ଏକ ଅତ୍ୟୁଜ୍ଜ୍ୱଳ ଧୂମକେତୁ । ଏହାର ପୁଚ୍ଛ ୭୦ ଅଯୁତ ମାଇଲ ଲମ୍ବ ।

ଅକ୍‌ସଫୋର୍ଡ଼ ସ୍କୁଲ ଏଟ୍‌ଲାସ ବା ମାନଚିତ୍ର ବହିରେ ସୌରଜଗତର ଚିତ୍ରରେ ଅନେକଗୁଡ଼ିଏ ଧୂମକେତୁର କକ୍ଷ ପ୍ରଦତ୍ତ ହୋଇଛି ।

| ୧. ମୋଟାମୋଟି | ବୁଧ | ଶୁକ୍ର | ପୃଥିବୀ | ମଙ୍ଗଳ | ବୃହସ୍ପତି, | ଶନି, | ୟୁରେନାସ, | ନେପଚୁନ୍‌ | ପ୍ଲୁଟୋ |
|---|---|---|---|---|---|---|---|---|---|
| ଦୂରତ୍ୱ | ୦.୩୮୭ | ୦.୭୨ | ୧.୦ | ୧.୫୨ | ୫.୨ | ୯.୭୩ | ୧୯.୨ | ୩୦.୧ | ୩୯.୬ |
| ୨. ନକ୍ଷତ୍ର କାଳ | ୮୮ | ୨୨୫ | ୩୬୫ | ୬୮୭ | ୧୨ | ୨୯ | ୮୪ | ୧୬୫ | ୨୪୯ |
| | (ଦିନ) | (ଦିନ) | (ଦିନ) | (ଦିନ) | (ବର୍ଷ) | (ବର୍ଷ) | (ବର୍ଷ) | (ବର୍ଷ) | (ବର୍ଷ) |
| ୩. ଆକାର | ୦.୦୫ | ୦.୮ | ୧ | ୦.୧ | ୩୧୮ | ୯୫ | ୧୫ | ୮୬ | ୦.୯ |
| ୪. ଉପଗ୍ରହ | ୦ | ୦ | ୧ | ୨ | ୧୨ | ମୁଦ୍ରିକା | ୫ | ୨ | ୦ |
| ୫. ଆବର୍ତ୍ତକ | ୮୮ | ଧୀର | ୨୪ | ୨୫ | ୧୦ | ୧୦ | ୧୧ | ୧୨ | |
| | ଦିନ | ଗତି | ଘଣ୍ଟା | ଘଣ୍ଟା | ଘଣ୍ଟା | ଘଣ୍ଟା | ଘଣ୍ଟା | ଘଣ୍ଟା | |

ବର୍ଷର ବିଭିନ୍ନ ସମୟରେ ଉଲ୍‌କାପିଣ୍ଡ ଅତ୍ୟୁଜ୍ଜ୍ୱଳ ଆଲୋକ ବିକିରଣ ଆକାରରେ ଦେଖାଯାଏ । ମାଟିରେ ପଡ଼ିଥିବା ଉଲ୍‌କାପିଣ୍ଡଗୁଡ଼ିକ ଗୋଲାକାର ଓ ତାହା ନାନାବିଧ ଉପାଦାନରେ ଗଠିତ ।

ଏହି ପ୍ରବନ୍ଧ ଲେଖିବା ପାଇଁ ମେକ୍‌ଡୋନେଲ୍‌ (Macdonell) ଓ କିଥ୍‌ (Kith)ଙ୍କ ଲିଖିତ ବେଦିକ୍‌ ଇଣ୍ଡେକସ୍‌ (Vedic Index) ଗ୍ରନ୍ଥରୁ ଅନେକ ଉପାଦାନ ସଂଗ୍ରହ କରିଛି । ତତ୍‌ପରେ ପି.ଏଲ୍‌. ଭଟନଗରଙ୍କ ଲିଖିତ ଦି ଇଉନିଭାରସ (The Universe) ଓ ଡାକ୍ତର ଗୁରୁପ୍ରସାଦ ମହାନ୍ତି, ଏଫ୍‌.ଆର୍‌.ଏ. ଏସ୍‌ଙ୍କ ଲିଖିତ ଓ୍ୱାନ୍‌ ଓ୍ୱାର୍ଲଡ (One world) ପୁସ୍ତକରୁ ଅନେକ ଉପାଦାନ ସଂଗ୍ରହ କରିଛି । ତା ଛଡ଼ା ଡାକ୍ତର ମେଘନାଦ ସାହାଙ୍କ ସଭାପତିତ୍ୱରେ ବସିଥିବା India Calender Reforms Committee Report ରୁ ମଧ୍ୟ ଅନେକ ଉପାଦାନ ପାଇଛି । ଏହିସବୁ ଗ୍ରନ୍ଥାକାରଙ୍କଠାରେ ମୋର କୃତଜ୍ଞତା ପ୍ରକାଶ କରୁଛି ।



ଝଙ୍କାର, ୨୨/୨

# ଓଡ଼ିଶାର ପ୍ରତ୍ନତତ୍ତ୍ୱରେ ପଞ୍ଚୋପାସନାର ନିଦର୍ଶନ

ହିନ୍ଦୁଧର୍ମର ପଞ୍ଚଦେବତା ଗଣେଶ, ଭାସ୍କର, ବିଷ୍ଣୁ, ଶିବ ଓ ଦୁର୍ଗା । ଏହି ପଞ୍ଚଦେବତାଙ୍କ ନାମରେ ଓଡ଼ିଶାର ପଞ୍ଚକ୍ଷେତ୍ର ଯଥା ପୁରୀ (ବିଷ୍ଣୁକ୍ଷେତ୍ର), ଭୁବନେଶ୍ୱର (ଶିବକ୍ଷେତ୍ର), କୋଣାର୍କ (ଅର୍କକ୍ଷେତ୍ର), ବିରଜା (ଶକ୍ତିକ୍ଷେତ୍ର) ଓ ମହାବିନାୟକ ପର୍ବତ (ଗଣେଶ କ୍ଷେତ୍ର) ପ୍ରସିଦ୍ଧି ଲାଭ କରିଛି । ତା'ଛଡ଼ା ଓଡ଼ିଶାର ବିଭିନ୍ନ ସ୍ଥାନରେ ଏହି ପଞ୍ଚଦେବତାଙ୍କ ମଧ୍ୟରୁ ଏକ ବା ଏକାଧିକ ଦେବତାଙ୍କର ମନ୍ଦିର ମଧ୍ୟ ଅଛି । ପଞ୍ଚଦେବତାଙ୍କୁ ଭାଗ କଲେ ଶିବ, ଦୁର୍ଗା ବା ଶକ୍ତି ଓ ଗଣେଶ ଏ ତିନି ଦେବତା ଏକ ବଂଶ ଅନ୍ତର୍ଭୁକ୍ତ । ବାକି ସୂର୍ଯ୍ୟ ଓ ବିଷ୍ଣୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଦେବତା । ତଳେ ପ୍ରତ୍ୟେକ ଦେବତାଙ୍କର ବିଷୟ ଆଲୋଚିତ ହେଉଛି ।

ବିଷ୍ଣୁକ୍ଷେତ୍ର ହିସାବରେ ପୁରୀ ଭାରତବିଦିତ ହେଲେ ମଧ୍ୟ ଏଠାର ପ୍ରଧାନ ଦେବତା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମନ୍ଦିର ବେଢ଼ାରେ ଲକ୍ଷ୍ମୀଙ୍କର ସ୍ୱତନ୍ତ୍ର ମନ୍ଦିର ଅଛି । ମନ୍ଦିରର ତିନୋଟି ପାର୍ଶ୍ୱ ଦେବତା ଦଶାବତାର ଅନ୍ତର୍ଭୁକ୍ତ ବରାହ, ନୃସିଂହ ଓ ବାମନ ବା ତ୍ରିବିକ୍ରମ । ଏଠାରେ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ନାହିଁ; କିନ୍ତୁ ପୁରୀ ଜିଲ୍ଲାର ପ୍ରାଚୀ ନଦୀ କୂଳରେ ଓ କାକଟପୁର ଅଞ୍ଚଳରେ ବହୁସଂଖ୍ୟକ ବିଷ୍ଣୁମୂର୍ତ୍ତି ଦେଖିବାକୁ ମିଳେ । ଓଡ଼ିଶାର ଅନ୍ୟତ୍ର ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି ପୂଜିତ ହେଉଥିବାର ମଧ୍ୟ ଦେଖାଯାଏ । ଯାଜପୁର ଶକ୍ତିକ୍ଷେତ୍ର ହେଲେ ମଧ୍ୟ ଏଠାରେ ବରାହନାଥ ନାମକ ବିଷ୍ଣୁ ମନ୍ଦିର ଅଛି । ବ୍ରାହ୍ମଣୀନଦୀର ପାର୍ବତ୍ୟାଞ୍ଚଳ ଉପତ୍ୟକାରେ ତାଳଚେର ନିକଟରେ ବ୍ରାହ୍ମଣୀ ଗର୍ଭରେ ଥିବା ଏକ ବାଲୁକା ପ୍ରସ୍ତରରେ ଅତିକାୟ ଅନନ୍ତଶାୟୀ ବିଷ୍ଣୁମୂର୍ତ୍ତି ଖୋଦିତ ଅଛି । ଏହା ମାପରେ ୫୦ ଫୁଟରୁ ଅଧିକ । ଏହି ମୂର୍ତ୍ତିର ନାଭିକମଳରେ ବ୍ରହ୍ମାମୂର୍ତ୍ତି ମଧ୍ୟ ଖୋଦିତ ଅଛି । ତାଳଚେରରୁ ୧୮ ମାଇଲ ଦୂରବର୍ତ୍ତୀ ଭୀମକାଣ୍ଡ ଗ୍ରାମରେ ଗୁଳ୍ମ ଜଙ୍ଗଲରେ ଥିବା ଦୀର୍ଘକାୟ ଅନନ୍ତଶାୟୀ ବିଷ୍ଣୁମୂର୍ତ୍ତି ଏକ ବାଲୁକା ପାହାଡ଼ରେ ଖୋଦିତ ଅଛି । ଏହାର ମାପ ୪୦ ଫୁଟରୁ ଅଧିକ । ମୂର୍ତ୍ତିଗୁଡ଼ିକ ସ୍ୱତନ୍ତ୍ର ଭାବରେ ପୂଜା ଯେ ପାଉଥିଲା, ଏହା ନିଃସନ୍ଦେହ । ମାତ୍ର କିଏ ଉପାସନାର କର୍ତ୍ତା ଥିଲା ? ଏପରି ଦୁର୍ଗମ ସ୍ଥାନରେ ଏତେ ଉଚ୍ଚ କାରୁକାର୍ଯ୍ୟ ଓ ଭାସ୍କର୍ଯ୍ୟମଣ୍ଡିତ ମୂର୍ତ୍ତି

କିଏ ସ୍ଥାପନ କରିଥିଲା, ତାହା ଜାଣିବାର ଉପାୟ ନାହିଁ । ମୂର୍ତ୍ତି ଗଠନପ୍ରଣାଳୀରୁ ଅନୁମିତ ହୁଏ ଯେ, ଏଗୁଡ଼ିକର ନିର୍ମାଣକାଳ ଖ୍ରୀଷ୍ଟୀୟ ନବମ ଦଶମ ଶତାବ୍ଦୀ ।

ମହାନଦୀ ଉପତ୍ୟକାରେ ବୌଦ ଅନ୍ତର୍ଭୁକ୍ତ ଗନ୍ଧରାଡ଼ୀଠାରେ ମାଧବ ଓ ସିଦ୍ଧେଶ୍ୱର ଶିବ ଯୁଗ୍ମ ମନ୍ଦିର ପ୍ରସିଦ୍ଧ । ନୀଳମାଧବ ମୂର୍ତ୍ତିଟି ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି । ସିଦ୍ଧେଶ୍ୱର ଶିବଲିଙ୍ଗ । ଖଣ୍ଡପଡ଼ାର କଣ୍ଟିଲୋଠାରେ ନୀଳମାଧବ ଓ ସିଦ୍ଧେଶ୍ୱର ଶିବଙ୍କର ମନ୍ଦିର ଅଛି । ବିଷ୍ଣୁ ମୂର୍ତ୍ତିର ନାମ ନୀଳମାଧବ କାହିଁକି ହୋଇଛି ମୁଁ କହିପାରିବି ନାହିଁ । ଗନ୍ଧରାଡ଼ୀର ମୂର୍ତ୍ତି ଓ ମନ୍ଦିର ଭୁବନେଶ୍ୱର ପରଶୁରାମେଶ୍ୱର ମନ୍ଦିରର ସମକାଳୀନ ।

ବିଷ୍ଣୁ ଉପାସନା ସହିତ ଓଡ଼ିଶାରେ ଭାଗବତ ଧର୍ମର ଗୋପୀନାଥ ଉପାସନା ଖ୍ରୀଷ୍ଟୀୟ ଦ୍ୱାଦଶ-ତ୍ରୟୋଦଶ ଶତାବ୍ଦୀରେ ପ୍ରଚଳିତ ହୋଇଥିଲା । ବାଲେଶ୍ୱରଠାରୁ ପୁରୀ ମଧ୍ୟରେ ବହୁସଂଖ୍ୟକ ଗୋପୀନାଥ ମୂର୍ତ୍ତି ଏକ ସମୟରେ ବିଶିଷ୍ଟ ଭାବରେ ପୂଜିତ ହେଉଥିଲା । ଏବେ କେବଳ ରେମୁଣା ନିକଟବର୍ତ୍ତୀ କ୍ଷୀରଚୋରା ଗୋପୀନାଥ ପୂଜିତ ହେଉଅଛନ୍ତି । ବାଲିଅନ୍ତାରେ ଅଳ୍ପଦିନ ପୂର୍ବେ ନଦୀଗର୍ଭରୁ ଏକ ଗୋପୀନାଥ ମୂର୍ତ୍ତି ବାହାରିବାରୁ ସେଠାରେ ଏକ ମନ୍ଦିରରେ ତାଙ୍କୁ ଅବସ୍ଥାପିତ କରାଯାଇ ପୂଜା ବ୍ୟବସ୍ଥା ହୋଇଛି । ହୀରାପୁର ଗ୍ରାମର ମୂର୍ତ୍ତିଙ୍କର ମନ୍ଦିର ନାହିଁ; ସରକଣା ଗ୍ରାମର ମୂର୍ତ୍ତିଙ୍କର ମଧ୍ୟ ମନ୍ଦିର ନାହିଁ । ଦାଣ୍ଡମୁକୁନ୍ଦପୁରରେ ଗୋପୀନାଥଙ୍କର ମନ୍ଦିର ଅଛି ଓ ସେ ମୂର୍ତ୍ତି ପୂଜିତ ହେଉଛନ୍ତି । ସତ୍ୟବାଦୀ ସାକ୍ଷୀଗୋପାଳ ପ୍ରକୃତରେ ଏକ ଗୋପୀନାଥ ମୂର୍ତ୍ତି । ପୁରୀର ମାର୍କଣ୍ଡେଶ୍ୱର ପୁଷ୍କରିଣୀର ଦକ୍ଷିଣ ପାର୍ଶ୍ୱରେ ଏକ ଗୋପୀନାଥ ମୂର୍ତ୍ତି ଅଛନ୍ତି । କଟକ ଜିଲ୍ଲାର ଧର୍ମଶାଳାରୁ ଓଡ଼ିଶା ମିଉଜିୟମ୍‌କୁ ଅଣାଯାଇଥିବା ଗୋପୀନାଥ ମୂର୍ତ୍ତିରେ ଅଭିନବ ବାରାଣସୀ କଟକର ଭାସ୍କର ନାମ ଖୋଦିତ ଅଛି । ଏହାଛଡ଼ା ଉପକୂଳବର୍ତ୍ତୀ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାରେ ଗୋପୀନାଥ ମୂର୍ତ୍ତି ଥିବାର ଅନୁମିତ ହୁଏ, ମାତ୍ର ତାହାର ଅନୁସନ୍ଧାନ କରାଯାଇନାହିଁ । ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନଗୁଡ଼ିକର ପଶ୍ଚିମ ପାର୍ଶ୍ୱରେ ସର୍ବତ୍ର ଗୋପୀନାଥ ମୂର୍ତ୍ତି ପୂଜିତ ହୁଏ । ସମସରପୁରର ମୂର୍ତ୍ତି ପ୍ରାଚୀନ ବୋଲି ମୋର ମନେ ହୋଇଥିଲା ।

ଗୋପୀନାଥ ମୂର୍ତ୍ତି ପରେ ରାଧାକୃଷ୍ଣ ମୂର୍ତ୍ତିର କେତେ ଯେ ମନ୍ଦିର ଓଡ଼ିଶାରେ ଅଛି, ତାହାର ସଂଖ୍ୟା ନାହିଁ । ବିଷ୍ଣୁଙ୍କର ଦଶାବତାର ମୂର୍ତ୍ତି ଯେ ପୂଜିତ ହେଉଥିଲା, ତାହାର ଅନୁସନ୍ଧାନ କରାଯାଇନାହିଁ । ଭୁବନେଶ୍ୱରର ଅନନ୍ତବାସୁଦେବ ମନ୍ଦିରରେ ଶିଳାବ୍ରହ୍ମ ଅନନ୍ତ ବାସୁଦେବ ଓ ସୁଭଦ୍ରା ମୂର୍ତ୍ତି ପୂଜିତ ହେଉଛନ୍ତି । ଏ ପ୍ରକାର ମୂର୍ତ୍ତି ନିମାପଡ଼ାର ନିକଟବର୍ତ୍ତୀ ପୁରୀ ଜିଲ୍ଲାର ଏକ ସ୍ଥାନରେ ପୂଜା ପାଉଥିଲା, ମନ୍ଦିର ଥିଲା, ମାତ୍ର ସେ ମନ୍ଦିର ଭାଙ୍ଗିଯାଇଛି ।

ବୈଷ୍ଣବ ଧର୍ମର ରାମ, ସୀତା ଓ ଲକ୍ଷ୍ମଣ ମୂର୍ତ୍ତି କେତେକ ସ୍ଥାନରେ ପୂଜିତ ହୁଅନ୍ତି । କେତେକ ସ୍ଥାନରେ ରଘୁନାଥ ମୂର୍ତ୍ତି ମଧ୍ୟ ଅଛି ।

କଟକ ଜିଲ୍ଲାର ଧର୍ମଶାଳାଠାରେ ଏକ ଅଦ୍ଭୁତ କଳ୍ପନାଯୁକ୍ତ ବିଷ୍ଣୁ-କୃଷ୍ଣମୂର୍ତ୍ତି ଥିଲା । ତାହା ଓଡ଼ିଶା ମିଉଜିଅମକୁ ଅଣାଯାଇଛି । ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି ପରିବର୍ତ୍ତିତ ହୋଇ ମୂର୍ତ୍ତିର ଉପର ଦୁଇ ହାତରେ ଶଙ୍ଖଚକ୍ର ଓ ତଳଦୁଇ ହାତରେ ବଂଶୀ ଶୋଭାପାଉଛି । ଏହି ମୂର୍ତ୍ତିଟି ବିଷ୍ଣୁ ମୂର୍ତ୍ତିରୁ କିପରି କୃଷ୍ଣ ମୂର୍ତ୍ତି କଳ୍ପିତ ହେଲା, ତାହାର ପ୍ରମାଣ ଦିଏ. । ଏପରି ମୂର୍ତ୍ତି ଭାରତରେ ଅନ୍ୟତ୍ର ଥିବାର ମୋତେ ଜଣାନାହିଁ । ପୁରୀରେ ଜଗନ୍ନାଥବଲ୍ଲଭ ମଠରେ ଏ ପ୍ରକାର ପରିବର୍ତ୍ତନକାଳୀନ ମୂର୍ତ୍ତି ଅଛି । ଶୁଣିଛି, ଷଡ଼ଭୁଜ ଗୌରାଙ୍ଗ ମଠରେ ଆଉ ଗୋଟିଏ ବିଷ୍ଣୁକୃଷ୍ଣ ମୂର୍ତ୍ତି ଅଛି । ଏହି ବିଷ୍ଣୁକୃଷ୍ଣ ମୂର୍ତ୍ତିରୁ ଗୋପୀନାଥ ମୂର୍ତ୍ତିର ସୃଷ୍ଟି ହୋଇଛି । ବୈଷ୍ଣବ ଧର୍ମର ମୂର୍ତ୍ତି ସଂଖ୍ୟା ସ୍ଥିର କରିବା କଠିନ । ଏହାର ବ୍ୟାପକତା ଆଜି ଅଧିକ । ମୁଁ କେତୋଟି ମାତ୍ର ବୈଷ୍ଣବ ଧର୍ମର ମୂର୍ତ୍ତିର କଥା ଏଠାରେ ଉଲ୍ଲେଖ କଲି ।

ସୂର୍ଯ୍ୟ-ପଞ୍ଚ ଦେବତାଙ୍କ ମଧ୍ୟରୁ ସୂର୍ଯ୍ୟ ଅନ୍ୟତମ । ଓଡ଼ିଶାର କୋଣାର୍କ ସୂର୍ଯ୍ୟମନ୍ଦିର ବିଶ୍ୱପ୍ରସିଦ୍ଧ । ଦୁର୍ଭାଗ୍ୟବଶତଃ ମନ୍ଦିର ଭାଙ୍ଗି ପଡ଼ିଥିବାରୁ ତତ୍‌ସହିତ ସୂର୍ଯ୍ୟ ମୂର୍ତ୍ତି ଖଣ୍ଡବିଖଣ୍ଡ ହୋଇଯାଇଛି । ଏପରି ଭାବରେ ସେ ଭଗ୍ନାବଶେଷରୁ ମନ୍ଦିରରେ ପୂଜିତ ସୂର୍ଯ୍ୟ ମୂର୍ତ୍ତିର ଭଗ୍ନାଙ୍ଗ ମଧ୍ୟ ଖଣ୍ଡିଏ ଆବିଷ୍କୃତ ହୋଇଛି । କୋଣାର୍କ ମନ୍ଦିରର ନିର୍ମାଣ କାଳ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ । କିନ୍ତୁ ଓଡ଼ିଶାରେ ବାଲେଶ୍ୱର ଜିଲ୍ଲାର ଭଦ୍ରକ ମହକୁମା ଅନ୍ତର୍ଭୁକ୍ତ ପାଳିଆ ଗ୍ରାମରେ 'ବିରଞ୍ଚିନାରାୟଣ' ନାମକ ସୂର୍ଯ୍ୟ ମନ୍ଦିରର ଗଠନ କାଳ ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀ । ପାଳିଆ ମନ୍ଦିରର ସ୍ଥାପତ୍ୟ ନୂତନ ପ୍ରକାରର । ମନ୍ଦିରର ଚାରିପାର୍ଶ୍ୱରେ ଚାରୋଟି ପ୍ରବେଶ ଦ୍ୱାର ଅଛି ଓ ମନ୍ଦିରରେ ପୂଜିତ ଦେବତା ମୂର୍ତ୍ତିଙ୍କର ଚାରୋଟି ମୁଖ ଚାରିଆଡ଼କୁ ଅଛି । ସୂର୍ଯ୍ୟଙ୍କର ଧ୍ୟାନରୁ ଜଣାଯାଏ ଯେ, ସୂର୍ଯ୍ୟ 'ବିରଞ୍ଚିନାରାୟଣ ଶଙ୍କରାତ୍ମନେ' ଅର୍ଥାତ୍ ସୂର୍ଯ୍ୟ, ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ଅଟନ୍ତି । ଏଣୁ ମନେହୁଏ ଯେ, ପାଳିଆର ଚତୁର୍ମୁଖ ସୂର୍ଯ୍ୟ ମୂର୍ତ୍ତି ଏହି ଚାରି ଦେବତାଙ୍କର ପ୍ରତୀକ । ଏହି ମନ୍ଦିର ଓ ଦେବତାଙ୍କର ବିଶେଷତ୍ୱ ଓଡ଼ିଶାବାସୀ ଜାଣନ୍ତି ନାହିଁ କହିଲେ ଚଳେ । କେତେକ ବର୍ଷ ପୂର୍ବେ ଜମିଦାର ଭାସ୍କରଚନ୍ଦ୍ର ମହାପାତ୍ରଙ୍କ ଆନୁକୂଲ୍ୟରେ ମନ୍ଦିରଟି ଯେପରି ଭାବରେ ଚୂନ କାମ ହୋଇଛି, ସେଥିରେ ମନ୍ଦିରର କାରୁକାର୍ଯ୍ୟ ଓ ସ୍ଥାପତ୍ୟ ସଂପୂର୍ଣ୍ଣ ଭାବରେ ନଷ୍ଟ କରିଦିଆଯାଇଛି । ପ୍ରାଚୀନ ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ ଅତି କଠିନ ବ୍ୟାପାର । ମନ୍ଦିରର ଗୌରବ ଅକ୍ଷୁଣ୍ଣ ରଖି ପୁନରୁଦ୍ଧାର କାର୍ଯ୍ୟ ନ କଲେ ମନ୍ଦିର ଭାଙ୍ଗିପଡ଼ିଲେ ମଧ୍ୟ ତାହାର ଗୌରବ ନଷ୍ଟ ହୁଏନାହିଁ ।

ଆଜିକାଲି କିଏ ଏପରି ଦାତା ଓ ପୃଷ୍ଠପୋଷକ ଅଛି ଯେ, ପାଳିଆ ମନ୍ଦିରର ଲୁପ୍ତ ଗୌରବ ଉଦ୍ଧାର ପାଇଁ ମରାମତି ହୋଇଥିବା କାର୍ଯ୍ୟକୁ ଭାଙ୍ଗି ବୈଜ୍ଞାନିକ ରୀତିରେ ପୁନର୍ଗଠନ କାର୍ଯ୍ୟ କରିବ ?

କୋଣାର୍କ ଓ ପାଳିଆ ବ୍ୟତୀତ ଅନ୍ୟତ୍ର ସୂର୍ଯ୍ୟ ମୂର୍ତ୍ତିର ଉପାସନା ପ୍ରଚଳିତ ଥିବା ମନ୍ଦିର କଥା ମୁଁ ଜାଣେନାହିଁ । ମନ୍ଦିରର ଶୋଭାବର୍ଦ୍ଧନକାରୀ ସୂର୍ଯ୍ୟ ମୂର୍ତ୍ତି ଭୁବନେଶ୍ୱରର କେତେକ ମନ୍ଦିରରେ ଦେଖାଯାଏ; ମାତ୍ର ପୂଜା ପାଉଥିବା ସ୍ୱତନ୍ତ୍ର ସୂର୍ଯ୍ୟ ମୂର୍ତ୍ତି ବଡ଼ ବିରଳ ।

ଶିବ-- ଓଡ଼ିଶାର ଭୁବନେଶ୍ୱର ଏକ ପ୍ରସିଦ୍ଧ ଶୈବକ୍ଷେତ୍ର । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର କାରୁକାର୍ଯ୍ୟ ଓ ଗଠନଚାତୁର୍ଯ୍ୟ ପୃଥିବୀବିଖ୍ୟାତ କହିଲେ ଚଳେ । ଭୁବନେଶ୍ୱରରେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀ କାଳ ମଧ୍ୟରେ ଅନେକ ଶିବ ମନ୍ଦିର ନିର୍ମିତ ହୋଇଥିଲା । କିନ୍ତୁ ଭୁବନେଶ୍ୱରର ସବୁ ମନ୍ଦିରର ଦେବତା ଶିବଲିଙ୍ଗ । ଓଡ଼ିଶାର ସର୍ବତ୍ର ଶିବଲିଙ୍ଗଙ୍କ ମନ୍ଦିର ଦେଖାଯାଏ -- ସେଥିରେ କେତେକ ପ୍ରାଚୀନ ଓ କେତେକ ଆଧୁନିକ । ଭୁବନେଶ୍ୱରର ସମସାମୟିକ ଶିବଲିଙ୍ଗ ମନ୍ଦିର ମଧ୍ୟରେ ବଡ଼ମ୍ବା ଅନ୍ତର୍ଭୁକ୍ତ । ସିଂହନାଥ, ବୌଦ୍ଧଗଡ଼ର ରାମନାଥ, ଗନ୍ଧରାଡ଼ୀର ସିଦ୍ଧେଶ୍ୱର ଓ ତାଳଚେରର ଉତ୍ତର-ପଶ୍ଚିମ ଦିଗବର୍ତ୍ତୀ ପ୍ରାୟ ୩୦ ମାଇଲ ଦୂରରେ ଅବସ୍ଥିତ ବଜ୍ରକୂଟଠାରେ ଏକ ପ୍ରାଚୀନ ଶିବ ମନ୍ଦିର ବିଦ୍ୟମାନ ଅଛି । ଏଥିସହିତ ମୟୂରଭଞ୍ଜ ଜିଲ୍ଲାର ଖିଚିଙ୍ଗର ଦୁଇ ଶିବଲିଙ୍ଗ ମନ୍ଦିରର କଥା ଉଲ୍ଲେଖ କରାଯାଇପାରେ । କଟକ ଓ ପୁରୀ ଜିଲ୍ଲାର ଉପକୂଳବର୍ତ୍ତୀ ଅଞ୍ଚଳରେ ଇଷ୍ଟକ ନିର୍ମିତ ଆର୍ଯ୍ୟ ଭାରତୀୟ ସ୍ଥାପତ୍ୟର ବହୁ ଶିବ ମନ୍ଦିର ଅଛି, ଯାହାର ଫଟୋଚିତ୍ର ନେଇ ବର୍ଣ୍ଣନା ଅଦ୍ୟାପି କେହି କରିନାହାନ୍ତି । ଯାଜପୁରରେ ମଧ୍ୟ ଅଷ୍ଟଶମ୍ଭୁ ମନ୍ଦିର ଅଛି । ସେହିପରି ଚୌଦ୍ୱାରରେ ଅଷ୍ଟଶମ୍ଭୁ ମନ୍ଦିର ଅଛି । ଯାଜପୁର ଓ ଚୌଦ୍ୱାର ଏକ ସମୟରେ ଓଡ଼ିଶାର ରାଜଧାନୀ ଥିଲା । ଚୌଦ୍ୱାରରେ କେତୋଟି ଶିବ ମନ୍ଦିରରେ ଶିବଲିଙ୍ଗ ନାହିଁ -- କେବଳ ଯୋନିପୀଠ ଅଛି । ଲିଙ୍ଗବିହୀନ ଶିବଗୁଡ଼ିକୁ ପାତାଳଫୁଟା ମହାଦେବ କହନ୍ତି । ପୁରୀର ଲୋକନାଥ ମନ୍ଦିରରେ ମଧ୍ୟ ଶିବଲିଙ୍ଗ ନାହିଁ । ଏ ପ୍ରକାର ଶିବୋପାସନା କେଉଁ ଶାସ୍ତ୍ର ବିଧିରେ ପ୍ରଚଳିତ ହୋଇଥିଲା, ତାହା ମୁଁ ଜାଣେନାହିଁ । ଓଡ଼ିଶାର ସବୁ ବଡ଼ ବଡ଼ ଗ୍ରାମରେ ଶିବଲିଙ୍ଗ ମନ୍ଦିର ଅଛି ।

ଶିବଲିଙ୍ଗ ପୂଜା ଯେପରି ସର୍ବତ୍ର ଦେଖାଯାଏ, ଶିବ ମୂର୍ତ୍ତିର ପୂଜା ସେହିପରି ଅତି ବିରଳ କହିଲେ ଚଳେ । ଅଳ୍ପ କେତେକ ବର୍ଷ ପୂର୍ବେ କେନ୍ଦୁଝର ଜିଲ୍ଲାର ଅମନପାଟ

ଗ୍ରାମରୁ ଖ୍ରୀଷ୍ଟୀୟ ୩ୟ-୪ର୍ଥ ଶତାବ୍ଦୀ ଲିପିଯୁକ୍ତ ନଟରାଜ ଶିବମୂର୍ତ୍ତି ଆବିଷ୍କୃତ ହୋଇଛି । ଏବେ ପ୍ରାଚୀନ ଶିବ ପୂଜାର ପ୍ରମାଣ ଅନ୍ୟତ୍ର ମିଳିନାହିଁ । ଭଞ୍ଜରାଜାମାନଙ୍କ ରାଜଧାନୀ ଖିଚିଙ୍ଗରେ ହରମୂର୍ତ୍ତି ପୂଜିତ ହେଉଥିଲା । ମନ୍ଦିର ଭାଙ୍ଗି ପଡ଼ିବାରୁ ହରମୂର୍ତ୍ତି ମଧ୍ୟ ଭାଙ୍ଗି ଖଣ୍ଡବିଖଣ୍ଡ ହୋଇଥିଲା । ସେଠାରେ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ କାର୍ଯ୍ୟ ଆରମ୍ଭ ପୂର୍ବରୁ ହରପୂଜାର କଥା କେହି ଜାଣି ନଥିଲେ । ଭଙ୍ଗାମୂର୍ତ୍ତି ଖଣ୍ଡ ଏକତ୍ର କରିବାରେ ଗୋଟିଏ ଶିବମୂର୍ତ୍ତି ମୁଖ ବାହାରିଲା । ଭଗ୍ନ ଖଣ୍ଡଗୁଡ଼ିକ ଏକତ୍ର କରିବାରେ ଏକ ଶିବମୂର୍ତ୍ତିର ଅନେକାଂଶ ମିଳିଲା । ଏ ଶିବମୂର୍ତ୍ତି ପୂଜିତ ଦେବତା ବା ଅନ୍ୟ କିଛି ତାହା ଜାଣିବାର ଉପାୟ ନଥିଲା । ରାଜା ରଣଭଞ୍ଜଙ୍କ ତମ୍ବପଟାରେ ଲିଖିତ ଥିବାର ଦେଖାଗଲା ଯେ, ତାଙ୍କର ଏକ ବିରୁଦ ଥିଲା -- "ହରଚରଣାର ଧନକ୍ଷୟିତ ପାପ" ଅର୍ଥାତ୍ ଯେଉଁ ରାଜା ହରଚରଣ ଆରାଧନା କରି ପାପ କ୍ଷୟ କରୁଥିଲେ । 'ହର-ଚରଣ' ଶବ୍ଦଟିକୁ ହରମୂର୍ତ୍ତିର କଳ୍ପନା ସହଜ ହେଲା । ତେଣୁ ସ୍ଥିର କରାଗଲା ଯେ, ଖିଚିଙ୍ଗର ପ୍ରଧାନ ଭଗ୍ନ ମନ୍ଦିରରେ ହରମୂର୍ତ୍ତି ସ୍ଥାପିତ ଥିଲା ଓ ହରମୂର୍ତ୍ତିର ଉଭୟ ପାର୍ଶ୍ୱରେ ଚଣ୍ଡ ଓ ପ୍ରଚଣ୍ଡ ମୂର୍ତ୍ତି ଥିଲା, ଯେଉଁ ମୂର୍ତ୍ତିଗୁଡ଼ିକୁ ମଧ୍ୟ ଯୋଡ଼ି ଯୋଡ଼ି ମୂର୍ତ୍ତି ରୂପେ ଠିଆ କରାଗଲା । ସମଗ୍ର ଓଡ଼ିଶାରେ, ଏପରିକି ସମଗ୍ର ଭାରତରେ ହରମୂର୍ତ୍ତି ପୂଜାର କ୍ଷେତ୍ର ଅନ୍ୟତ୍ର ଜଣାଯାଇନାହିଁ । ତମ୍ବପଟାରେ ଉଲ୍ଲେଖ ଥିବାରୁ ହରମୂର୍ତ୍ତିର ସମୟ ସହଜରେ ସ୍ଥିରୀକୃତ ହୋଇପାରିଲା ଖ୍ରୀଷ୍ଟୀୟ ୧୦ମ-୧୧ଶ ଶତାବ୍ଦୀ ।

ଖିଚିଙ୍ଗରେ ହରପାର୍ବତୀଙ୍କ ଯୁଗଳ ମୂର୍ତ୍ତି ଉମାମହେଶ୍ୱର ପୂଜିତ ହେଉଥିଲା ଓ ତିନୋଟି ଉମା ମହେଶ୍ୱର ମୂର୍ତ୍ତି ସେଠାରେ ମିଳିଅଛି । ଉମାମହେଶ୍ୱର ମୂର୍ତ୍ତି ମଧ୍ୟ ଓଡ଼ିଶାର କେତେକ ସ୍ଥାନରେ ମିଳିଛି । ମାତ୍ର ସେ ସ୍ଥାନଗୁଡ଼ିକର ନାମ ମୋର ବର୍ତ୍ତମାନ ମନେପଡ଼ୁନାହିଁ । ଅଗ୍ନି ପୁରାଣରେ ଉମା-ମହେଶ୍ୱର ମୂର୍ତ୍ତି ଗଠନର ବ୍ୟବସ୍ଥା ଅଛି ।

ଦୁର୍ଗା-ଶିବଙ୍କର ପତ୍ନୀଙ୍କ ବହୁ ନାମ ମଧ୍ୟରେ ଉମା, ପାର୍ବତୀ ଓ ଦୁର୍ଗା ପ୍ରସିଦ୍ଧ । ଅମରକୋଷରେ ପାର୍ବତୀଙ୍କର ୧୭ଟି ନାମ ଅଛି । ଲିଙ୍ଗରାଜ ମନ୍ଦିର ବେଢ଼ାରେ ଥିବା ପାର୍ବତୀ ମନ୍ଦିରର ଦେବତା ଅନ୍ନପୂର୍ଣ୍ଣା ବା ବିଶ୍ୱେଶ୍ୱରୀ । ଓଡ଼ିଶାରେ ଯାଜପୁର ଶାକ୍ତକ୍ଷେତ୍ର । ଏଠାର ପ୍ରଧାନ ଦେବୀ ବିରଜା । ଏଣୁ ଯାଜପୁରର ଅନ୍ୟ ନାମ ବିରଜାକ୍ଷେତ୍ର । ମୁସଲମାନ ଅମଳରେ ଯାଜପୁର ମୁସଲମାନମାନଙ୍କ ଦ୍ୱାରା ବହୁଳ ଭାବରେ ଧ୍ୱସ୍ତବିଧ୍ୱସ୍ତ ହୋଇଥିଲା । ଏଣୁ ଏ ସ୍ଥାନର ପ୍ରକୃତ ପ୍ରତ୍ନତତ୍ତ୍ୱ ନିରୂପଣ କରିବା କଠିନ । ଯାଜପୁରରେ ଛୋଟ ଓ ବଡ଼ ଆକାରରେ ଦୁଇ ପ୍ରକାର ସପ୍ତମାତୃକା ମୂର୍ତ୍ତି ଅଛି । ଛୋଟ ସପ୍ତମାତୃକା ମୂର୍ତ୍ତିଗୁଡ଼ିକ ନଦୀ

ଗର୍ଭରୁ ଉଦ୍ଧାର କରି ବୈତରଣୀ ନଦୀକୂଳରେ ଏକ ଆଧୁନିକ ମନ୍ଦିରରେ ରଖାଯାଇଛି । ଚଣ୍ଡୀପୁରାଣରେ ସପ୍ତମାତୃକାର ବର୍ଣ୍ଣନା ଅଛି । ବଡ଼ ସପ୍ତମାତୃକା ମୂର୍ତ୍ତିଗୁଡ଼ିକ ମଧ୍ୟରୁ କେବଳ ତିନୋଟି ମାତ୍ର ମୂର୍ତ୍ତି ଭୂଗର୍ଭରୁ ଉଦ୍ଧାର କରାଯାଇ ଏସ୍.ଡି.ଓ.ଙ୍କ ବଙ୍ଗଳା ହତାରେ ରଖାଯାଇଛି । ଏହି ଅତିକାୟ ମାତୃକାମୂର୍ତ୍ତିଗୁଡ଼ିକର ଭାସ୍କର୍ଯ୍ୟ ଅତୁଳନୀୟ । ଯାଜପୁରର ବିରଜା ମୂର୍ତ୍ତି ଦ୍ୱିଭୁଜା ମହିଷାସୁରମର୍ଦ୍ଦିନୀ ମୂର୍ତ୍ତି । ଦ୍ୱିଭୁଜା ମହିଷାସୁରମର୍ଦ୍ଦିନୀ ମୂର୍ତ୍ତି ବଡ଼ ବିରଳ । କଟକ ଜିଲ୍ଲାର ମାହାଙ୍ଗା ନିକଟବର୍ତ୍ତୀ ନୂଆଗାଁଠାରେ ଏକ ଅତିକାୟ ମହିଷମର୍ଦ୍ଦିନୀ ମୂର୍ତ୍ତି ଏକ ଘରଘରେ ପୂଜିତ ହେଉଛି । ସମଗ୍ର ଓଡ଼ିଶାରେ ଏତେ ବଡ଼ ଦେବୀ ମୂର୍ତ୍ତି ମୁଁ ଅନ୍ୟତ୍ର ଦେଖିନାହିଁ । ଏଠାରେ ଏହି ଦେବୀ ପ୍ରଧାନ ଦେବତା ରୂପେ ପୂଜିତ । ମାତ୍ର ମହିଷାସୁରମର୍ଦ୍ଦିନୀ ମୂର୍ତ୍ତି ଶିବ ମନ୍ଦିରର ପାର୍ଶ୍ୱଦେବତା ରୂପେ ସବୁ ଶିବମନ୍ଦିରରେ ଉତ୍ତରପାର୍ଶ୍ୱରେ ସ୍ଥାନ ପାଇଥାଏ । ସପ୍ତମାତୃକା ମୂର୍ତ୍ତି ମଧ୍ୟରୁ ଚାମୁଣ୍ଡା ଅନ୍ୟତମ । କିନ୍ତୁ ଚାମୁଣ୍ଡା ସ୍ୱତନ୍ତ୍ର ଦେବୀ ରୂପେ ପୂଜିତ ହୁଅନ୍ତି । ଭୁବନେଶ୍ୱରର ବୈତାଳ ଦେଉଳର ମୂର୍ତ୍ତି ଚାମୁଣ୍ଡା, ମୋହିନୀ ଦେଉଳର ମୂର୍ତ୍ତି ମହିଷାସୁରମର୍ଦ୍ଦିନୀ । ମୟୂରଭଞ୍ଜ ଜିଲ୍ଲାରେ ପେଡ଼ାଗଡ଼ି, ବଡ଼ସାହି ଓ କେଶରପୁରଠାରେ ଚାମୁଣ୍ଡା ଦେବୀଙ୍କର ସ୍ୱତନ୍ତ୍ର ମନ୍ଦିର ଥିଲା । କେବଳ କେଶରପୁରର ମନ୍ଦିର ଅକ୍ଷୁଣ୍ଣ ଅଛି । କାକଟପୁରର ମଙ୍ଗଳା ମୂର୍ତ୍ତି ଓଡ଼ିଶାରେ ପ୍ରସିଦ୍ଧ । ପୁରୀ ଜିଲ୍ଲାର ଚୌରାଶି ମନ୍ଦିର ଓ ବାରାହୀ ଦେବୀ ମୂର୍ତ୍ତି ପ୍ରସିଦ୍ଧ । ସେହିପରି ଗୋପ ନିକଟବର୍ତ୍ତୀ ଗଙ୍ଗେଶ୍ୱରୀ ମନ୍ଦିରର ଦେବୀ ମୂର୍ତ୍ତି ମଧ୍ୟ ପ୍ରସିଦ୍ଧ । କଟକ ଜିଲ୍ଲାର ବୈଦ୍ୟେଶ୍ୱରଠାରେ ମହିଷମର୍ଦ୍ଦିନୀ ମନ୍ଦିରର ଗଠନ ବୈତଳ ମନ୍ଦିର ସଦୃଶ । ଓଡ଼ିଶାରେ ଶାକ୍ତମନ୍ଦିରର ସଂଖ୍ୟା ଅକଳନ । ଖିଚିଙ୍ଗର ମୂର୍ତ୍ତି ମଧ୍ୟ ଚାମୁଣ୍ଡା । ଭୁବନେଶ୍ୱରର ଅଦୂରବର୍ତ୍ତୀ ହୀରାପୁରର ଚୌଷଠୀ ଯୋଗିନୀ ମନ୍ଦିର ଓ ମୂର୍ତ୍ତି ସମଗ୍ର ଭାରତରେ ପ୍ରାଚୀନତମ । ବଲାଙ୍ଗିର ଜିଲ୍ଲାର ରାଣୀପୁର ଝରିଆଲଠାରେ ମଧ୍ୟ ଆଉ ଗୋଟିଏ ଚୌଷଠୀ ଯୋଗିନୀ ମନ୍ଦିର ଅଛି । ଓଡ଼ିଶାର ସବୁ ଜିଲ୍ଲାରେ ଅନୁସନ୍ଧାନ କରି ଶାକ୍ତ ଦେବୀ ମୂର୍ତ୍ତି ଓ ମନ୍ଦିରର ତାଲିକା ପ୍ରସ୍ତୁତ କଲେ ଏକ ବିରାଟ ଗ୍ରନ୍ଥ ହେବ । ମୁଁ ଠିକେ ଠିକେ କେତୋଟି ମୂର୍ତ୍ତି ଓ ମନ୍ଦିରର କଥା ଏଠାରେ ଉଲ୍ଲେଖ କରିଛି ମାତ୍ର ।

ଗଣେଶ -- କଟକ ଜିଲ୍ଲାର ମହାବିନାୟକ ପର୍ବତ ଗଣେଶକ୍ଷେତ୍ର ନାମରେ କଥିତ ହୁଏ । ଏଠାରେ ଗଣେଶଙ୍କର ଏକ କ୍ଷୁଦ୍ର ମନ୍ଦିର ଓ ମୂର୍ତ୍ତି ଅଛି । ଅନ୍ୟ ଚାରୋଟି କ୍ଷେତ୍ର ସହିତ ତୁଳନା କଲେ ଗଣେଶ କ୍ଷେତ୍ର ଅତି କ୍ଷୁଦ୍ର । କିନ୍ତୁ ଗଣେଶ ପଞ୍ଚଦେବତାଙ୍କ ମଧ୍ୟରେ ସର୍ବପ୍ରଥମ ପୂଜାର ଅଧିକାରୀ । ପ୍ରତ୍ୟେକ ପ୍ରାଚୀନ ଶିବ ମନ୍ଦିରର ଦକ୍ଷିଣ ପାର୍ଶ୍ୱର

ପାର୍ଶ୍ୱଦେବତା ଗଣେଶ । ସ୍ୱତନ୍ତ୍ର ଭାବରେ ପୂଜା ପାଉଥିବା ଗଣେଶ ମୂର୍ତ୍ତି ମହାବିନାୟକ ଛଡ଼ା ଅନ୍ୟତ୍ର ବିରଳ । ମୟୂରଭଞ୍ଜର ରାଜାମାନଙ୍କ ବିରୁଦରେ ଅଛି "ହେରମ୍ବ ଦେବତାଙ୍କ ବରପ୍ରସାଦ" । ଏଥିରୁ ଅନୁମିତ ହେଉଛି ଯେ, ଏ ଗଣେଶ ମୂର୍ତ୍ତି ସ୍ୱତନ୍ତ୍ର ଦେବତା ରୂପେ ପୂଜିତ ହେଉଥିଲେ । ଖିଚିଙ୍ଗ ମିଉଜିଅମରେ ଏକ ବିରାଟକାୟ ଗଣେଶ ମୂର୍ତ୍ତି ଅଛି, ଯାହାକି କୌଣସି ମନ୍ଦିରର ପାର୍ଶ୍ୱଦେବତା ରୂପେ ଗଠିତ ହୋଇଥିବାର ଅନୁମାନ କରାଯାଇ ନପାରେ । ଏହି ମୂର୍ତ୍ତିର ମନ୍ଦିର ଖିଚିଙ୍ଗରେ କେଉଁଠାରେ ଥିଲା, ତାହା ଆବିଷ୍କୃତ ହୋଇନାହିଁ । ଲଣ୍ଡନର ବ୍ରିଟିଶ ମିଉଜିୟମରେ ଓଡ଼ିଶାରୁ ଏକ ଗଣେଶ ମୂର୍ତ୍ତି ସ୍ଥାନାନ୍ତରିତ ହୋଇ ସେଠାରେ ସ୍ଥାନ ପାଇଛି । ଏହି ମୂର୍ତ୍ତିର ବିଶେଷତ୍ୱ ଯେ, ମୂର୍ତ୍ତିର ବାମ ଜଙ୍ଘରେ ଏକ ନାରୀମୂର୍ତ୍ତି ଉପବିଷ୍ଟ । ଏପରି ଆଉ ଗୋଟିଏ ମୂର୍ତ୍ତି ଓଡ଼ିଶାରେ ମୁଁ ଦେଖିନାହିଁ । ସେହି ମୂର୍ତ୍ତିର ଏକ ପ୍ରତିମୂର୍ତ୍ତି ପ୍ଲେଷ୍ଟର ଅଫ୍ ପେରିସରେ ଗଢ଼ାଇ ବିଲାତରୁ ଆଣି ଓଡ଼ିଶା ମିଉଜିଅମରେ ରଖିଲେ ଭଲ ହୁଅନ୍ତା । ପୁରୀର ଜଗନ୍ନାଥ ମନ୍ଦିରର ପଛପଟେ ଏକ କ୍ଷୁଦ୍ର ମନ୍ଦିରରେ ଗୋଟିଏ ଗଣେଶ ମୂର୍ତ୍ତି ଅଛି, ଯାହାର ନାମ 'ଭଣ୍ଡ ଗଣେଶ' । ଏ ମୂର୍ତ୍ତି ଏକ ଅଶ୍ଳୀଳ ମୂର୍ତ୍ତି । ବୋଧହୁଏ ଏହା ଏକ ତାନ୍ତ୍ରିକ ମୂର୍ତ୍ତି ।



ସମାଜ, ୧୯୭୦ ଜୁଲାଇ

# ଓଡ଼ିଶାରେ ମନ୍ଦିର-ସ୍ଥାପତ୍ୟର ବିଭାଗୀକରଣ

'ମାନସାର' ଅନୁସାରେ ଓଡ଼ିଶାର ମନ୍ଦିର-ସ୍ଥାପତ୍ୟର ବିଭାଗୀକରଣ କରିବା ପୂର୍ବରୁ ଓଡ଼ିଶାର ଶିଳ୍ପଶାସ୍ତ୍ର ଅନୁସାରେ ଓଡ଼ିଶାର ମନ୍ଦିର ସ୍ଥାପତ୍ୟର ଯେଉଁ ନାମକରଣ ହୋଇଅଛି, ତାହାର ଆଲୋଚନା ଏକାନ୍ତ ଆବଶ୍ୟକ । ଓଡ଼ିଶାର ଶିଳ୍ପଶାସ୍ତ୍ରରେ ମନ୍ଦିର-ସ୍ଥାପତ୍ୟର ଯେଉଁ ସବୁ ସ୍ୱତନ୍ତ୍ର ନାମ ଅଛି, ତାହାର ଆଲୋଚନା ପୂର୍ବବର୍ତ୍ତୀ ଲେଖକମାନେ କରି ନଥିଲେ । ଏବେ ଶ୍ରୀମତୀ ଦେବଳା ମିତ୍ର 'ଭୁବନେଶ୍ୱର' ଓ 'କୋଣାର୍କ' ବହିରେ ସେହି ସବୁ ଶବ୍ଦ ବ୍ୟବହାର କରି ଓଡ଼ିଶାର ଶିଳ୍ପଶାସ୍ତ୍ରର ଗୌରବ ରକ୍ଷା କରି ଧନ୍ୟବାଦର ପାତ୍ରୀ ହୋଇପାରିଛନ୍ତି ।

ଓଡ଼ିଶାର ଶିଳ୍ପଶାସ୍ତ୍ର ଅନୁସାରେ ଓଡ଼ିଶାରେ ଥିବା ମନ୍ଦିର ସ୍ଥାପତ୍ୟର ସ୍ୱତନ୍ତ୍ର ନାମକରଣ ହୋଇଅଛି କେବଳ ମନ୍ଦିର ଶିଖର-ଗଠନର ସ୍ଥାପତ୍ୟ ଉପରେ । ଯଥା --

୧ । ବର୍ଗାକାର କେବଳ ଏକମାତ୍ର ମନ୍ଦିର ଭିତ୍ତିରୁ ଉପରକୁ ଗଠିତ ହୋଇଥିବା ବାଡ଼ର ଶେଷ ପରେ ବକ୍ରାକୃତି ଶିଖର କ୍ରମଶଃ ସଙ୍କୁଚିତ ହୋଇ ମନ୍ଦିରର ବେକି ପର୍ଯ୍ୟନ୍ତ ଗଠନରେ ଯେଉଁ ରେଖା ସୃଷ୍ଟି ହୁଏ, ତଦନୁସାରେ ମନ୍ଦିର-ଶିଖରର ନାମ ରେଖ ଦେଉଳ । ବେକି ଗୋଲାକାର, ବେକ ଉପରେ ଅଁଳାବେଣୀ ବା ଆମଳକ ଶିଳା ଗୋଲାକାର, ତଦୁପରି 'ଖପୁରୀ' ଗୋଲାକାର ଓ 'ଖପୁରୀ' ଉପରେ କଳସ ମଧ୍ୟ ଗୋଲାକାର ।

୨ । ମନ୍ଦିର ସମ୍ମୁଖରେ ଥିବା ମୁଖଶାଳାର ଆକାର ଆୟତକାର ହୋଇ ବାଡ଼ର ଶେଷ ପର୍ଯ୍ୟନ୍ତ ଗଠିତ ହୋଇ ତଦୁପରି ଗୃହଘର ଛପର ସଦୃଶ ଛାତ ଗଠିତ ହେବାର ଦେଖାଯାଏ । ଏହି ଛାତରେ ଶିଖର ନାହିଁ ।

୩ । ବର୍ଗାକାର ମନ୍ଦିର ସମ୍ମୁଖରେ ବର୍ଗାକାର ମୁଖଶାଳା ବା ବିମାନ ସମ୍ମୁଖରେ ଜଗମୋହନର ଶିଖର ବାଡ଼ ଉପରୁ ଊର୍ଦ୍ଧ୍ୱକୁ ଓଲଟ ପାହାଚ ସଦୃଶ ଗଠିତ ହୋଇ କ୍ରମଶଃ ସଙ୍କୁଚିତ ହେଇଥିବା ଗୋଲାକାର ବେକି ପର୍ଯ୍ୟନ୍ତ ଉଠିଥାଏ । ଏହି ଶିଖରର ନାମ 'ପୀଢ଼' ଜଗମୋହନର ଶିଖର ନାମ ପୀଢ଼ ଦେଉଳ । ମନ୍ଦିର ଓ ଜଗମୋହନର ଆକାରଭେଦରେ କ୍ଷୁଦ୍ର ଜଗମୋହନର ପୀଢ଼ଗୁଡ଼ିକ ଏକ ସ୍ତର ବିଶିଷ୍ଟ, ଯଥା ମୁକ୍ତେଶ୍ୱର, ବ୍ରହ୍ମେଶ୍ୱର ଓ

ମେଘେଶ୍ୱର । ମନ୍ଦିରର ଓ ଜଗମୋହନର ଆକାର ୍ଦ ହୋଇଥିବାରୁ ଏହି ପୀଢ଼ଗୁଡ଼ିକ ଲିଙ୍ଗରାଜ ଜଗମୋହନରେ ଓ ପୁରୀ ଜଗନ୍ନାଥ ମନ୍ଦିରର ଜଗମୋହନରେ ଦ୍ୱି-ସ୍ତରବିଶିଷ୍ଟ । କୋଣାର୍କ ବିମାନ ସର୍ବୋଚ୍ଚ ଥିବାରୁ ତାହାର ଜଗମୋହନ ମଧ୍ୟ ତଦ୍ରୂପ ଗଠିତ ହୋଇଥିବାରୁ ସେଠାରେ ପୀଢ଼ଗୁଡ଼ିକ ତ୍ରିସ୍ତର ବିଶିଷ୍ଟ ହୋଇ ଗଠିତ ହୋଇଅଛି । ଲିଙ୍ଗରାଜ ମନ୍ଦିରର ପାର୍ବତୀ ଦେଉଳ ଓ ଅନନ୍ତ-ବାସୁଦେବ ଦେଉଳ କୋଣାର୍କ ପରେ ଗଠିତ ହୋଇଥିବାରୁ କ୍ଷୁଦ୍ର ଜଗମୋହନ ହେଲେ ମଧ୍ୟ ଏଠାରେ ଦ୍ୱିସ୍ତର ପୀଢ଼ ସବୁ ଗଠିତ ହୋଇଥିବାର ଦେଖାଯାଏ ।

୪ । ଆୟତାକାର ଭିତ୍ତି ଚିତ୍ରଯୁକ୍ତ ଆୟତାକାର ବାଡ଼ ଉପରେ ଅର୍ଦ୍ଧ ଗୋଲାକାର ବା ଗୋରୁଗାଡ଼ିରେ ଲାଗିଥିବା ବାଉଁଶ ଖ୍ୟଣ୍ଡା ବା ତାଳପତ୍ରରେ ଗଠିତ ଅର୍ଦ୍ଧ ଗୋଲାକାର ଗଠନ ସଦୃଶ ମନ୍ଦିର ଶିଖର ଗଠିତ ହୋଇଥିଲେ ସେ ଶିଖର ନାମ ଓଡ଼ିଶା ଶିଳ୍ପଶାସ୍ତ୍ରରେ 'ଖାଖରା' ଶିଖର ବୋଲି ବର୍ଣ୍ଣିତ ଅଛି ।

ଓଡ଼ିଶାର 'ରେଖ ଓ ପୀଢ଼' ଦେଉଳଗୁଡ଼ିକୁ ମନ୍ଦିର ସ୍ଥାପତ୍ୟର ଐତିହାସିକ ଜେମସ୍ ଫାର୍ଗୁସନ ଏବଂବିଧ ମନ୍ଦିରଗୁଡ଼ିକର ନାମ ଆର୍ଯ୍ୟ ଭାରତୀୟ (Indo-Arya) ବୋଲି ଆଖ୍ୟା ଦେଇଅଛନ୍ତି ।

ଓଡ଼ିଶାର ମନ୍ଦିର-ସ୍ଥାପତ୍ୟରେ 'ରେଖ', 'ପୀଢ଼' ଓ 'ଖାଖର' ଏହି ତିନିପ୍ରକାର ଶିଖର ଥିବାରୁ ମନ୍ଦିର ସ୍ଥାପତ୍ୟର ନାମକରଣ ତଦନୁସାରେ ହୋଇଅଛି । ଓଡ଼ିଶାର ମନ୍ଦିର ସ୍ଥାପତ୍ୟରେ ଭିତ୍ତିଚିତ୍ରର ଆକାର ଉପରେ ମନ୍ଦିର ସ୍ଥାପତ୍ୟ ନାମକରଣ ହୋଇନାହିଁ । ମାନସାରରେ କିନ୍ତୁ ଏହାର ଓଲଟା ମନ୍ଦିର ସ୍ଥାପତ୍ୟ ନାମକରଣ ଭିତ୍ତିଚିତ୍ର ଉପରେ ହୋଇଅଛି ।

ଡାକ୍ତର ପ୍ରସନ୍ନକୁମାର ଆଗ୍ରର୍ଯ୍ୟ ଭାରତୀୟ ପ୍ରସିଦ୍ଧ ଶିଳ୍ପଶାସ୍ତ୍ର 'ମାନସାର' ଗ୍ରନ୍ଥକୁ ଅନେକଗୁଡ଼ିଏ ଭାଗରେ ମୁଦ୍ରିତ କରିଥିଲେ । ତନ୍ମଧ୍ୟରୁ ୩ ଭାଗରେ 'ମାନସାର' ଗ୍ରନ୍ଥର ପାଠ ପାଣ୍ଡୁଲିପିରୁ ନକଲ କରି ଛପାଇ ଥିଲେ; ସେ ବହି ଦେଖିବାର ସୁଯୋଗ ମୁଁ ପାଇନାହିଁ । ତେବେ ମନ୍ଦିର ସ୍ଥାପତ୍ୟ ଉପରେ ଲିଖିତ ନିମ୍ନୋକ୍ତ ଶ୍ଳୋକଟି ୬ଷ୍ଠ ଭାଗର ପୃ.୨୫୮ ରେ ସେ ଉଦ୍ଧୃତ କରିଥିବାର ମୁଁ ତାହା ପାଇଥିଲି । ଏହି ଶ୍ଳୋକଟିକୁ ବାରିପଦା କଲେଜର ତତ୍‌କାଳୀନ ସଂସ୍କୃତ ଅଧ୍ୟାପକ ଶ୍ରୀ ରାଧାମୋହନ ମହାପାତ୍ର ମୋର ଦୃଷ୍ଟିକୁ ଅଣାଇଥିଲେ । ତେଣୁ ମୁଁ ତାଙ୍କଠାରେ ଋଣୀ । ଶ୍ଳୋକଟିର ପାଠ ତଳେ ଦିଆଗଲା --

ବେଦାସ୍ରଂ ନାଗରଂ ପ୍ରୋକ୍ତମ୍ ।
ବସ୍ୱସ୍ରଂ ଦ୍ରାବିଡଂ ଭବେତ୍ ।।
ସୁବୃତ୍ତଂ ବେସରଂ ପ୍ରୋକ୍ତମ୍ ।
ଆନ୍ଧ୍ରସ୍ୟାତ୍ତୁ ଷଡ଼ସ୍ରକମ୍ ।।

ଏହି ଶ୍ଳୋକରେ ବର୍ଣ୍ଣିତ ମନ୍ଦିର ସ୍ଥାପତ୍ୟ ମନ୍ଦିର ଭିତିଚିତ୍ରରେ ଥିବା କୋଣଗୁଡ଼ିକ ଉପରେ ମନ୍ଦିର ସ୍ଥାପତ୍ୟର ନାମକରଣ ଯଥା ନାଗର, ଦ୍ରାବିଡ଼, ବେସର ଓ ଆନ୍ଧ୍ର କରାଯାଇଛି ।

ଯେଉଁ ମନ୍ଦିରରେ ଭିତିଚିତ୍ରରେ ଚାରୋଟି କୋଣ ଥିବ, ତାହାର ନାମ 'ନାଗର' ।
ଯେଉଁ ମନ୍ଦିରର ଭିତିଚିତ୍ରରେ ଆଠଟି କୋଣ ଥିବ, ତାହାର ନାମ 'ଦ୍ରାବିଡ଼' ।
ଯେଉଁ ମନ୍ଦିରର ଭିତିଚିତ୍ର ସୁବୃତ୍ତ ତାହାର ନାମ 'ବେସର' ।
ଯେଉଁ ମନ୍ଦିରର ଭିତିଚିତ୍ରରେ ୬ଟି କୋଣ ଥିବ ତାହାର ନାମ 'ଆନ୍ଧ୍ର' ।

ଜ୍ୟାମିତିକ ବୃତ୍ତରେ କୋଣ ନଥାଏ, ତେଣୁ ବୃତ୍ତ ଗୋଲାକାର । ବେସର ଶବ୍ଦର ମଧ୍ୟ ସେଇ ଅର୍ଥ । ସଂସ୍କୃତ ବ୍ୟସ୍ର (ବିଃ ନାହିଁ ଅସ୍ର = କୋଣ) ଯାହାର କୋଣ ନାହିଁ, ତାହା ସଂସ୍କୃତରେ ବ୍ୟସ୍ର । ସଂସ୍କୃତ ବ୍ୟସ୍ର ଶବ୍ଦର ଅପଭ୍ରଂଶ 'ବେସର' । ଓଡ଼ିଆରେ ସଂସ୍କୃତ 'ବ୍ୟବସାୟ' ଶବ୍ଦ ବେଉସା ରୂପେ ବ୍ୟବହୃତ ହୁଏ ଓ ସଂସ୍କୃତ 'ବ୍ୟବହାର' ଶବ୍ଦ 'ବେଭାର' ରୂପେ ବ୍ୟବହୃତ ହୁଏ । ଏଣୁ 'ବ୍ୟସ୍ର' ଶବ୍ଦର ଅପ୍ରଭଂଶ 'ବ୍ୟସର' । 'ମାନସାର' ଗ୍ରନ୍ଥରେ ବ୍ୟସର ପରି ଏକ ଅପଭ୍ରଂଶ ଶବ୍ଦ ବ୍ୟବହାର ହୋଇଥିବାର କାରଣ କ'ଣ? ଯେଉଁ ଛନ୍ଦରେ ଉପରିଲିଖିତ ଶ୍ଳୋକଟି ରଚିତ ହୋଇଛି, ତହିଁରେ 'ବ୍ୟସ୍ର' ଶବ୍ଦ ବ୍ୟବହୃତ ହୋଇଥିଲେ ଛନ୍ଦ ଭଙ୍ଗ ହେଉଛି । ତେଣୁ 'ବେସର' ଶବ୍ଦର ବ୍ୟବହାର ହୋଇଥିବାର ଅନୁମିତ ହୁଏ ।

ଡାକ୍ତର ପ୍ରସନ୍ନକୁମାର ଆଗ୍ରୱାଲ ଏହି ଶ୍ଳୋକରେ ବ୍ୟବହୃତ 'ନାଗର', 'ଦ୍ରାବିଡ଼' ଓ 'ବେସର' ଶବ୍ଦଗୁଡ଼ିକୁ ଭୌଗୋଳିକ ଓ ଜାତିବାଚକ ଶବ୍ଦରୂପେ ଗ୍ରହଣ କରିଥିଲେ ବୋଲି ମାନସାର ଗ୍ରନ୍ଥର ଷଷ୍ଠଭାଗରେ ଥିବା ତାଙ୍କର ଲେଖାର ନିମ୍ନୋକ୍ତ ଓଡ଼ିଆ ଅନୁବାଦରୁ ଜଣାଯାଏ ।

"ଭାରତରେ ଉତ୍ତରାଞ୍ଚଳ ବା ଆର୍ଯ୍ୟ-ଭାରତୀୟ ଗଠନର ସ୍ଥାପତ୍ୟ ଆର୍ଯ୍ୟ-ଅଧ୍ୟୁଷିତ ସମଗ୍ର ଅଞ୍ଚଳରେ ବ୍ୟାପ୍ତ ଥିଲା; ଯାହାର ସାଧାରଣ ନାମ 'ହିନ୍ଦୁସ୍ଥାନ', ଯାହାକି ତାପ୍ତି ଓ ମହାନଦୀ ନଦୀଦ୍ୱୟର ଉତ୍ତର ଦିଗରେ ଅବସ୍ଥିତ । (ମାନସାର, ୬ଷ୍ଠ ଭାଗ ପୃ. ୨୬୦)

ମେଘେଶ୍ୱର । ମନ୍ଦିରର ଓ ଜଗମୋହନର ଆକାର ୍ର ହୋଇଥିବାରୁ ଏହି ପୀଢ଼ଗୁଡ଼ିକ ଲିଙ୍ଗରାଜ ଜଗମୋହନରେ ଓ ପୁରୀ ଜଗନ୍ନାଥ ମନ୍ଦିରର ଜଗମୋହନରେ ଦ୍ୱି-ସ୍ତରବିଶିଷ୍ଟ । କୋଣାର୍କ ବିମାନ ସର୍ବୋଚ୍ଚ ଥିବାରୁ ତାହାର ଜଗମୋହନ ମଧ୍ୟ ତଦ୍ରୁପ ଗଠିତ ହୋଇଥିବାରୁ ସେଠାରେ ପୀଢ଼ଗୁଡ଼ିକ ତ୍ରିସ୍ତର ବିଶିଷ୍ଟ ହୋଇ ଗଠିତ ହୋଇଅଛି । ଲିଙ୍ଗରାଜ ମନ୍ଦିରର ପାର୍ବତୀ ଦେଉଳ ଓ ଅନନ୍ତ-ବାସୁଦେବ ଦେଉଳ କୋଣାର୍କ ପରେ ଗଠିତ ହୋଇଥିବାରୁ କ୍ଷୁଦ୍ର ଜଗମୋହନ ହେଲେ ମଧ୍ୟ ଏଠାରେ ଦ୍ୱିସ୍ତର ପୀଢ଼ ସବୁ ଗଠିତ ହୋଇଥିବାର ଦେଖାଯାଏ ।

୪ । ଆୟତାକାର ଭିତ୍ତି ଚିତ୍ରଯୁକ୍ତ ଆୟତାକାର ବାଡ଼ ଉପରେ ଅର୍ଦ୍ଧ ଗୋଲାକାର ବା ଗୋରୁଗାଡ଼ିରେ ଲାଗିଥିବା ବାଉଁଶ ସୃଅଡ଼ା ବା ତାଳପତ୍ରରେ ଗଠିତ ଅର୍ଦ୍ଧ ଗୋଲାକାର ଗଠନ ସଦୃଶ ମନ୍ଦିର ଶିଖର ଗଠିତ ହୋଇଥିଲେ ସେ ଶିଖର ନାମ ଓଡ଼ିଶା ଶିଳ୍ପଶାସ୍ତ୍ରରେ 'ଖାଖରା' ଶିଖର ବୋଲି ବର୍ଣ୍ଣିତ ଅଛି ।

ଓଡ଼ିଶାର 'ରେଖ ଓ ପୀଢ଼' ଦେଉଳଗୁଡ଼ିକୁ ମନ୍ଦିର ସ୍ଥାପତ୍ୟର ଐତିହାସିକ ଜେମସ୍ ଫାର୍ଗୁସନ ଏବଂବିଧ ମନ୍ଦିରଗୁଡ଼ିକର ନାମ ଆର୍ଯ୍ୟ ଭାରତୀୟ (Indo-Arya) ବୋଲି ଆଖ୍ୟା ଦେଇଅଛନ୍ତି ।

ଓଡ଼ିଶାର ମନ୍ଦିର-ସ୍ଥାପତ୍ୟରେ 'ରେଖ', 'ପୀଢ଼' ଓ 'ଖାଖର' ଏହି ତିନିପ୍ରକାର ଶିଖର ଥିବାରୁ ମନ୍ଦିର ସ୍ଥାପତ୍ୟର ନାମକରଣ ତଦନୁସାରେ ହୋଇଅଛି । ଓଡ଼ିଶାର ମନ୍ଦିର ସ୍ଥାପତ୍ୟରେ ଭିତ୍ତିଚିତ୍ରର ଆକାର ଉପରେ ମନ୍ଦିର ସ୍ଥାପତ୍ୟ ନାମକରଣ ହୋଇନାହିଁ । ମାନସାରରେ କିନ୍ତୁ ଏହାର ଓଲଟା ମନ୍ଦିର ସ୍ଥାପତ୍ୟ ନାମକରଣ ଭିତ୍ତିଚିତ୍ର ଉପରେ ହୋଇଅଛି ।

ଡାକ୍ତର ପ୍ରସନ୍ନକୁମାର ଆଗ୍ର୍ଯ୍ୟ ଭାରତୀୟ ପ୍ରସିଦ୍ଧ ଶିଳ୍ପଶାସ୍ତ୍ର 'ମାନସାର' ଗ୍ରନ୍ଥକୁ ଅନେକଗୁଡ଼ିଏ ଭାଗରେ ମୁଦ୍ରିତ କରିଥିଲେ । ତନ୍ମଧ୍ୟରୁ ୩ ଭାଗରେ 'ମାନସାର' ଗ୍ରନ୍ଥର ପାଠ ପାଣ୍ଡୁଲିପିରୁ ନକଲ କରି ଛପାଇ ଥିଲେ; ସେ ବହି ଦେଖିବାର ସୁଯୋଗ ମୁଁ ପାଇନାହିଁ । ତେବେ ମନ୍ଦିର ସ୍ଥାପତ୍ୟ ଉପରେ ଲିଖିତ ନିମ୍ନୋକ୍ତ ଶ୍ଳୋକଟି ୬ଷ୍ଠ ଭାଗର ପୃ.୨୫୮ ରେ ସେ ଉଦ୍ଧୃତ କରିଥିବାର ମୁଁ ତାହା ପାଇଥିଲି । ଏହି ଶ୍ଳୋକଟିକୁ ବାରିପଦା କଲେଜର ତତ୍‌କାଳୀନ ସଂସ୍କୃତ ଅଧ୍ୟାପକ ଶ୍ରୀ ରାଧାମୋହନ ମହାପାତ୍ର ମୋର ଦୃଷ୍ଟିକୁ ଅଣାଇଥିଲେ । ତେଣୁ ମୁଁ ତାଙ୍କଠାରେ ଋଣୀ । ଶ୍ଳୋକଟିର ପାଠ ତଳେ ଦିଆଗଲା --

ବେଦାସ୍ରଂ ନାଗରଂ ପ୍ରୋକ୍ତମ୍ ।
ବସ୍ୱସ୍ରଂ ଦ୍ରାବିଡଂ ଭବେତ୍ ।।
ସୁବୃତ୍ତଂ ବେସରଂ ପ୍ରୋକ୍ତମ୍ ।
ଆନ୍ଧ୍ରସ୍ୟାତ୍ତୁ ଷଡ଼ସ୍ରକମ୍ ।।

ଏହି ଶ୍ଳୋକରେ ବର୍ଣ୍ଣିତ ମନ୍ଦିର ସ୍ଥାପତ୍ୟ ମନ୍ଦିର ଭିତ୍ତିଚିତ୍ରରେ ଥିବା କୋଣଗୁଡ଼ିକ ଉପରେ ମନ୍ଦିର ସ୍ଥାପତ୍ୟର ନାମକରଣ ଯଥା ନାଗର, ଦ୍ରାବିଡ଼, ବେସର ଓ ଆନ୍ଧ୍ର କରାଯାଇଛି ।

ଯେଉଁ ମନ୍ଦିରରେ ଭିତ୍ତିଚିତ୍ରରେ ଚାରୋଟି କୋଣ ଥିବ, ତାହାର ନାମ 'ନାଗର' ।
ଯେଉଁ ମନ୍ଦିରର ଭିତ୍ତିଚିତ୍ରରେ ଆଠଟି କୋଣ ଥିବ, ତାହାର ନାମ 'ଦ୍ରାବିଡ଼' ।
ଯେଉଁ ମନ୍ଦିରର ଭିତ୍ତିଚିତ୍ର ସୁବୃତ୍ତ ତାହାର ନାମ 'ବେସର' ।
ଯେଉଁ ମନ୍ଦିରର ଭିତ୍ତିଚିତ୍ରରେ ୬ଟି କୋଣ ଥିବ ତାହାର ନାମ 'ଆନ୍ଧ୍ର' ।

ଜ୍ୟାମିତିକ ବୃତ୍ତରେ କୋଣ ନଥାଏ, ତେଣୁ ବୃତ୍ତ ଗୋଲାକାର । ବେସର ଶବ୍ଦର ମଧ୍ୟ ସେଇ ଅର୍ଥ । ସଂସ୍କୃତ ବ୍ୟସ୍ର (ବିଃ ନାହିଁ ଅସ୍ର = କୋଣ) ଯାହାର କୋଣ ନାହିଁ, ତାହା ସଂସ୍କୃତରେ ବ୍ୟସ୍ର । ସଂସ୍କୃତ ବ୍ୟସ୍ର ଶବ୍ଦର ଅପଭ୍ରଂଶ 'ବେସର' । ଓଡ଼ିଆରେ ସଂସ୍କୃତ 'ବ୍ୟବସାୟ' ଶବ୍ଦ ବେଉସା ରୂପେ ବ୍ୟବହୃତ ହୁଏ ଓ ସଂସ୍କୃତ 'ବ୍ୟବହାର' ଶବ୍ଦ 'ବେଭାର' ରୂପେ ବ୍ୟବହୃତ ହୁଏ । ଏଣୁ 'ବ୍ୟସ୍ର' ଶବ୍ଦର ଅପ୍ରଭଂଶ 'ବ୍ୟସର' । 'ମାନସାର' ଗ୍ରନ୍ଥରେ ବ୍ୟସର ପରି ଏକ ଅପଭ୍ରଂଶ ଶବ୍ଦ ବ୍ୟବହାର ହୋଇଥିବାର କାରଣ କ'ଣ ? ଯେଉଁ ସ୍ଥଳରେ ଉପରିଲିଖିତ ଶ୍ଳୋକଟି ରଚିତ ହୋଇଛି, ତହିଁରେ 'ବ୍ୟସ୍ର' ଶବ୍ଦ ବ୍ୟବହୃତ ହୋଇଥିଲେ ଛନ୍ଦ ଭଙ୍ଗ ହେଉଛି । ତେଣୁ 'ବେସର' ଶବ୍ଦର ବ୍ୟବହାର ହୋଇଥିବାର ଅନୁମିତ ହୁଏ ।

ଡାକ୍ତର ପ୍ରସନ୍ନକୁମାର ଆଚାର୍ଯ୍ୟ ଏହି ଶ୍ଳୋକରେ ବ୍ୟବହୃତ 'ନାଗର', 'ଦ୍ରାବିଡ଼' ଓ 'ବେସର' ଶବ୍ଦଗୁଡ଼ିକୁ ଭୌଗୋଳିକ ଓ ଜାତିବାଚକ ଶବ୍ଦରୂପେ ଗ୍ରହଣ କରିଥିଲେ ବୋଲି ମାନସାର ଗ୍ରନ୍ଥର ଷଷ୍ଠଭାଗରେ ଥିବା ତାଙ୍କର ଲେଖାର ନିମ୍ନୋକ୍ତ ଓଡ଼ିଆ ଅନୁବାଦରୁ ଜଣାଯାଏ ।

"ଭାରତରେ ଉତ୍ତରାଞ୍ଚଳ ବା ଆର୍ଯ୍ୟ-ଭାରତୀୟ ଗଠନର ସ୍ଥାପତ୍ୟ ଆର୍ଯ୍ୟ-ଅଧ୍ୟୁଷିତ ସମଗ୍ର ଅଞ୍ଚଳରେ ବ୍ୟାପ୍ତ ଥିଲା; ଯାହାର ସାଧାରଣ ନାମ 'ହିନ୍ଦୁସ୍ଥାନ', ଯାହାକି ତାପ୍ତି ଓ ମହାନଦୀ ନଦୀଦ୍ୱୟର ଉତ୍ତର ଦିଗରେ ଅବସ୍ଥିତ । (ମାନସାର, ୬ଷ୍ଠ ଭାଗ ପୃ. ୨୬୦)

"ଗୋଟିଏ ବା ଦୁଇଟି ଅପରିହାର୍ଯ୍ୟ ବିଷୟ ବ ୀତ 'ନାଗର' ସ୍ଥାପତ୍ୟର ବୈଶିଷ୍ଟ୍ୟ ଆର୍ଯ୍ୟ-ଅଧ୍ୟୁଷିତ ଅଞ୍ଚଳରେ 'ନାଗର' ବା ଆର୍ଯ୍ୟ-ଭାରତୀୟ ଗଠନ ସହିତ ବସ୍ତୁତଃ ସମାନ ଥିଲା । ଅଁଳା ବା ଆମଳକ ଶିଳାର ଉଲ୍ଲେଖ 'ମାନସାର'ରେ ନାହିଁ; କିନ୍ତୁ ମୂର୍ଦ୍ଧି-ଇଷ୍ଟକ ଆମଳକ ଶିଳାର ଉଦ୍ଦେଶ୍ୟ ସାଧନ କରୁଥିଲା । କଳସ ବା ଶିଖରର ପ୍ରଭେଦକାରୀ ଲକ୍ଷଣ 'ମାନସାର'ରେ ରହି ଏହାର ବର୍ଗାକାର ଗଠନର ସହାୟକ ରୂପେ କାର୍ଯ୍ୟକାରୀ ଥିଲା ।" (ବାର୍ଜେସ ସାହେବଙ୍କ ଲେଖାରୁ ଉଦ୍ଧାର କରି ଡାକ୍ତର ଆଗ୍ରୱାଲ ଲେଖିଅଛନ୍ତି ମାନସାର, ୬ଷ୍ଠ ଭାଗ, ପୃ. ୨୨୧-୬୨)

"ଭୁବନେଶ୍ୱରର ମନ୍ଦିରଗୁଡ଼ିକ ଭାରତର ପଶ୍ଚିମାଞ୍ଚଳର ମନ୍ଦିରଗୁଡ଼ିକରକୁ ପୃଥକ୍ ରୂପେ ସୂଚନା ଦେବାର ପ୍ରମାଣ ଏହାର ଖମ୍ବର ଗଠନରୁ ଜଣାଯାଏ । ସେହି ମନ୍ଦିରଗୁଡ଼ିକର ପ୍ରାଚୀନ ଧରଣର 'ଶିଖର', ଯାହାକି ମୂଳରେ ଉଲ୍ଲମ୍ବ ଥାଇ ଶେଷରେ ବକ୍ରୀକୃତ ହୋଇଅଛି ଓ ପରିଶେଷରେ ଚୂଡ଼ାକୃତି ଗଠନର ସାଦୃଶ୍ୟ ଖ୍ଲୁକ୍ୟ ମନ୍ଦିରର ଶିଖସଦୃଶ କୌଣସି ସାମଞ୍ଜସ୍ୟ ରଖିନାହିଁ ।" (ପୃ. ୨୬୨)

"ଫାର୍ଗୁସନ ସାହେବଙ୍କ ଶ୍ରେଣୀ ବିଭାଗ ଅନୁସାରେ ବାର୍ଜେସ ାହେବ ପୁରୀ, ଭୁବନେଶ୍ୱର ଓ କୋଣାର୍କରେ ଥିବା ମନ୍ଦିରଗୁଡ଼ିକର ଗଠନରୀତିକୁ ଆର୍ ୍ୟ-ଭାରତୀୟ ବା ଉତ୍ତର-ଭାରତୀୟ ଆଖ୍ୟା ଦେଇଅଛନ୍ତି, କିନ୍ତୁ ସେ ସ୍ୱୀକାର କରିଅଛନ୍ତି ଯେ ଏହି ବିଭାଗୀକରଣକୁ ପୁଣି ଅଲଗା ଅଲଗା ଭାଗ କରାଯାଇପାରିବ । 'ମାନସାର' ରେ ଯାହାକୁ 'ବେସର' ଆଖ୍ୟା ଦିଆଯାଇଛି, ତାହାହିଁ ଏହି ଗଠନରୀତି ସହିତ ସମାନ । 'ମାନସାର' ଅନୁସାରେ ମୁଖ୍ୟ ଗଠନରୀତି ହିଁ ଗୋଲାକାର ଓ ଏହାହିଁ ଓଡ଼ିଶାର ମନ୍ଦିର ଓ ମୂର୍ତ୍ତିଗୁଡ଼ିକରେ ସ୍ପଷ୍ଟ ପ୍ରଦର୍ଶିତ ହୋଇଅଛି ।" ମାନସାର - ୬ଷ୍ଠ ଭାଗ (ପୃ. ୨୬୨)

"ନାଗର ନାମକରଣକୁ ଉତ୍ତରଭାରତୀୟ ସହିତ ସମାନ ଧରିବାପାଇଁ ଏକ ବ୍ୟାଖ୍ୟା ଦରକାର, ଯାହାକି ଏଥିପୂର୍ବେ ଏ ଭାବରେ ବ୍ୟବହୃତ ହୋଇ ନଥିଲା ।" (ପୃ. ୨୬୨)

"କିନ୍ତୁ ଏହାର ବ୍ୟବହାର ଗ୍ରାମ, ସହର ଓ ନଦୀନାମରେ ବଙ୍ଗଳା, ବିହାର, ଆଗ୍ରାର ଯୁକ୍ତ ପ୍ରଦେଶ, ରାଜପୁତାନା, ପଞ୍ଜାବ ଓ ଗୁଜୁରାଟ ଅଞ୍ଚଳରେ ପ୍ରାୟ ବ୍ୟବହୃତ ଥିବାର ଦେଖାଯାଏ ।" (ପୃ. ୨୬୨)

"ଭାରତରେ ହିମାଳୟ ପାଦଦେଶ ଉତ୍ତର ଭାରତବର୍ଷଠାରୁ ଦାକ୍ଷିଣାତ୍ୟର ବିନ୍ଧ୍ୟାଚଳ ପର୍ଯ୍ୟନ୍ତ ଭୂଗୋଳ ଆଲୋଚନା କରି ଡାକ୍ତର ଆଗ୍ରୱାଲ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, "ଏହ ବିଶାଳ ଅଞ୍ଚଳକୁ 'ମାନସାର' ସମୟରେ 'ନାଗର' ଆଖ୍ୟା ଦିଆଯାଇଥିଲା ।"

''ଦକ୍ଷିଣ ଓ ପୂର୍ବାଞ୍ଚଳ 'ଦ୍ରାବିଡ଼' ଓ 'ବେରାର' ଆଖ୍ୟାରେ ପରିଚିତ ହୋଇ ମଧ୍ୟ ଏହା ସହିତ ତାମିଲ ଓ ତେଲୁଗୁ ଏବଂ ତତ୍‌ସହିତ ଓଡ଼ିଶାର ଲିପି ସଂଶ୍ଳିଷ୍ଟ ଥିଲା । ଲିପି ଓ ଭାଷା ସଦୃଶ 'ନାଗର' ଦ୍ରାବିଡ଼ ଓ 'ବେସର' ଶବ୍ଦଗୁଡ଼ିକ ସ୍ଥାପତ୍ୟ ଗଠନରେ ବ୍ୟବହୃତ ହୋଇଥିଲା ।'' (ପୃ. ୨୬୩)

ଡାକ୍ତର ପ୍ରସନ୍ନ କୁମାର ଆଚାର୍ଯ୍ୟ 'ମାନସାର' ଗ୍ରନ୍ଥର ରଚନାକାଳ ଖ୍ରୀ: ୫୦୦-୭୦୦ ମଧ୍ୟରେ ସ୍ଥିର କରିଥିଲେ ।

ଉପରଲିଖିତ ଶ୍ଳୋକରେ ବ୍ୟବହୃତ 'ବେସର' ଶବ୍ଦ ଡାକ୍ତର ଆଚାର୍ଯ୍ୟଙ୍କ ଦ୍ୱାରା ଓଡ଼ିଶାର ସ୍ଥାପତ୍ୟରେ ବ୍ୟବହୃତ ହୋଇଥିଲା; କିନ୍ତୁ ଉକ୍ତ ଶ୍ଳୋକରେ ବ୍ୟବହୃତ 'ନାଗର', 'ଦ୍ରାବିଡ଼', 'ବେସର' ଓ 'ଆନ୍ଧ୍ର' ଶବ୍ଦଗୁଡ଼ିକୁ ଡାକ୍ତର ଆଚାର୍ଯ୍ୟ ଭୌଗୋଳିକ ଓ ଜାତିବାଚକ ଅର୍ଥରେ ଗ୍ରହଣ କରିଥିବାରୁ 'ବେସର' ସ୍ଥାପତ୍ୟଯୁକ୍ତ ମନ୍ଦିରଗୁଡ଼ିକର ସ୍ଥାନ ଓଡ଼ିଶା ବୋଲି ସେ ସ୍ଥିର କରିଥିଲେ । ଡାକ୍ତର ଆଚାର୍ଯ୍ୟ 'ନାଗର' ସ୍ଥାପତ୍ୟକୁ ଉତ୍ତର ଭାରତୀୟ, ଦ୍ରାବିଡ଼ ସ୍ଥାପତ୍ୟକୁ ଦକ୍ଷିଣଭାରତୀୟ ଓ ଆନ୍ଧ୍ର ସ୍ଥାପତ୍ୟକୁ ତେଲେଙ୍ଗାନା ଅଞ୍ଚଳ ବୋଲି ସ୍ଥିର କରିଥିଲେ; କିନ୍ତୁ ଶ୍ଳୋକରେ ବ୍ୟବହୃତ ଶବ୍ଦଗୁଡ଼ିକର ଅର୍ଥ ସ୍ଥାପତ୍ୟାଞ୍ଚଳ ଅର୍ଥ କରିଥିଲେ ତାଙ୍କର ଏହି ଭ୍ରମ ହୋଇ ନ ଥାଆନ୍ତା ।

ମନ୍ଦିର ଗଠନର ଭିତ୍ତିଚିତ୍ରର କୋଣ ଉପରେ ଏହି ୪ଟି ଶବ୍ଦ ଶିଳ୍ପଶାସ୍ତ୍ରରେ ବ୍ୟବହୃତ ହୋଇଥିଲା । 'ନାଗର' 'ଦ୍ରାବିଡ଼' ଓ 'ଆନ୍ଧ୍ର' ଶବ୍ଦଗୁଡ଼ିକର ଭୌଗୋଳିକ ଅର୍ଥ ଆମ୍ଭେମାନେ ଶିକ୍ଷା ପାଇଲା ଦିନଠାରୁ ଅଭ୍ୟସ୍ତ । ତେଣୁ ସେଗୁଡ଼ିକର ବିଶେଷ ଅର୍ଥ ପ୍ରତି ଡାକ୍ତର ଆଚାର୍ଯ୍ୟ ଦୃଷ୍ଟି ଦେଇ ନ ଥିଲେ । ବିଶେଷତଃ 'ବେସର' ଶବ୍ଦକୁ ସେ ଯେ ଭୌଗୋଳିକ ଅର୍ଥକରି ଓଡ଼ିଶା ବୋଲି ସ୍ଥିର କଲେ, ତାହା ସହଜରେ ବୁଝାଯାଉନାହିଁ । ଶ୍ଳୋକରେ 'ବେସର' ଶବ୍ଦ ବ୍ୟବହୃତ ହୋଇଥିବା ପଂକ୍ତିରେ 'ସୁବୃତ୍ତ' ଶବ୍ଦଟି ବ୍ୟବହୃତ ହୋଇଅଛି । ଏଥିପ୍ରତି ସେ ଲକ୍ଷ୍ୟ ନ ରଖି ସମଗ୍ର ଶ୍ଳୋକର ଅର୍ଥ ସେ ଆଦୌ ବୁଝିପାରି ନଥିଲେ ବୋଲି ମନେହୁଏ ।

'ମାନସାର' ଶିଳ୍ପଶାସ୍ତ୍ରରେ ଉପରଲିଖିତ ଶ୍ଳୋକରେ ଥିବା 'ନାଗର' 'ଦ୍ରାବିଡ଼' 'ବେସର' ଓ 'ଆନ୍ଧ୍ର' ଶବ୍ଦଗୁଡ଼ିକ ସ୍ଥାପତ୍ୟ ପ୍ରତି କିପରି ପ୍ରଯୁଜ୍ୟ ହୋଇଛି ତାହାର ଆଲୋଚନା ତଳେ ଦିଆଗଲା ।

୧ । ଦେବାସ୍ରଂ ନାଗରଂ ପ୍ରୋକ୍ତମ୍ : - ବେଦ - ୪, ଅସ୍ର =କୋଣ: ଅର୍ଥାତ୍ ଭିତ୍ତିଚିତ୍ରରେ ଚତୁଷ୍କୋଣ ମନ୍ଦିରର ନାମ 'ନାଗର' ।

୨ । ବସ୍ୱସ୍ରଂ ଦ୍ରାବିଡ଼ଂ ଭବେତ୍ : ବସୁ = ୮, ଅସ୍ର = କୋଣ, ଅର୍ଥାତ୍ ଭିତ୍ତିଚିତ୍ରରେ ଅଷ୍ଟକୋଣ ଯୁକ୍ତ ମନ୍ଦିରର ନାମ 'ଦ୍ରାବିଡ଼' ।

୩। ସୁବୃତ୍ତଂ ବେସର ପ୍ରୋକ୍ତମ୍ = ସୁବୃତ୍ତ = ସୁଗୋଲାକାର ଭିତ୍ତିଚିତ୍ରରେ ମନ୍ଦିର ନାମ 'ବେସର' ।

ଏଠାରେ ବ୍ୟବହୃତ 'ବେସର' ଶବ୍ଦଟି ପ୍ରାକୃତ । ଏହାର ସଂସ୍କୃତ ନାମ ବ୍ୟସ୍ର ବା ବି : ନାସ୍ତି, ଅସ୍ର = କୋଣ । ଏଣୁ ଭିତ୍ତିଚିତ୍ରରେ କୋଣ ନଥିବା ମନ୍ଦିର ନାମ ବ୍ୟସ୍ର ବା 'ବେସର' । ଓଡ଼ିଆ ଭାଷାରେ ବେଭାର ଶବ୍ଦ ସଂସ୍କୃତ ବ୍ୟବହାର ଶବ୍ଦରୁ ଉତ୍ପନ୍ନ ଓ ବେଉସାର ଶବ୍ଦ ସଂସ୍କୃତ ବ୍ୟବହାର ଶବ୍ଦରୁ ଉତ୍ପନ୍ନ ହେଲାପରେ 'ବେସର' ଶବ୍ଦ ସଂସ୍କୃତ ବ୍ୟସ୍ର ଶବ୍ଦରୁ ଉତ୍ପନ୍ନ ହେଇଥିବାର ପ୍ରମାଣ । ଶ୍ଳୋକର ଛାନ୍ଦ ରକ୍ଷାପାଇଁ କବି ବ୍ୟସ୍ର ଶବ୍ଦ ପରିବର୍ତ୍ତେ 'ବେସର' ଶବ୍ଦ ବ୍ୟବହାର କରିଥିବାର ଅନୁମିତ ହୁଏ । 'ମାନସାର' ରଚନା ସମୟର 'ବେସର' ଶବ୍ଦ ସଂସ୍କୃତ ରୂପେ ମଧ୍ୟ ବ୍ୟବହୃତ ହେଉଥିଲା ।

୪। ଆନ୍ଧ୍ର ସ୍ୟାତ୍ତୁ ଷଡ଼ସ୍ରକଂ : ଷଡ୍ = ଛଅ ଅସ୍ର = କୋଣ, ବା ମନ୍ଦିରର ଭିତ୍ତିଚିତ୍ରରେ ଷଟ୍‌କୋଣବିଶିଷ୍ଟ ମନ୍ଦିରର ନାମ ଆନ୍ଧ୍ର ।

ଉପରିଲିଖିତ ଆଲୋଚନାରୁ ଜଣାଯାଉଅଛି ଯେ 'ନାଗର', 'ଦ୍ରାବିଡ଼', 'ବେସର' ଓ 'ଆନ୍ଧ୍ର' ଶବ୍ଦଗୁଡ଼ିକରେ କୌଣସି ଭୌଗୋଳିକ ବା ଜାତିବାଚକ ଅର୍ଥ ନାହିଁ । ଏଗୁଡ଼ିକ 'ମାନସାର'ରେ କେବଳ ମନ୍ଦିର ସ୍ଥାପତ୍ୟର ବିଭିନ୍ନ ନାମକରଣ ମାତ୍ର ।

ଓଡ଼ିଶାର 'ରେଖ', 'ପୀଢ଼', 'ଖାଖରା' ଓ ଗୃହଘର ଛାତ ସଦୃଶ ଛାତ ମନ୍ଦିରଗୁଡ଼ିକ ଶିଖର ଭେଦରେ ବିଭକ୍ତ । ଏଣୁ 'ମାନସାର' ଅନୁସାରେ ସେଗୁଡ଼ିକର ନାମକରଣ କରିବାକୁ ହେଲେ ସେ ସବୁ ମନ୍ଦିରର ଭିତ୍ତିଚିତ୍ରର କୋଣ ସଂଖ୍ୟା ଉପରେ ନାମକରଣ କରିବାକୁ ହେବ ।

ଜ୍ୟାମିତିକ ଚାରିକୋଣିଆ କ୍ଷେତ୍ର କେବଳ ବର୍ଗାକାର ଓ ଆୟତକାର କ୍ଷେତରେ ଅଛି । କୋଣହୀନ ସୁବୃତ୍ତ କ୍ଷେତ୍ର କେବଳ ବର୍ତ୍ତୁଳାକାର କ୍ଷେତ୍ରରେ ଥାଏ । ଗଣିତ ଶାସ୍ତ୍ରରେ ୬ ଓ ୮ କୋଣିଆ କ୍ଷେତ୍ରର କିଛି ସ୍ୱତନ୍ତ୍ର ନାମ ନାହିଁ । ତେଣୁ ଭିତ୍ତିଚିତ୍ରରେ ମଧ୍ୟ ସେପରି ମନ୍ଦିର ଦେଖିବାକୁ ମିଳେନାହିଁ । 'ଦ୍ରାବିଡ଼' ଓ 'ଆନ୍ଧ୍ର' ନାମଧେୟ ମନ୍ଦିର ସ୍ଥାପତ୍ୟ ଓଡ଼ିଶାରେ ନଥିବାରୁ ତାହାର ସ୍ଥାପତ୍ୟ ଏକାନ୍ତ ଅଭାବ । ଏଣୁ 'ନାଗର' ଓ 'ବେସର'

ସ୍ଥାପତ୍ୟର ନିଦର୍ଶନ ଯେଉଁ ସବୁ ମନ୍ଦିରରେ ଅଛି, ସେଗୁଡ଼ିକର ଆଲୋଚନା ଏଠାରେ କରାଯାଇଛି ।

୧ । ନାଗର ସ୍ଥାପତ୍ୟ -- ଓଡ଼ିଶାର ସବୁ ବର୍ଗାକାର ଭିତ୍ତିଚିତ୍ରସମ୍ବଳିତ ମନ୍ଦିର ବା ବିମାନର ଶିଖର ସବୁ 'ରେଖ' ଦେଉଳ । ଏହା ଭୁବନେଶ୍ୱରର ରାମେଶ୍ୱର ମନ୍ଦିର ନିକଟସ୍ଥ ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର ମନ୍ଦିରଗୁଡ଼ିକରୁ ଆରମ୍ଭ କରି ଲିଙ୍ଗରାଜ, ପୁରୀର ଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିରରୁ ପ୍ରମାଣିତ ହୁଏ । ବର୍ଗାକାର ଭିତ୍ତିଚିତ୍ରଯୁକ୍ତ ମୁଖଶାଳା ବା ଜଗମୋହନଗୁଡ଼ିକର ଶିଖର ସବୁ 'ପିଢ଼' ଦେଉଳ ଅନ୍ତର୍ଭୁକ୍ତ । ଏଥିରୁ ପ୍ରମାଣିତ ହୁଏ ଯେ ବର୍ଗାକାର ଭିତ୍ତିଚିତ୍ରଯୁକ୍ତ ସବୁ ମନ୍ଦିରର ଶିଖର ରେଖ ଦେଉଳ ଓ ସବୁ ଜଗମୋହନର ଶିଖର ପୀଢ଼ ଦେଉଳ ।

ବର୍ଗାକାର ଭିତ୍ତିଚିତ୍ରଯୁକ୍ତ ବିମାନରେ ଜଗମୋହନ ଆୟତାକାର ହୋଇଥିଲେ, ସେହି ଜଗମୋହନର ଛାତ ଗୃଳଘର ସଦୃଶ ଯଥା ପରଶୁରାମେଶ୍ୱର, ଗନ୍ଧରାଣୀ ଓ ସିଂହନାଥ ମନ୍ଦିର ସବୁ ।

କେବଳ ଆୟତାକାର ମନ୍ଦିରର ଶିଖର ଖାଖରା ଆକାର ଦେଖାଯାଏ । ଯଥା -- ରାମେଶ୍ୱର (ବୈଦେଶ୍ୱର ନିକଟବର୍ତ୍ତୀ), ବୈତାଳ ଦେଉଳ, ଚୌରାଶିର ବାରାହୀ ମନ୍ଦିର, ମଞ୍ଜେଶ୍ୱର ଶିଖରପୁର ଦେଉଳ, ଏହି ମନ୍ଦିରର ମୁଖଶାଳାର ଜଗମୋହନ ଆୟତାକାର ହୋଇଥିଲେ ମଧ୍ୟ ସେଗୁଡ଼ିକର ଛାତ ଗୃଳଘର ସଦୃଶ । 'ମାନସାର' ଶିଳ୍ପଶାସ୍ତ୍ର ଅନୁସାରେ ଏହିସବୁ ମନ୍ଦିର ଚତୁଷ୍କୋଣ ହୋଇଥିବାରୁ ଏଗୁଡ଼ିକ ନାଗର ସ୍ଥାପତ୍ୟ ଅନ୍ତର୍ଭୁକ୍ତ; କିନ୍ତୁ ଏହିସବୁ ମନ୍ଦିର ଶିଖରର ଆକୃତି ଭେଦରେ ଓଡ଼ିଶାର 'ରେଖ' 'ପୀଢ଼' ଓ ଗୃଳଘର ସଦୃଶ ।

କୋଣାର୍କ ରାସ୍ତାରେ ଅବସ୍ଥିତ ଗୋପ ନିକଟବର୍ତ୍ତୀ ବୟାଳିଶବାଟିରେ ଥିବା ବିମାନର ଭିତ୍ତିଚିତ୍ର ଆୟତାକାର ହେତୁ ତାହାର ଶିଖର 'ଶିଖରା' ବା ଅର୍ଦ୍ଧବୃତ୍ତାକାର । କିନ୍ତୁ ଏହାର ଜଗମୋହନର ଭିତ୍ତିଚିତ୍ର ବର୍ଗାକାର ହୋଇଥିବାରୁ ଏହାର ଶିଖର ପିଢ଼ ଦେଉଳ । ଏଠାରେ ଏକ ନିୟମର ବ୍ୟତିକ୍ରମ ଦେଖାଯାଏ ।

ଭଦ୍ରକ ନିକଟବର୍ତ୍ତୀ ପାଳିଆବିନ୍ଧାର ସୂର୍ଯ୍ୟ ମନ୍ଦିରରେ ଗ୍ରୋଟି ପ୍ରବେଶ ଦ୍ୱାର ଅଛି ଓ ମନ୍ଦିରର ଶିଖର ରେଖଦେଉଳ । ବମ୍ବେର ବିଦ୍ୟାଭବନ ଦ୍ୱାରା ପ୍ରକାଶିତ ଭାରତବାସୀଙ୍କର ଇତିହାସ ଓ ସଂସ୍କୃତି (History and Culture of the Indian

People) ୫ମ ଭାଗର ପୃ. ୫୭୩ରେ ପ୍ରଫେସର ସରସୀ କୁମାର ସରସ୍ୱତୀ ଲେଖିଛନ୍ତି ଯେ ଖାଜୋରହୋରେ ବ୍ରହ୍ମାଙ୍କର ମନ୍ଦିର ଓ ମୃତାଙ୍ଗ (ମୃତ୍ୟୁଞ୍ଜୟ) ଶିବମନ୍ଦିର ଦୁଇଟି ଚତୁର୍ମୁଖ । ଏହି ମନ୍ଦିରଗୁଡ଼ିକର ଭିତ୍ତିଚିତ୍ର ୭ମ ଓ ୮ମ ନକ୍‌ସାରେ ସେ ଦେଇଅଛନ୍ତି । କିନ୍ତୁ ମନ୍ଦିରର ଶିଖର କଥା କିଛି ଲେଖିନାହାନ୍ତି ।

ଉପରିଲିଖିତ ବର୍ଣ୍ଣନାରୁ ପ୍ରମାଣିତ ହୁଏ ଯେ ଓଡ଼ିଶାର ମନ୍ଦିରଗୁଡ଼ିକର ଭିତ୍ତିଚିତ୍ର ଅନୁସାରେ 'ମାନସାର' ବର୍ଣ୍ଣିତ ସବୁଗୁଡ଼ିକ ନାଗର ସ୍ଥାପତ୍ୟଯୁକ୍ତ । ଡାକ୍ତର ଆଚାର୍ଯ୍ୟଙ୍କ ଲିଖିତ 'ବେସର' ମନ୍ଦିର ନୁହେଁ ।

୨ । 'ସୁବୃତ୍ତଂ ବେସର ପ୍ରୋକ୍ତମ୍' ଅର୍ଥାତ୍ ବେସର ନାମଧେୟ ମନ୍ଦିର ସ୍ଥାପତ୍ୟ ସୁବୃତ୍ତ ବା ବର୍ତ୍ତୁଳାକାର । ଏପ୍ରକାର ମନ୍ଦିରର ଭିତ୍ତିଚିତ୍ର ଗୋଲାକାର ହୋଇଥାଏ । ଓଡ଼ିଶାର କେବଳ ଦୁଇଟି ମନ୍ଦିର ଅଛି, ଯାହାର ସ୍ଥାପତ୍ୟ 'ବେସର' ଅନ୍ତର୍ଭୁକ୍ତ । ତନ୍ମଧ୍ୟରୁ ପ୍ରାଚୀନତର ମନ୍ଦିରଟି ଭୁବନେଶ୍ୱର ନିକଟବର୍ତ୍ତୀ କଟକ-ପୁରୀ ଜଗନ୍ନାଥ ସଡ଼କର ପୂର୍ବ ପାର୍ଶ୍ୱରେ ହୀରାପୁର ଗ୍ରାମରେ ଅବସ୍ଥିତ ଓ ୧୯୫୧ର ଆବିଷ୍କୃତ । ଏହି ମନ୍ଦିର ଆବିଷ୍କାର କରିଥିଲେ ଶ୍ରୀ କେଦାରନାଥ ମହାପାତ୍ର, ଯେ କି ସେତେବେଳେ ଲେଖକର ସହକର୍ମୀ ଥିଲେ । ଏହି ବର୍ତ୍ତୁଳାକାର ଛାତବିହୀନ ମନ୍ଦିରର ଭିତରକାନ୍ଥରେ ୬୪ ଯୋଗିନୀର ମୂର୍ତ୍ତି ଓ ବାହାର କାନ୍ଥରେ ନବକାତ୍ୟାୟନୀ ମୂର୍ତ୍ତି ସ୍ଥାପିତ । ଏହି ମନ୍ଦିରଟି ପ୍ରକୃତରେ 'ବେସର' ବା 'ବ୍ୟସ୍ର' । ଏହାର ଆଦୌ କୋଣ ନାହିଁ, ଏଣୁ ସୁବୃତ୍ତ । ଓଡ଼ିଶାରେ ଆଉ ଗୋଟିଏ ୬୪ଯୋଗିନୀ ବୃତ୍ତାକାର ମନ୍ଦିର ଅଛି ବଲାଙ୍ଗିର ଜିଲ୍ଲାର ରାଣୀପୁର-ଝରିଆଲଠାରେ । ପ୍ରଫେସର ସରସୀ କୁମାର ସରସ୍ୱତୀ ଲେଖିଅଛନ୍ତି ଯେ ବକିଂହାମଙ୍କ ପ୍ରତ୍ନତାତ୍ତ୍ୱିକ ରିପୋର୍ଟରେ କଳାହାଣ୍ଡି ଜିଲ୍ଲାରେ ଆଉ ଗୋଟିଏ ୬୪-ଯୋଗିନୀ ମନ୍ଦିର ଅଛି; ମାତ୍ର ମୁଁ ତାହା ଜାଣି ନଥିଲି । ତା'ଛଡ଼ା ମଧ୍ୟପ୍ରଦେଶର ଜବଲପୁର ନିକଟବର୍ତ୍ତୀ ଭେଡ଼ାଘାଟ ଓ ମିତାଓ୍ୱାଲିଠାରେ ଆଉ ଦୁଇଟି ୬୪ ଯୋଗିନୀ ମନ୍ଦିର ଅଛି; ଯାହାର ବ୍ୟାସ ଯଥାକ୍ରମେ ୧୧୬ଫୁଟ ଓ ୧୨୦ ଫୁଟ । ଏହାଛଡ଼ା ଖାଜୋରାଲୋଠାରେ ନିୟମ ବ୍ୟତିକ୍ରମକରି ଗୋଟିଏ ଆୟତାକାର ୬୪ଯୋଗିନୀ ମନ୍ଦିର ଅଛି । ଏହି ଶ୍ରେଣୀର ମନ୍ଦିରଗୁଡ଼ିକ ପ୍ରକୃତରେ 'ବେସର' ବ ବ୍ୟସ୍ର ନାମଧେୟ ସ୍ଥାପତ୍ୟଭୁକ୍ତ । ଏହାର ବିଶେଷତ୍ୱ ଏହି ଯେ ମନ୍ଦିରରେ ଆଦୌ ଛାତ ନାହିଁ । ମନ୍ଦିରଟି କେବଳ କାନ୍ଥରେ ବେଷ୍ଟିତ ଓ ଉନ୍ମୁଖ ଆକାଶ ତଳେ ଅବସ୍ଥିତ । ଏହି ମନ୍ଦିରଗୁଡ଼ିକର ସଂଖ୍ୟା ୬/୭ଟିରୁ ଅଧିକ ନୁହେଁ ଓ ଏଗୁଡ଼ିକ ମଧ୍ୟପ୍ରଦେଶ ଏବଂ ଓଡ଼ିଶାରେ ଅବସ୍ଥିତ ।

ପ୍ରଫେସର ସରସୀକୁମାର ସରସ୍ୱତୀ ଗୋଲାକାର ସମ୍ବନ୍ଧରେ History and culture of the Indian people Vol. V. ରେ ଯାହା ଲେଖିଅଛନ୍ତି, ତହିଁରୁ ୬୪ ଯୋଗିନୀ ମନ୍ଦିର ବ୍ୟତୀତ ଅନ୍ୟ ଦେବତାଙ୍କ ପାଇଁ ଗୋଲାକାର ଶିଖରଯୁକ୍ତ ମନ୍ଦିରର ସ୍ପଷ୍ଟ ପ୍ରମାଣ ମିଳେନାହିଁ । ଆବିଷ୍କୃତ ସମସ୍ତ ୬୪ ଯୋଗିନୀ ମନ୍ଦିରଗୁଡ଼ିକର ଶିଖର ଗଠିତ ନୁହେଁ, ଏଣୁ ଉନ୍ମୁକ୍ତ । 'ବେସର' ସ୍ଥାପତ୍ୟ ନାମଧେୟ ମନ୍ଦିର ସଂପର୍କରେ ପ୍ରଫେସର ଡାକ୍ତର ପ୍ରସନ୍ନ କୁମାର ଆଚାର୍ଯ୍ୟ ଏବଂ ପ୍ରଫେସର ସରସୀ କୁମାର ସରସ୍ୱତୀ ଉଭୟଙ୍କର ଭ୍ରମଧାରଣା ଥିବାର ତାଙ୍କର ଲେଖାରୁ ଜଣାଯାଏ । 'ଇତିହାସ' ଓ ସଂସ୍କୃତ ବହିର ସ୍ଥାପତ୍ୟ ଅଧ୍ୟାୟର ଆରମ୍ଭରେ ପ୍ରଫେସର ସରସ୍ୱତୀ ଲେଖିଅଛନ୍ତି ଯେ "ଭାରତୀୟ ଶିଳ୍ପଶାସ୍ତ୍ର ତିନୋଟି ମାତ୍ର ସ୍ଥାପତ୍ୟ ଗଠନ ସ୍ୱୀକାର କରେ; ଯଥା -- 'ନାଗର', 'ଦ୍ରାବିଡ଼' ଓ 'ବେସର' । ଏହି ସ୍ଥାପତ୍ୟଗୁଡ଼ିକର ବର୍ଣ୍ଣନା ଏତେ ଅସ୍ପଷ୍ଟ ଓ ଅପର୍ଯ୍ୟାପ୍ତ ଯେ ଆମ୍ଭମାନଙ୍କ ପକ୍ଷରେ ଏବେ ତା'ର ପୂର୍ଣ୍ଣବିବରଣ ଦେବା ସମ୍ଭବପର ନୁହେଁ । ଦ୍ରାବିଡ଼ ସଂଜ୍ଞାଟି ପ୍ରକୃତରେ ଭୌଗୋଳିକ ନାମର ଅର୍ଥସୂଚକ ।" (ପୃ.୫୩୦) । ସେ ପୁଣି ଚାଲୁକ୍ୟ ସ୍ଥାପତ୍ୟ ସମ୍ପର୍କରେ ଲେଖିବାକୁ ଯାଇ ପୃ. ୬୨୨ରେ ଲେଖିଅଛନ୍ତି ଯେ, "ବେସର ସ୍ଥାପତ୍ୟ ବିନ୍ଧ୍ୟଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା, ଯାହାକୁ କି ପ୍ରତ୍ନତାତ୍ତ୍ୱିକମାନେ ଚାଲୁକ୍ୟ ସ୍ଥାପତ୍ୟ ବୋଲି ଆଖ୍ୟା ଦେଇଅଛନ୍ତି ।"

'ମାନସାର' ଗ୍ରନ୍ଥରେ ଡାକ୍ତର ପ୍ରସନ୍ନ କୁମାର ଆଚାର୍ଯ୍ୟ ଓ 'ଭାରତୀୟମାନଙ୍କ ଇତିହାସ ଓ ସଂସ୍କୃତି' ପୁସ୍ତକର ସ୍ଥାପତ୍ୟ ଅଧ୍ୟାୟରେ ପ୍ରଫେସର ସରସୀ କୁମାର ସରସ୍ୱତୀ ବେସର ନାମଧେୟ ସ୍ଥାପତ୍ୟର କି କି ବିଶେଷତ୍ୱ ପାଇ ତଦୁପରେ ଆଲୋଚନା କରିଥିଲେ, ତାହାର ପ୍ରକୃତ କାରଣ ମୁଁ ସେମାନଙ୍କ ଲେଖାରୁ ପାଇପାରିଲି ନାହିଁ । ସେଥିପାଇଁ ସେମାନଙ୍କର ଭ୍ରମର କାରଣ ମଧ୍ୟ ସ୍ଥିର କରିପାରିନାହିଁ ।

'ମାନସାର' ବର୍ଣ୍ଣିତ 'ବେସର' ମନ୍ଦିର ଭିତ୍ତିଚିତ୍ରରେ, ବାଡ଼ରେ ଓ ଶିଖରରେ ଗୋଲାକାରରେ ଗଠିତ ହୋଇ 'ରେଖ' ମନ୍ଦିର ପ୍ରକାର ନିର୍ମିତ ହେବାର ନିଦର୍ଶନ ଭାରତରେ, ବିଶେଷତଃ ମଧ୍ୟପ୍ରଦେଶ ରା ନା ଓ ଉତ୍ତର ପ୍ରଦେଶରେ ଅଛି କି ନାହିଁ, ତାହା ଠିକ୍ ଜଣାନାହିଁ ।

୩ ଓ ୪ । ଷଟ୍‌କୋଣ ବିଶିଷ୍ଟ ମନ୍ଦିର ସ୍ଥାପତ୍ୟ ବା 'ଆନ୍ଧ୍ର' ସ୍ଥାପତ୍ୟ ଓ ଅଷ୍ଟକୋଣବିଶିଷ୍ଟ ମନ୍ଦିର ସ୍ଥାପତ୍ୟ ବା ଦ୍ରାବିଡ଼ ସ୍ଥାପତ୍ୟ ଓଡ଼ିଶାରେ ନାହିଁ । ପ୍ରଫେସର ସରସୀ କୁମାର ସରସ୍ୱତୀ ଅଗାଧ ପରିଶ୍ରମ କରି ଭାରତବର୍ଷର ବହୁ ମନ୍ଦିରର ଭିତ୍ତିଚିତ୍ର

ସଂଗ୍ରହ କରିଥିଲେ । ତନ୍ମଧ୍ୟରୁ ୫୭ଟି ଚିତ୍ର ସେ History and Culture of the Indian People ବହିରେ ମୁଦ୍ରିତ କରିଅଛନ୍ତି । କିନ୍ତୁ ଏଥିରେ 'ଆନ୍ଧ୍ର' ବା ଦ୍ରାବିଡ଼ ସ୍ଥାପତ୍ୟସୂଚକ ମନ୍ଦିରର ଭିତ୍ତିଚିତ୍ର ଗୋଟିଏ ହେଲେ ନାହିଁ । 'ଆନ୍ଧ୍ର' ଓ 'ଦ୍ରାବିଡ଼' ସ୍ଥାପତ୍ୟର ନିଦର୍ଶନ ନ ପାଇବା ଯାଏ, ଏହି ସ୍ଥାପତ୍ୟ ଅନୁସାରେ ଗଠିତ ମନ୍ଦିର ଆକୃତି ବିଷୟରେ କିଛି ଧାରଣା ହୋଇପାରୁନାହିଁ ।

ଓଡ଼ିଶାରେ ବୌଦଗଡ଼ଠାରେ ବୌଦ ଓ ଫୁଲବାଣୀ ଜିଲ୍ଲାରେ ତିନୋଟି ରେଖ ଶିଖରଯୁକ୍ତ ମନ୍ଦିର ଅଛି, ଯାହାର ଭିତ୍ତିଚିତ୍ର ତାରକାସଦୃଶ । ପ୍ରଫେସର ସରସ୍ୱତୀ ଏହି ମନ୍ଦିରଗୁଡ଼ିକ ଉପରେ ସଂକ୍ଷେପରେ ଆଲୋଚନା କରିଅଛନ୍ତି । ଏ ପ୍ରକାର ମନ୍ଦିର ଭାରତବର୍ଷରେ ଅନ୍ୟତ୍ର ଥିବାର ନିଦର୍ଶନ ମଧ୍ୟ ମିଳିନାହିଁ । ଏଣୁ ଏଗୁଡ଼ିକର ସ୍ଥାପତ୍ୟରେ ସ୍ୱତନ୍ତ୍ରତା ଅଛି ।

ଶ୍ରୀମତୀ ଦେବଳା ମିତ୍ର ଭୁବନେଶ୍ୱର ଓ କୋଣାର୍କ ପୁସ୍ତକରେ ମନ୍ଦିର ସ୍ଥାପତ୍ୟ ନାମ 'କଳିଙ୍ଗ' ରଖିଅଛନ୍ତି । ମନ୍ଦିର ସ୍ଥାପତ୍ୟର ଏହି ନାମକରଣ ତାଙ୍କର ସ୍ୱକୀୟ ବୋଲି ମନେହୁଏ ।



ଝଙ୍କାର, ୨୩/୧

# ଐତିହାସିକ ପ୍ରତି ଔପନ୍ୟାସିକଙ୍କ ଆକ୍ଷେପ

ଓଡ଼ିଶାର ଲବ୍‌ଧପ୍ରତିଷ୍ଠ, ଔପନ୍ୟାସିକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ଐତିହାସିକ ଉପନ୍ୟାସ 'ନୀଳଶୈଳ' ପୁସ୍ତକର ପୃ. ୭୯-୮୦ ରେ ଯାହା ଲେଖାଅଛି, ତାହା ନିମ୍ନରେ ଉଦ୍ଧୃତ ହେଲା । ଐତିହାସିକ ଘଟଣା ଉପରେ ଔପନ୍ୟାସିକଙ୍କ ଭ୍ରମପ୍ରମାଦସମୂହ ଏହି ପ୍ରବନ୍ଧରେ ସୂଚେଇ ଦେବା ସଙ୍ଗେ ସଙ୍ଗେ ଓଡ଼ିଶାର ତତ୍କାଳୀନ ଇତିହାସର ଏକ ନିର୍ଭୁଲ ଚିତ୍ର ପ୍ରଦାନ କରିବାକୁ ଚେଷ୍ଟା କରିଛି ।

'ନୀଳଶୈଳ' ଉପନ୍ୟାସର ପୃ. ୭୯-୮୦ରେ ଉଦ୍ଧୃତାଂଶ --

''ସେଦିନ ମୋଗଲସମ୍ରାଟ ଆକବରଙ୍କ ସେନାପତି ମାନସିଂହଙ୍କ ଚକ୍ରାନ୍ତରେ ଆଗଙ୍ଗା-ଗୋଦାବରୀବିସ୍ତୃତ ଉତ୍କଳର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦଦେବଙ୍କ ପ୍ରକୃତ ଉତ୍ତରାଧିକାରୀମାନେ ଖୋର୍ଦ୍ଧାରୁ ଆଳି ଓ ସାରଙ୍ଗଗଡ଼କୁ ନିର୍ବାସିତ ହୋଇଥିଲେ । ଅନାହୂତି ପରି କେଉଁଠୁ ଦନେଇ ବିଦ୍ୟାଧରଙ୍କ ପୁଅ ରମେଇ ରାଉତରା ଆସି, ରାମଚନ୍ଦ୍ର ଦେବ ହୋଇ ଖୋର୍ଦ୍ଧା ସିଂହାସନ ଅକ୍ତିଆର କଲେ । କୁହାଯାଏ, ଏହି ରାମଚନ୍ଦ୍ର ଦେବ ହୋଇ ଖୋର୍ଦ୍ଧା ସିଂହାସନର ଯଥାର୍ଥ ଉତ୍ତରାଧିକାରୀ ବୋଲି ମାନସିଂହଙ୍କୁ କୁଆଡ଼େ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ହୋଇଥିଲା, ମାତ୍ର ସେ ସବୁ ପରବର୍ତ୍ତୀକାଳୀନ ଐତିହାସିକମାନଙ୍କ ଗାଳ୍ପ ଗଳ୍ପ । ଘୋର କୁଚକ୍ରୀ ମାନସିଂହ, ରାମଚନ୍ଦ୍ରଦେବଙ୍କୁ ଖୋର୍ଦ୍ଧା ସିଂହାସନରେ ବସାଇ ଏକା ଟେକାକେ ତିନି ତିନିଟା ଚଢ଼େଇ ଶିକାର କରିଗଲେ । ଓଡ଼ିଶାରେ ମୋଗଲ ରାଜଶକ୍ତି ଓ ପରାକ୍ରମଶାଳୀ ବିଦ୍ରୋହୀ ଆଫଗାନମାନଙ୍କ ମଧ୍ୟରେ ସ୍ୱାଧୀନ ଖୋର୍ଦ୍ଧାକୁ ଆଡୁଆଳ କରି ସେ ସୃଷ୍ଟି କରି ଦେଇଗଲେ ଏକ ତୃତୀୟ ଶକ୍ତି; ପୁରୁଷୋତ୍ତମ କ୍ଷେତ୍ରର ସ୍ୱାତନ୍ତ୍ର୍ୟ ଓ ମର୍ଯ୍ୟାଦା ସ୍ୱୀକାର କରି ଓଡ଼ିଶା ... ନ୍ଦୁ ଜନମତକୁ ସେ ଆପଣାର କରିନେଲେ । ପୁଣି ଗଜପତି ମୁକୁନ୍ଦଦେବଙ୍କ ଉତ୍ତରାଧି...ମାନଙ୍କୁ ଖୋର୍ଦ୍ଧା ସିଂହାସନରୁ ନିର୍ବାସିତ କରି, ଗଜପତି ପରମ୍ପରା ପ୍ରତି ଓଡ଼ିଶାର ଦୁର୍ଗପତି ଓ ସାମନ୍ତମାନଙ୍କର ବିଶ୍ୱସ୍ତତା ସେ ଭାଙ୍ଗି ଦେଇଗଲେ ।''

ଲେଖକ ଉପରିଲିଖିତ ଲେଖାରେ ଓଡ଼ିଆ ଇତିହାସର ୨୫ ବର୍ଷର (ଖ୍ରୀ: ୧୫୬୮ ଠାରୁ ୧୫୯୩ ପର୍ଯ୍ୟନ୍ତ) ଘଟଣାବଳୀ ଆଲୋଚନା କରି ନିଜ ମତ ବ୍ୟକ୍ତ କରିଅଛନ୍ତି;

କିନ୍ତୁ ଏହି ୨୫ ବର୍ଷର ଇତିହାସ ଓଡ଼ିଶା ଉପରେ ଯେପରି ସ୍ଥାୟୀ ପ୍ରଭାବ ପକାଇଅଛି, ତାହା ଅନ୍ୟ ସମୟର ଇତିହାସରେ ଦେଖିବାକୁ ମିଳେନାହିଁ ।

ଖ୍ରୀ: ୧୫୬୭ରେ ଦିଲ୍ଲୀର ସମ୍ରାଟ ଆକବର ଓଡ଼ିଶାର ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ସହିତ ମିତ୍ରତା ସ୍ଥାପନ କରି ବଙ୍ଗ, ବିହାର ରାଜ୍ୟ ଆକ୍ରମଣ କରିବାର ମସୁଧା କରିଥିଲେ; କିନ୍ତୁ ଆକବରଙ୍କ ସେ କଳ୍ପନା କାର୍ଯ୍ୟକାରୀ ହେଲାନାହିଁ । ସେ ରାଜପୁତାନାର ଚିତୋର ଦୁର୍ଗ ଅଧିକାର ପାଇଁ ବ୍ୟସ୍ତ ରହିବାରୁ ବଙ୍ଗ ଓ ବିହାରର ସୁଲତାନ ସୁଲେମାନ ଏହି ସୁଯୋଗରେ ଓଡ଼ିଶା ଆକ୍ରମଣ ପାଇଁ ପ୍ରସ୍ତୁତ ହେଲେ । ଆକବରଙ୍କ ପରାମର୍ଶମତେ ଓଡ଼ିଶାର ରାଜା ମୁକୁନ୍ଦଦେବ ରାଜଧାନୀ ଛାଡ଼ି ବଙ୍ଗ ସୀମାର ନିକଟବର୍ତ୍ତୀ ଓଡ଼ିଶା ରାଜ୍ୟରେ ସୈନ୍ୟ ଛାଉଣୀ ପକାଇ ଅପେକ୍ଷା କରି ରହିଲେ । ଓଡ଼ିଶା ଆକ୍ରମଣ ପାଇଁ ସୁଲେମାନ ଜଙ୍ଗଲ ପଥରେ ଛୋଟନାଗପୁର ଓ ମୟୂରଭଞ୍ଜ ଭିତରେ ଯାଇ ଓଡ଼ିଶାର ରାଜଧାନୀ କଟକ ନଗର ଅଧିକାର ପାଇଁ ସେନାପତି ନିଜପୁତ୍ର ବେୟାଜିଦ୍ ଓ ତାଙ୍କର ସହକାରୀ କଳାପାହାଡ଼କୁ ଏପରି ଗୋପନରେ ପଠାଇଲେ ଯେ ତାହାର ଖବର ମୁକୁନ୍ଦଦେବ ପାଇ ପାରିଲେ ନାହିଁ । ପରେ ରାଜଧାନୀ କଟକ ନଗରୀ ସୁଲେମାନଙ୍କ ସୈନ୍ୟମାନେ ଅଧିକାର କରିବାର ଖବର ପାଇ ମୁକୁନ୍ଦଦେବ ବଙ୍ଗସୀମାରୁ ରାଜଧାନୀ ଆଡ଼କୁ ଶୀଘ୍ର ଆସିଲେ । ଯାଜପୁର ବିପରୀତ ଦିଗରେ ବୈତରଣୀର ବାମ କୂଳର କେତେକ ଦୂରରେ 'ଗୁହିରାଟିକିରି' ଠାରେ ବଙ୍ଗସେନା ଓ ଓଡ଼ିଶା ସେନା ମଧ୍ୟରେ ଯେଉଁ ଯୁଦ୍ଧ ହେଲା, ସେଥିରେ ମୁକୁନ୍ଦଦେବ ପ୍ରାଣ ହରାଇଲେ । ସୁଲେମାନ ଏହା ଫଳରେ ନିଷ୍କଳଙ୍କ ଭାବରେ ଓଡ଼ିଶା (ଉତ୍ତର ଓଡ଼ିଶା) ଅଧିକାର କଲେ । ବଙ୍ଗ ସେନା ଯାଜପୁରରେ ରହି କଳାପାହାଡ଼ଙ୍କ ନେତୃତ୍ୱରେ ଦଳେ ଅଶ୍ୱାରୋହୀ ସୈନ୍ୟ ପୁରୀର ଜଗନ୍ନାଥ ମନ୍ଦିର ଲୁଣ୍ଠନ ଓ ଦେବତା ମୂର୍ତ୍ତି ଚୂର୍ଣ୍ଣବିଚୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ପ୍ରେରିତ ହେଲେ । କଳାପାହାଡ଼ ବିନା ବାଧାରେ ମନ୍ଦିର ଭିତରେ ପ୍ରବେଶ କରି ମନ୍ଦିରରେ ଥିବା ଧନ-ଦୌଲତ ବୋହି ଆଣିବା ସଙ୍ଗେ ସଙ୍ଗେ ମନ୍ଦିରର ସେବା ପୂଜା ଧ୍ୱସ୍ତବିଧ୍ୱସ୍ତ କରି ପକାଇଲେ । 'ମେଘଜାନ-ଇ-ଆଫଗାନ' ଗ୍ରନ୍ଥରେ ବର୍ଣ୍ଣିତ ବିବରଣୀରୁ ଜଣାଯାଇଛି ଜଗନ୍ନାଥ ମୂର୍ତ୍ତିଗୁଡ଼ିକୁ କଳାପାହାଡ଼ ପୁରୀରେ ଭାଙ୍ଗି ପକାଇ ଏକ ଆବର୍ଜନାପୂର୍ଣ୍ଣ ସ୍ଥାନରେ ନିକ୍ଷେପ କରିଥିଲା । ଯେଉଁମାନେ ଜଗନ୍ନାଥମୂର୍ତ୍ତିର ଗୁପ୍ତ ରହସ୍ୟ ଜାଣନ୍ତି, ସେମାନେ କଳାପାହାଡ଼ ପୁରୀ ଛାଡ଼ିବା ପରେ ମୂର୍ତ୍ତି ଭିତରୁ ବ୍ରହ୍ମ ବାହାର କରି ଲୁଗ୍ୱଇ ରଖିଥିଲେ । ରାମଚନ୍ଦ୍ରଦେବ ଏହା ଜାଣିପାରି ପୁନଃନିର୍ମାଣର ବ୍ୟବସ୍ଥା କରିଥିଲେ (ଖ୍ରୀ: ୧୫୬୮ ରେ) । କାରଣ ଓଡ଼ିଶା ଆକ୍ରମଣ ପରେ ବଙ୍ଗର ସୁଲତାନ ଓଡ଼ିଶାର ଶାସନପ୍ରତି ଯେଉଁ ଉଦାସୀନ

ଭାବ ଦେଖାଇଥିଲେ, ସେହି ସମୟ ହିଁ ଜଗନ୍ନାଥମୂର୍ତ୍ତିର ପୁନଃ ପ୍ରତିଷ୍ଠା ପାଇଁ ଶ୍ରେଷ୍ଠ ସୁଯୋଗ ଥିଲା । ମାଦଳାପାଞ୍ଜିରେ ବର୍ଣ୍ଣିତ ୯ ଅଙ୍କରେ (ଖ୍ରୀ: ୧୫୭୪) କୁଜଙ୍ଗରୁ ବ୍ରହ୍ମ ଆଣି ୧୨ ଅଙ୍କରେ (ଖ୍ରୀ: ୧୫୭୬ରେ) ମୂର୍ତ୍ତି ସ୍ଥାପନ ବିଷୟକୁ ମୁଁ ସମସାମୟିକ ଅବସ୍ଥାକୁ ବିଚାର କରି ବିଶ୍ୱାସ କରିପାରୁନାହିଁ ।

'ମେଘଜାନ-ଇ-ଆଫଗାନ୍' ନାମକ ଗ୍ରନ୍ଥରେ (ଫାର୍ଶୀ ଗ୍ରନ୍ଥରେ) କଳାପାହାଡ଼ର ପୁରୀ ମନ୍ଦିରରେ କରିଥିବା କାର୍ଯ୍ୟାବଳୀ ଲିଖିତ ଅଛି । ଏହାପରେ ବଙ୍ଗସେନା ସ୍ୱଦେଶକୁ ଫେରିଯାଇଥିଲେ । ସୁଲେମାନ ଚିଲିକାର ଉତ୍ତରବର୍ତ୍ତୀ ସମୁଦ୍ର ଉପକୂଳ ଅଞ୍ଚଳ ଅଧିକାର କରିଥିଲେ । ସେ ଚିଲିକାର ଦକ୍ଷିଣବର୍ତ୍ତୀ ଓଡ଼ିଶା ପ୍ରତି ଦୃଷ୍ଟିପାତ କରି ନଥିଲେ । ସୁଲେମାନ ଖ୍ରୀ: ୧୫୭୨ରେ ପ୍ରାଣତ୍ୟାଗ କଲେ; କିନ୍ତୁ ସେ ଏହି ସମୟ ମଧ୍ୟରେ ଓଡ଼ିଶାରେ ଆଫଗାନ୍ ଶାସନ ଚଳାଇବାର କିଛି ମାତ୍ର ବ୍ୟବସ୍ଥା କରି ନଥିଲେ ବା ଦକ୍ଷିଣ ଓଡ଼ିଶା ଅଧିକାର ପାଇଁ ମନ ବଳାଇ ନଥିଲେ । ଫଳରେ ଗୋଲକୁଣ୍ଡାର ସୁଲତାନମାନେ ଗୋଦାବରୀଠାରୁ ଚିଲିକାଯାଏ ବିସ୍ତୀର୍ଣ୍ଣ ଅଞ୍ଚଳ ଅଧିକାର କରିଥିଲେ ।

ବେୟାଜିଦ୍ ଓ କଳାପାହାଡ଼ ବଙ୍ଗଦେଶକୁ ଫେରିଯିବା ପରେ ୧୫୬୮ ମାର୍ଚ୍ଚ-ଏପ୍ରିଲରେ ଓଡ଼ିଶାରେ ଆଫଗାନ ଅଧିକାରର ସତ୍ତା ନ ପାଇ ଗୋବିନ୍ଦ ବିଦ୍ୟାଧରଙ୍କ ପୁତ୍ର ମହାନଦୀର ଦକ୍ଷିଣକୂଳବର୍ତ୍ତୀ ପାହାଡ଼ିଆ ଅଞ୍ଚଳରେ ଏକ ସ୍ୱାଧୀନ ରାଜ୍ୟ ସ୍ଥାପନ କରି ନିଜକୁ ତହିଁର ରାଜା ବୋଲାଇଲେ ଓ ବରୁଣେଇ ପାହାଡ଼ ତଳେ ଖୋର୍ଦ୍ଧାଠାରେ ନିଜର ରାଜଧାନୀ ସ୍ଥାପନ କଲେ । ତାଙ୍କୁ ବହୁ ଲୋକ ସମର୍ଥନ କରିବାର ଦେଖି ସେ ଜଗନ୍ନାଥ ମନ୍ଦିରର ସେବାପୂଜାର ପୁନଃଉଦ୍ଧାର ପାଇଁ ସ୍ଥିର କଲେ ଓ ଶାସ୍ତ୍ରୀୟମତେ ନବକଳେବର କଲେ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ମୂର୍ତ୍ତିଗୁଡ଼ିକର ପ୍ରତିଷ୍ଠା ୧୫୬୮ ମଧ୍ୟରେ କରିବାରୁ ଦେଶର ଲୋକେ ତାଙ୍କୁ ଆଦର୍ଶ ନୃପତିର ସ୍ଥାନ ଦେଲେ । ସେ ପ୍ରାଚୀନ ଗଜପତି ପରମ୍ପରାର କ୍ଷେତ୍ର ଜଗନ୍ନାଥ ସେବାର ପୁନଃପ୍ରତିଷ୍ଠା କରିଥିବା ଯୋଗୁଁ ଲୋକେ ତାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ମଧ୍ୟ ଦେଇଥିଲେ । ମାଦଳା ପାଞ୍ଜିର ବର୍ଣ୍ଣିତ ବିଶର ମହାନ୍ତି ଓ ଜଗନ୍ନାଥ ମହାପ୍ରଭୁଙ୍କ ବ୍ରହ୍ମସଂକ୍ରାନ୍ତୀୟ ବୃତ୍ତାନ୍ତ ଏହି ସମୟରେ ପ୍ରଚ୍ଚରିତ ହୋଇଥିଲା ବୋଲି ମନେହୁଏ । ଖୋର୍ଦ୍ଧା କସ୍ଥିନ୍ କାଳେ ୧୫୬୮ ପୂର୍ବେ କାହାରି ରାଜଧାନୀ ନଥିଲା । ରାମଚନ୍ଦ୍ର ଦେବ ଏହି ସ୍ଥାନରେ ରାଜଧାନୀ ସ୍ଥାପନ କରିଥିବାରୁ ରାଜଧାନୀର ନାମାନୁସାରେ ତାହାର ନାମ ଖୋର୍ଦ୍ଧା ହେଲା । ଖୋର୍ଦ୍ଧା ରାଜ୍ୟ ସ୍ଥାପନ ରାମଚନ୍ଦ୍ର ଦେବଙ୍କ ମହନୀୟ କୀର୍ତ୍ତି, ଯହିଁରେ ଆଉ କାହାରି ଦାବୀ ନଥିଲା । ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥଙ୍କୁ

ପୁନର୍ବାର ପ୍ରତିଷ୍ଠା କରିବାରୁ ଓଡ଼ିଶାର ସମସ୍ତ ଅଧିବାସୀ ରାମଚନ୍ଦ୍ରଦେବଙ୍କୁ ଧନ୍ୟ ଧନ୍ୟ କହି ହର୍ଷଉଲ୍ଲାସରେ ନିମଗ୍ନ ହେବା ସ୍ୱାଭାବିକ । ଏହିସବୁ ଘଟଣା ଓଡ଼ିଶାରେ ସୁଲେମାନଙ୍କର ଜୀବଦ୍ଦଶାରେ ଘଟିଥିଲା, ଯାହାକୁ କି ସେ ପ୍ରତିରୋଧ କରିବାପାଇଁ ସାହସ କରି ନଥିଲେ । ସୁଲେମାନଙ୍କର ଖ୍ରୀ: ୧୫୭୨ରେ ମୃତ୍ୟୁପରେ ତାଙ୍କର ପୁତ୍ର ବେୟାଜିଦ୍ ବଙ୍ଗ-ବିହାର-ଓଡ଼ିଶା ସିଂହାସନରେ ବସିଲେ; କିନ୍ତୁ ଅଳ୍ପ କାଳ ପରେ ଆତତାୟୀ ହସ୍ତରେ ପ୍ରାଣ ହରାଇବାରୁ ତାଙ୍କ ଭାଇ ଦାଉଦ୍ ସିଂହାସନ ଅଧିକାର କରିଥିଲେ । ଦାଉଦଙ୍କ ରାଜତ୍ୱ ସମୟରେ ଦିଲ୍ଲୀସମ୍ରାଟ ଆକବର ବିହାର-ବଙ୍ଗ ଅଧିକାର କରିବାପାଇଁ ସୈନ୍ୟ ପଠାଇଥିଲେ । ସେହି ଯୁଦ୍ଧରେ ଦାଉଦ୍ ପରାଜିତ ହୋଇଥିଲେ । ଏହାରି ଫଳରେ ୧୫୭୫ ଖ୍ରୀଷ୍ଟାବ୍ଦରେ ଆଫଗାନ ଓ ମୋଗଲ ମଧ୍ୟରେ ଏକ ସନ୍ଧି ହୋଇଥିଲା । ଉକ୍ତ ସନ୍ଧିର ଚୁକ୍ତି ଅନୁସାରେ ଦାଉଦ୍ ବଙ୍ଗ-ବିହାର ଛାଡ଼ିଦେଇ କେବଳ ଓଡ଼ିଶାର ରାଜା ବୋଲି ସ୍ୱୀକୃତ ହୋଇଥିଲେ । ପରେ ଦାଉଦ୍ ବିଦ୍ରୋହ କରି ପ୍ରାଣ ହରାଇଥିଲେ । କରାରାନୀ ଆଫଗାନ୍ ବଂଶ ଲୋପ ପାଇବାରୁ ଲୋହାନି ଆଫଗାନମାନେ ଓଡ଼ିଶାରେ ସେମାନଙ୍କର ଉତ୍ତରାଧିକାରୀ ହୋଇଥିଲେ । ଓଡ଼ିଶାରେ ସେମାନେ ବେଳେ ବେଳେ ଦେଶରେ ପ୍ରବେଶ କରି ଗୋଳମାଳ କରୁଥିଲେ । ଖୋର୍ଦ୍ଧା ରାଜ୍ୟ ଉପରେ କିନ୍ତୁ ସେମାନଙ୍କର କୌଣସି କର୍ତ୍ତୃତ୍ୱ ନଥିଲା । ଲୋହାନି ଆଫଗାନମାନଙ୍କ ରାଜତ୍ୱକାଳରେ କୁତବ୍ ସାହା ଲୋହାନିଙ୍କ ସମୟରେ ଶକାବ୍ଦ ୧୫୦୯ ଓ ସନ ୯୯୪ (ଖ୍ରୀ: ୧୫୮୭-୮୮)ରେ ମୟୂରଭଞ୍ଜ ଜିଲ୍ଲାରୁ ମିଳିଥିବା ଏକ ଦ୍ୱିଭାଷୀ ଶିଳାଲିପିରେ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବଙ୍କର ୨୪ ଅଙ୍କ ଉଲ୍ଲେଖ ଥିବାର ଦେଖାଯାଏ । ଏଥିରୁ ଏହା ପ୍ରମାଣିତ ହୁଏ ଯେ ଖୋର୍ଦ୍ଧାଠାରୁ ବହୁ ଦୂରରେ ଅବସ୍ଥିତ ମୟୂରଭଞ୍ଜ ଜିଲ୍ଲାରେ ମଧ୍ୟ ରାମଚନ୍ଦ୍ରଦେବଙ୍କ ଅଙ୍କ ଚଳୁଥିଲା । ଏହି ଅଙ୍କ ପ୍ରଚଳନରୁ ଜଣାଯାଏ ଯେ ରାମଚନ୍ଦ୍ର ଦେବ ସମସ୍ତ ଓଡ଼ିଶାରେ ନିଜର କାର୍ଯ୍ୟ ଓ କୀର୍ତ୍ତି ପାଇଁ ସୁପରିଚିତ ହୋଇଥିଲେ । ଯଦିବା ସେତେବେଳେ ଓଡ଼ିଶାରେ ଆଫଗାନ ରାଜତ୍ୱ ଚଳୁଥିଲା, ତଥାପି ଲୋକେ ଖୋର୍ଦ୍ଧା ରାଜାଙ୍କୁ ଓଡ଼ିଶାର ରାଜା ବୋଲି ସ୍ୱୀକାର କରୁଥିଲେ । ସମଗ୍ର ଦେଶରେ ଏହି ସ୍ୱୀକୃତି ମିଳିବାର ଏକମାତ୍ର କାରଣ ଶ୍ରୀ ରାମଚନ୍ଦ୍ର ଦେବଙ୍କ ଦ୍ୱାରା ଜଗନ୍ନାଥ ମହାପ୍ରଭୁଙ୍କର ପୁନଃପ୍ରତିଷ୍ଠା । ଖ୍ରୀ: ୧୫୬୮ରୁ ଖ୍ରୀ: ୧୫୮୮ ପର୍ଯ୍ୟନ୍ତ ଶ୍ରୀ ରାମଚନ୍ଦ୍ର ଦେବଙ୍କର ନାମ ସମଗ୍ର ଓଡ଼ିଶାରେ ସୁପରିଚିତ ଥିଲେ ମଧ୍ୟ ତେଲେଙ୍ଗା ମୁକୁନ୍ଦଦେବଙ୍କ ବଂଶଧରଙ୍କ ନାମ କାହାରିକୁ ଜଣା ନଥିଲା ।

ଖ୍ରୀ: ୧୫୭୫ରେ ବିହାର ଓ ବଙ୍ଗଳା ମୋଗଲ ଅଧିକାରଭୁକ୍ତ ହୋଇଥିଲା । ଓଡ଼ିଶା ପ୍ରତି ମୋଗଲମାନେ ଖ୍ରୀ: ୧୫୯୨-୯୩ ପର୍ଯ୍ୟନ୍ତ ଦୃଷ୍ଟିଦେଇ ନଥିଲେ । ରାଜା ମାନସିଂହ ମୋଗଲ ରାଜ ପ୍ରତିନିଧିରୂପେ ବିହାର ଓ ବଙ୍ଗରେ ମୋଗଲଶାସନ ଚଳାଇବା ପରେ ଓଡ଼ିଶାକୁ ମୋଗଲ-ରାଜ୍ୟଭୁକ୍ତ କରିବାର ସ୍ଥିର କରି ଓଡ଼ିଶା ପ୍ରତି ଯୁଦ୍ଧଯାତ୍ରା କଲେ । ତାଙ୍କୁ ଉତ୍ତର ଓଡ଼ିଶାରେ କତୁଲ୍‌ଖାଁ ଲୋହାନି ସାମାନ୍ୟ ବାଧା ଦେଇଥିଲେ । ମାନସିଂହ ପ୍ରଥମେ ଜଳେଶ୍ୱର ଅଧିକାର କରି ଭଦ୍ରକ ପର୍ଯ୍ୟନ୍ତ ଅଗ୍ରସର ହେଲେ । ଭଦ୍ରକରେ ରାଜା ମାନସିଂହ ଅବଗତ ହେଲେ ଯେ ଆଫଗାନମାନେ ସାରଙ୍ଗଗଡ଼ଠାରେ ଏକତ୍ର ହୋଇଅଛନ୍ତି ।

ଢ଼ାକା ବିଶ୍ୱବିଦ୍ୟାଳୟ ଦ୍ୱାରା ମୁଦ୍ରିତ ବଙ୍ଗଳାର ଇତିହାସ ୨ୟ ଭାଗର ୨୦୯ ପୃଷ୍ଠାରେ ଲିଖିତ ବିବରଣୀ ତଳେ ଇଂରାଜୀରେ ଉଦ୍ଧୃତ ହେଲା ।

"Leaving a garrison in Bhadrak he marched to Cuttack which fell to him without a blow. This success lead to further success. The fort of Aul was peacefully surrounded, the Tila Raja joined near Kalkala Ghat, but the greatest of the Orissa rulers the Raja of Khordha still heldout at Sarangharh (B.209).

[ଆକବରନାମାରେ ବର୍ଣ୍ଣିତ କଳକଳା ଘାଟିର ଭୌଗୋଳିକ ଅବସ୍ଥିତି ଉତ୍ତର ଓଡ଼ିଶାରୁ କଟକ ଯିବାର ରାଜପଥରେ ଥିବା ଆଧୁନିକ କଳକଳାର ଅବସ୍ଥାନ ଏକ । ଦିଲ୍ଲୀର ସୁଲତାନ ଫିରୋଜଶାହ କଳକଳାରେ ପହୁଞ୍ଚିବାର କଥା ସିରେନ୍-ଇ-ଫିରୋଜଶାହା ଗ୍ରନ୍ଥରେ ବର୍ଣ୍ଣିତ ଅଛି ।

ଫିରୋଜଶାହା ଖ୍ରୀ: ୧୩୬୧ରେ କଟକ ଆସିଥିଲେ ବିହାରରୁ ମୟୂରଭଞ୍ଜ ପଶ୍ଚିମାଞ୍ଚଳ ଦେଇ । ୧୫୭୪-୭୫ରେ ମୋଗଲ ସେନାପତି ବିହାରରୁ ଜଳେଶ୍ୱର ଓ ଭଦ୍ରଖ ଦେଇ କଳକଳା ଆସିଥିଲେ । ଏକଥା ଆକବରନାମାରେ ଲିଖିତ ଅଛି । ମୋଗଲରାଜତ୍ୱରେ ରାଜପଥ ଭଦ୍ରଖରୁ ଧାମନଗର-କାନପୁର ହୋଇ କଟକ ଯାଏ ଯାଇଥିଲା ।]

ଏ ମହାରାଜା ଅ୧୨ଙ୍କେ ତେଲେଙ୍ଗା ମୁକୁନ୍ଦଦେବଙ୍କ ପୁଅ ଡିଲି ପାତିଶା ହଜୁରେ ଫେରାଦ ହୋଇଲେ । ପାତିଶା ରାଜା ମାନସିଂହଙ୍କୁ ଓଡ଼ିଶାକୁ ପଠିଆଇଲେ, କହିଲେ ଓଡ଼ିଶାକୁ ଯେ ନାୟକ ହୋଇବ ତାହାକୁ ରାଜା କରିବ । ରାଜା ମାନସିଂଘେ ଅଇଲେ ।

ଏହାଙ୍କ ସଙ୍ଗେ ମୁକୁନ୍ଦଦେବଙ୍କ ପୁଅ ଥିଲେ । ସେ ପୁରୁଷୋତ୍ତମ ବୋଲି ଅଇଲେ । ତାହାଙ୍କୁ ରାମଚନ୍ଦ୍ରଦେବେ ଭେଟିଲେ । ଏ ଉତାରୁ ଚନ୍ଦନଯାତ୍ରା ହୋଇଲେ । ଖଡ଼ି ପ୍ରସାଦ କାହାକୁ ଦେବୁ ଏମନ୍ତ ବୋଲି ସେବକେ ମାନସିଘଂକୁ ପଗ୍ୱରିଲେ । ମାନସିଘଂଙ୍କ ସାଙ୍ଗେ ରାମଚନ୍ଦ୍ର ଦେବ ଥିଲେ, ମୁକୁନ୍ଦଦେବଙ୍କ ପୁଅ ଥିଲେ । ମାନସିଘେଂ ପଛକୁ ଏ ଦୁହିଁଙ୍କି ଗ୍ୱହିଁଲେ । ସେବକଙ୍କୁ ବୋଇଲେ ଖଡ଼ି ପ୍ରସାଦ ଆଣ । ସେବକେ ଖଡ଼ି ପ୍ରସାଦ ଆଣିଲେ । ବିମଳାଇଙ୍କ ଆଗେ ରାଜା ମାନସିଘେଂ ରାମଚନ୍ଦ୍ରଦେବଙ୍କୁ ଖଡ଼ି ପ୍ରସାଦ ଲାଗି କରାଇଲେ । ଓଡ଼ିଶା ରାଜ୍ୟରେ ରାଜା କଲେ । ମୁକୁନ୍ଦଦେବ ପୁଅଙ୍କୁ ଆଳିରେ ରଖାଇଦେଲେ । ଏ ରୂପେ ରାଜ୍ୟ ବାଣ୍ଟିଦେଲେ ।

ମାଦଳାପାଞ୍ଜିରେ ଲିଖିତ ରାମଚନ୍ଦ୍ରଦେବଙ୍କ ଅ୧୨ଙ୍କ ରେ ମାନସିଂହ ଓଡ଼ିଶା ଆସିନଥିଲେ । ୧୨ ଅଙ୍କର ରାଜତ୍ୱକାଳ ହେଲା ୧୦ ବର୍ଷ ବା ୧୫୭୮ । ମାନସିଂହ ଓଡ଼ିଶାକୁ ୧୫୯୨-୯୩ ରେ ଆସିଥିଲେ । ଏ ବୃତ୍ତାନ୍ତ ଗ୍ରହଣୀୟ ନୁହେଁ । 'ପ୍ରାଚୀ ସମିତି' ଦ୍ୱାରା ପ୍ରକାଶିତ ମାଦଳାପାଞ୍ଜିର ପୃ. ୬୩ରେ ରାମଚନ୍ଦ୍ରଦେବଙ୍କ ବିବରଣୀରେ ଲିଖିତ ଅଛି ।

ଆକବରନାମା ଅନୁସାରେ ମୁକୁନ୍ଦଦେବଙ୍କ ପୁଅ 'ତିଲା ରାଜା' କଲକଲା ଘାଟରେ ମାନସିଂହଙ୍କୁ ଭେଟିଲେ, ଯେଉଁ ଭେଟର ସମୟ ଖ୍ରୀ: ୧୫୯୨-୯୩ । ଖ୍ରୀ: ୧୫୬୮ ଠାରୁ ମୁକୁନ୍ଦଦେବଙ୍କ ଉତ୍ତରାଧିକାରୀ ବା ପୁଅଙ୍କ କଥା ଆଫଗାନ୍ ରାଜତ୍ୱରେ ଜଣାଯାଇ ନଥିଲା । ମୋଗଲ ଅଧିକାର ବୋଲି ଜଣାଗଲା । ଏତେ ବର୍ଷ ଏମାନେ କେଉଁଠି ଥିଲେ ? କଲକଲାନିବାସୀ ଶ୍ରୀ ଅଲେଖପ୍ରସାଦ ଦାସଙ୍କ ଠାରୁ ଅଳ୍ପଦିନ ପୂର୍ବେ ଜାଣିଲି ଯେ କୋଲ ପାହାଡ଼ ଉପରେ ଥିବା ଦୁର୍ଗରେ ମୁକୁନ୍ଦଦେବଙ୍କ ପୁଅମାନେ ବନ୍ଦୀ ଥିଲେ । ସେଇଥିର କିମ୍ବଦନ୍ତୀ କଲକଲାରେ ଅଛି । ସେଦିନ କଲକଲାର ମାନସିଂହଙ୍କୁ ଭେଟିବା କଥା ଆକବାରନାମାରେ ଥିବାର ଏ କିମ୍ବଦନ୍ତୀରେ କିଛି ସତ୍ୟ ନିହିତ ଅଛି । ମନେହୁଏ ମୁକୁନ୍ଦଦେବଙ୍କ ସମୟରେ ଆଫଗାନମାନଙ୍କ କଟକ ଅଧିକାରବେଳେ ବନ୍ଦୀ ହୋଇ ସେହି କଲକଲାରେ ସ୍ଥାନ ପାଇଥିଲେ ଖ୍ରୀ: ୧୫୬୮ରେ । ରାଜା ମାନସିଂହ ସେମାନଙ୍କୁ ୧୫୯୨ରେ ବନ୍ଦୀ ଅବସ୍ଥାରୁ ମୁକ୍ତ କରିଥିଲେ । ମାଦଳାପାଞ୍ଜିର କିମ୍ବଦନ୍ତୀ ଭ୍ରାନ୍ତିମୂଳକ ।

Tila Raja joined near Kalkala Ghati but the greatest of the Orissa rulers the Raja of Khurdha still heldout of Sarangarh Ghati (p.209)

ଉପରେ ଉଦ୍ଧୃତ ତିଲାରାଜା କିଏ ? ରାମପ୍ରସାଦ ଚନ୍ଦ ବିହାର-ଓଡ଼ିଶା ପତ୍ରିକାରେ ପ୍ରକାଶିତ 'ମାଦଳାପାଞ୍ଜି' ପ୍ରବନ୍ଧରେ ତିଲାରାଜାଙ୍କୁ ତେଲେଙ୍ଗା ମୁକୁନ୍ଦଦେବଙ୍କର ପୁଅ ବୋଲି ସର୍ବତ୍ର ଚିହ୍ନଟ କରିଛନ୍ତି । କଳକଳା ଘାଟି କଟକ ଜିଲ୍ଲାର ବଇରି-ଧାନମଣ୍ଡଳ ଷ୍ଟେସନର ପଶ୍ଚିମକୁ ୬/୭ ମାଇଲ୍ ଦୂରରେ ଅବସ୍ଥିତ । ସେଠାରେ ଅନେକଗୁଡ଼ିଏ ପର୍ବତମୁଣ୍ଡିଆ ଅଛି ଓ ଗୋଟିଏ ପର୍ବତମୁଣ୍ଡିଆ ଉପରେ ଏକ ଦୁର୍ଗର ଭଗ୍ନାବଶେଷ ଅଛି । ସ୍ଥାନୀୟ କିମ୍ବଦନ୍ତୀରୁ ଜଣାଯାଏ ଯେ ଦୁର୍ଗରେ ମୁକୁନ୍ଦଦେବଙ୍କ ଦୁଇପୁଅ ବନ୍ଦୀ ହୋଇଥିଲେ । ରାଜା ମାନସିଂହ ସେଠାରେ ପହଞ୍ଚିବାବେଳେ ସେମାନେ ମୁକ୍ତ ହୋଇ ତାଙ୍କୁ ସେଠାରେ ଦେଖା କରିଥିଲେ । ଖ୍ରୀ: ୧୫୬୮ ଠାରୁ ୧୫୯୨ ପର୍ଯ୍ୟନ୍ତ ଦୀର୍ଘକାଳ ସମୟରେ ଅନ୍ୟ କୌଣସିଠାରୁ ତେଲେଙ୍ଗା ମୁକୁନ୍ଦଦେବଙ୍କର ଦୁଇ ପୁଅଙ୍କ କଥା ଜଣାଯାଏ ନାହିଁ । ଆକବରନାମା ବହିର ଇଂରାଜୀ ଅନୁବାଦରେ କଳକଳା ଘାଟିରେ ତିଲାରାଜାଙ୍କ ନାମ କେବଳ ମିଳିଲା । ମୁକୁନ୍ଦଦେବଙ୍କ ପୁଅମାନେ କଳକଳାର ଏକ ଗିରିଶୃଙ୍ଗରେ ଅବସ୍ଥିତ ଦୁର୍ଗରେ ବନ୍ଦୀ ଥିବା କିମ୍ବଦନ୍ତୀ ମୁଁ କଳକଳାର ଏକ ସ୍ଥାନୀୟ ଭଦ୍ରବ୍ୟକ୍ତିଙ୍କଠାରୁ ପାଇଥିଲି । ମୋର ବନ୍ଧୁମାନଙ୍କୁ ଅନୁରୋଧ କଲି ସେ ସ୍ଥାନକୁ ଯାଇ ତତ୍‌ସମ୍ପର୍କୀୟ ବହୁତଥ୍ୟ ସଂଗ୍ରହ କରନ୍ତୁ । ଏପର୍ଯ୍ୟନ୍ତ କୌଣସି ବ୍ୟକ୍ତି ଉକ୍ତ କାର୍ଯ୍ୟରେ ଆଗଭର ନ ହେବା ପରିତାପର ବିଷୟ । କଳକଳାର କିମ୍ବଦନ୍ତୀ ଆକବରନାମାଦ୍ୱାରା ସମର୍ଥିତ ହୋଇଥିବାରୁ ତହିଁରେ ବହୁ ଐତିହାସିକ ସତ୍ୟ ନିହିତ ଅଛି ।

କଟକ ଅଧିକାର ପରେ ରାଜା ମାନସିଂହ ସାରଙ୍ଗଗଡ଼ରୁ ଆଫଗାନମାନଙ୍କୁ ବିତାଡ଼ିତ କରି ତାହା ଅଧିକାର କରିଥିଲେ । ଓଡ଼ିଶା ଅଭିଯାନରେ ଆଳି ଓ ସାରଙ୍ଗଗଡ଼ ଦୁଇଟି ସ୍ଥାନ ମାନସିଂହଙ୍କଦ୍ୱାରା ଯୁଦ୍ଧରେ ଅଧିକୃତ ହୋଇଥିଲା । ସେ ଖୋର୍ଦ୍ଧା ଅଧିକାର ପାଇଁ ସୈନ୍ୟ ପଠାଇଥିଲେ, ମାତ୍ର ଖୋର୍ଦ୍ଧା ଅଧିକାର ପାଇଁ ମୋଗଲସମ୍ରାଟ ଆକବର ନିଜେ ବାଧାଦେଇ ମାନସିଂହଙ୍କୁ ଏକ ପ୍ରସିଦ୍ଧ ରାଜବଂଶ ବିରୁଦ୍ଧରେ କାର୍ଯ୍ୟ କରିଥିବାରୁ ତିରସ୍କାର କରିଥିଲେ । ବଙ୍ଗଳା ଇତିହାସର ଦ୍ୱିତୀୟଭାଗ ୨୮୦ ପୃଷ୍ଠାରେ ଲେଖାଅଛି ।

"Akbar disapproved of this rigour to an ancient dynasty that had acknowledged his suzerinty Mansing now received a censure from his master and recalled his troops from Khurda territory. There atlast, the Khurda Raja personally waited to Mansing (31st January 1593) and gave him a daughter in marriage. The conquest of Orissa was thus completed.(p.210)"

ଆବୁଲଫାଜଲଙ୍କର ବୃହତ ଗ୍ରନ୍ଥ ଆକବରନାମାରେ ଓଡ଼ିଶା ଅଧିକାର ଉପରେ ବିସ୍ତାରିତ ବିବରଣୀ ଯାହା ଲିଖିତ ଅଛି, ଉପରେ ତାହାର ଅତି ସଂକ୍ଷିପ୍ତ ବିବରଣୀ ଉଲ୍ଲେଖ କରାଗଲା । ଏଥିରେ କେବଳ ତିଲାରାଜାଙ୍କର ବିବରଣୀ କଳକଳାଠାରେ ବର୍ଣ୍ଣିତ ଅଛି । ଅନ୍ୟ କୁତ୍ରାପି ତାହା ନାହିଁ । ଖୋର୍ଦ୍ଧାରାଜା ରାମଚନ୍ଦ୍ରଦେବଙ୍କ ପାଇଁ ସମ୍ରାଟ ଆକବର ନିଜେ ହସ୍ତକ୍ଷେପ କରିଥିଲେ, କିନ୍ତୁ ତେଲେଙ୍ଗା ମୁକୁନ୍ଦଦେବଙ୍କ ପୁଅମାନଙ୍କ ପ୍ରତି ସମ୍ରାଟଙ୍କର କିଛି ନିର୍ଦ୍ଦେଶ ମିଳିନାହିଁ; କିନ୍ତୁ ମାଦଳାପାଞ୍ଜିରେ ଖୋର୍ଦ୍ଧାରାଜାଙ୍କ ପୁଅମାନଙ୍କର ବିଗ୍ରହ କରିବା କଥା ଉଲ୍ଲେଖ ଅଛି ।

ଓଡ଼ିଶା ଅଧିକାର ପରେ ରାଜା ମାନସିଂହ ଓଡ଼ିଶାରେ ଯେଉଁ ବନ୍ଦୋବସ୍ତ କରିଥିଲେ, ତାହାର ଫାର୍ଶୀ କାଗଜ ଷ୍ଟାର୍ଲିଂ ସାହେବ ପାଇଥିଲେ ଓ ତାହାର ଇଂରାଜୀ ଅନୁବାଦ ବହିରେ ଛପେଇଥିଲେ । ସେଥିରୁ ଦେଖାଯାଏ ଯେ ଖୋର୍ଦ୍ଧାରାଜା ଖୋର୍ଦ୍ଧା ରାଜ୍ୟର ରାଜା ରଖାଇ ତାଙ୍କୁ ୩୫୦୦ ମନସବ୍‌ଦାରୀ ଦେଇଥିଲେ ।

ମାଦଳାପାଞ୍ଜିରୁ ଜଣାଯାଏ ଯେ ଆଳିର ରାଜା ମୁକୁନ୍ଦଦେବଙ୍କ ପୁଅ ଥିଲେ । ମାନସିଂହଙ୍କୁ ଆଳି ରାଜ୍ୟରେ ରଖାଇ ତାଙ୍କୁ କେବଳ ୫୦୦ମନସବ୍‌ଦାରୀରୂପେ ନିଯୁକ୍ତ କରିଥିଲେ । ସାରଙ୍ଗଗଡ଼ର ରାଜା କିଏ ଥିଲେ, ତାହା ଜଣା ନଥିଲେ ମଧ୍ୟ ସେ ମୁକୁନ୍ଦଦେବଙ୍କ ପୁଅ ଥିବା କଥା ଅନେକ ଲେଖିଛନ୍ତି । ରାଜା ମାନସିଂହ ତାଙ୍କୁ ସାରଙ୍ଗଗଡ଼ରେ ରଖାଇ ତାଙ୍କୁ ମଧ୍ୟ ଆଳିପରି ୫୦୦ ମନସବ୍‌ଦାରୀ ନିଯୁକ୍ତ କରିଥିଲେ । ପୂର୍ବେ ବୋଲାଯାଇଛି ଯେ ମାନସିଂହ ଓଡ଼ିଶାର କେବଳ ସାରଙ୍ଗଗଡ଼ ଓ ଆଳି ଯୁଦ୍ଧରେ ଅଧିକାର କରିଥିଲେ । ଯେତେବେଳେ ମୁକୁନ୍ଦଦେବଙ୍କ ପୁଅମାନଙ୍କୁ ରାଜ୍ୟ ଦେବାର ପ୍ରଶ୍ନ ଉଠିଲା, ସେତେବେଳେ ମାନସିଂହଙ୍କ ହାତରେ କେବଳ ସାରଙ୍ଗଗଡ଼ ଓ ଆଳି ରାଜ୍ୟ ଦୁଇଟି ଥିଲା ଓ ସେହି ଦୁଇଟି ରାଜ୍ୟରେ ମୁକୁନ୍ଦଦେବଙ୍କର ପୁଅମାନଙ୍କୁ ରାଜା କରାଇଥିଲେ ।

ଓଡ଼ିଶାର ସ୍ୱାଧୀନତା ଲୋପପରେ ଓ ମୁକୁନ୍ଦଦେବଙ୍କ ମୃତ୍ୟୁପରେ ମୁକୁନ୍ଦଦେବଙ୍କର ଉତ୍ତରାଧିକାରୀମାନଙ୍କର ଓଡ଼ିଶା ରାଜ୍ୟରେ ଆଦୌ ଦାବୀ ନଥିଲା । ସେମାନେ ବନ୍ଦୀ ଥିଲେ । ରାଜା ମାନସିଂହ ସେମାନଙ୍କୁ ମୁକୁଳାଇ ଥିଲେ ଓ ଦୟାକରି ସାରଙ୍ଗଗଡ଼ ଓ ଆଳି ରାଜ୍ୟର ରାଜାରୂପେ ନିଯୁକ୍ତ କରିଥିଲେ । ମୁକୁନ୍ଦଦେବଙ୍କ ରାଜଧାନୀ କଟକ ମୋଗଲ ଅଧିକାରଭୁକ୍ତ ହେଲା । ଓଡ଼ିଶାର ସ୍ୱାଧୀନତା ଲୋପ ପାଇବାପରେ ରାଜା ରାମଚନ୍ଦ୍ରଦେବ ସ୍ୱାଧୀନ ରାଜ୍ୟ ସ୍ଥାପନ କରି ନିଜ ରାଜଧାନୀ ଖୋର୍ଦ୍ଧାରେ ସ୍ଥାପିତ କରିଥିଲେ । ଖୋର୍ଦ୍ଧା ରାଜଧାନୀ ଉପରେ ମୁକୁନ୍ଦଦେବଙ୍କର ବା ତାଙ୍କର ଉତ୍ତରାଧିକାରୀମାନଙ୍କର ବିନ୍ଦୁବିସର୍ଗ

ମାତ୍ର ଅଧିକାର ନଥିଲା । ଶ୍ରୀ ସୁରେନ୍ଦ୍ର ମହାନ୍ତି ମୁକୁନ୍ଦଦେବଙ୍କ ପୁଅମାନଙ୍କୁ ଖୋର୍ଦ୍ଧାରାଜ୍ୟର ଅଂଶୀଦାର ଥିବାର କିପରି ଯୁକ୍ତି ବାହାର କରିଅଛନ୍ତି, ତାହାର ପ୍ରମାଣ ତାଙ୍କ ପାଖରେ ଥାଇପାରେ; କିନ୍ତୁ ପ୍ରାଚୀନ ବା ଆଧୁନିକ ଐତିହାସିକଙ୍କ ପାଖରେ ନାହିଁ । ଏଥିରୁ ପାଠକେ ବୁଝିବେ ଯେ କିଏ ଗାଲୁ ଗଳ୍ପର ଅବତାରଣା କରି ଏହା ସତ୍ୟ ବୋଲି ପ୍ରତିଷ୍ଠିତ କରିବାକୁ ଚାହିଁଛି, ମାତ୍ର ଇତିହାସରେ ଏହା ଲେଖାନାହିଁ ।

ଐତିହାସିକ ଘଟଣାର କ୍ରମ ଉପରେ ଔପନ୍ୟାସିକଙ୍କର ସର୍ବତ୍ର ମୋର ମତଭେଦ ଥିଲେ ମଧ୍ୟ ତାଙ୍କଦ୍ୱାରା ଲିଖିତ 'ନୀଳଶୈଳ' ଉପନ୍ୟାସ ପାଠକରି ମୁଁ ଆପ୍ୟାୟିତ ହୋଇଅଛି । ଏହି ଉପନ୍ୟାସ ଲେଖିବା ଯୋଗୁଁ ସେ ଚିରସ୍ମରଣୀୟ ହୋଇ ରହିବେ । ମୋଗଲ ଯୁଗର ଇତିହାସର ଅସ୍ଥିକଙ୍କାଳ ଉପରେ ସେ ମାଂସପେଶୀ ଲଗାଇ ଯେଉଁ ସୁନ୍ଦର ରୂପ ଇତିହାସକୁ ଦେଇଅଛନ୍ତି, ସେଥିପାଇଁ ସେ ଧନ୍ୟବାଦାର୍ହ ।

'ନୀଳଶୈଳ' ଗ୍ରନ୍ଥର ଶେଷ ଅଧ୍ୟାୟରେ ଆମ୍ଭେମାନେ ନୀଳଶୈଳାଧିନାଥଙ୍କୁ ପୁରୀ ଜଗନ୍ନାଥ ମନ୍ଦିରରେ ନ ପାଇ ଚିଲିକା ହ୍ରଦର ଏକ ଅପନ୍ତରା ସ୍ଥାନରେ ରହିଥିବାର ଦେଖି ମନେହେଉଛି ନୀଳଶୈଳ ପୁସ୍ତକ ଅସମ୍ପୂର୍ଣ୍ଣ ରହିଛି ।। ଲେଖକ ବୋଧହୁଏ ଏଥିର ଦ୍ୱିତୀୟ ଭାଗ ଲେଖି ଉପନ୍ୟାସ ସଂପୂର୍ଣ୍ଣ କରିବେ । ଜଗନ୍ନାଥ ମହାପ୍ରଭୁଙ୍କୁ ଜଗନ୍ନାଥ ମନ୍ଦିରରୁ ଅପସାରଣ କରିବାର ପ୍ରଧାନ ଲକ୍ଷ୍ୟ ହେଉଛି ବିଧର୍ମୀ ସରକାରକୁ ଆର୍ଥନୀତିକ ଅନଟନରେ ପକାଇ ପ୍ରତିଶୋଧ ନେବା । ଜଗନ୍ନାଥ ମହାପ୍ରଭୁ ମନ୍ଦିରରେ ନଥିବାରୁ ଜଗନ୍ନାଥ ମନ୍ଦିରକୁ ଆସୁଥିବା ସହସ୍ର ସହସ୍ର ଯାତ୍ରୀର ସ୍ରୋତ ଶୁଷ୍କ ହୋଇଗଲା । ସରକାର ଯେଉଁ ଯାତ୍ରୀକରରୁ ନଅଲକ୍ଷ ଟଙ୍କା ପାଉଥିଲେ, ତାହା ମିଳିଲା ନାହିଁ । ମହମ୍ମଦ ତକୀଖାଁଙ୍କର ମୃତ୍ୟୁପରେ ମୁର୍ଶିଦ୍ କୁଲିଖାଁ -- ଦ୍ୱିତୀୟ ଓଡ଼ିଶାର ନାଏବ୍ ନଜିମ୍ ନିଯୁକ୍ତ ହେଲେ । ସେ ସୁଶାସକ । ଯାତ୍ରୀକରର ପୁନଃଉଦ୍ଧାର ପାଇଁ ସେ ଖୋର୍ଦ୍ଧା ରାଜାଙ୍କୁ ସନ୍ତୁଷ୍ଟ କରି ଜଗନ୍ନାଥ ମୂର୍ତ୍ତିଙ୍କୁ ପୁରୀ ମନ୍ଦିରକୁ ଫେରାଇ ଆଣିବାର ଯତ୍ନ କଲେ । ଏହାଦ୍ୱାରା ପୁରୀ ମନ୍ଦିର ପରିଚ୍ଳନାରେ ସରକାର ଆଉ ହସ୍ତକ୍ଷେପ କଲେନାହିଁ । ମନ୍ଦିର ପରିଚ୍ଳନାରେ ସମସ୍ତେ ସନ୍ତୁଷ୍ଟ ରହିଲେ । ଏହି ଐତିହାସିକ ଘଟଣାକୁ ଔପନ୍ୟାସିକ ରଙ୍ଗୀନ୍ ଚିତ୍ରରେ ସଜାଇ ନୀଳଶୈଳାଧିନାଥଙ୍କୁ ମନ୍ଦିର ଭିତରକୁ ନ ଆଣିବା ଯାଏ ନୀଳଶୈଳ ଗ୍ରନ୍ଥ ଅସମ୍ପୂର୍ଣ୍ଣ ରହିବ ।

ମହମ୍ମଦ ତକିଖାଁଙ୍କର ମୃତ୍ୟୁ ୧୭୩୪ ଖ୍ରୀଷ୍ଟାବ୍ଦରେ ହୋଇଥିଲା । History of Bengal --Vol II states as follows on Murshid Quli Khan. (page. 428)

Orissa flourshed under its new Deputy Governor Murshid Quli Khan-II. He received much valuable assistance from his deputy. Mir Habib who had accompanied him there from Dacca. The local Zamindars were tactfully brought under control and the financial condition of the Government was improved partly by curtailment of unnecessary expenses and partly by introduction of more efficient arrangements for the realisation of revenue. During the administration Mahammad Taqui Khan, Ramchandra Deva - II of the Khurda had removed the idol of Jagannath from Puri to a place situated beyound the Chilika lake which deprived the Government of revenue amounting to nine laks of Rupees a year, collected from the pilgrims. But Mursid Quali Khan conciliated him and brought back the idol to Puri, the restoration of whose worship stopped a source of heavy financial loss to the Orissa government.



# କିମ୍ବଦନ୍ତୀ ଓ ମେହେର ସାହିତ୍ୟ

ସତ୍ୟ ଓ ଗ୍ୟୁଷ ଘଟନା ଲୋକମୁଖରେ ପ୍ରଗ୍ୟରିତ ହେଲାବେଳେ ତାହା କଥକଦ୍ୱାରା ପଲ୍ଲବିତ ହୋଇ ନାନାପ୍ରକାର ଆକୃତି ଧାରଣ କରି ସତ୍ୱର ସୀମାକୁ ଟପିଯାଏ ଓ କାଳକ୍ରମେ ଦେଶକାଳପାତ୍ର ଭେଦରେ ତାହା ଏପରି ଭାବରେ ପଲ୍ଲବିତ ହୋଇ ଜନପ୍ରିୟ ବିବରଣ ଆକାରରେ ଦେଶରେ ପ୍ରଚଳିତ ହୋଇଥାଏ । ସମୟକ୍ରମେ ସେହି ବିବରଣଟି ଯଦି ଲିଖିତାକାର ଧାରଣ କରେ, ତହିଁରେ କଳ୍ପନାବିଳାସ ଅଧିକମାତ୍ରାରେ ପ୍ରବେଶ ଲାଭ ନ କରି ସ୍ଥାୟୀ ଭାବରେ ରହିଯାଏ ଓ ତାହାହିଁ କିମ୍ବଦନ୍ତୀ ବା ଜନଶ୍ରୁତି ରୂପେ ଦେଶରେ ଗୃହୀତ ହୁଏ । ଏସବୁ କିମ୍ବଦନ୍ତୀ ମୂଳରେ ଇତିହାସର କଥା, ସମାଜ, ଧର୍ମମତ ଚିରସଂଶ୍ଳିଷ୍ଟ ରହିଥାଏ ଓ ତାହା କବିମାନଙ୍କ କୃପାରୁ ସାହିତ୍ୟରେ ସ୍ଥାନ ପାଇ ଅଭିନବ ରୂପ ଧାରଣ କରେ ।

କିମ୍ବଦନ୍ତୀର ପ୍ରଭାବ ଓଡ଼ିଶାର ପ୍ରାଚୀନ ସାହିତ୍ୟରେ ବିରଳ କହିଲେ ଚଳେ । 'ଗ୍ୟଟ-ଇଚ୍ଛାବତୀ' ବା 'ଶଶିସେଣା' କିମ୍ବଦନ୍ତୀର ଗୀତିନାଟ୍ୟ ବା କାବ୍ୟ ଆକାରରେ ଜନପ୍ରିୟ ହୋଇଛି । 'ବଉଳା ଗାଈ ବୃତ୍ତାନ୍ତ' ବା 'ବଉଳା ଚରିତ' ଉପରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ପରିପୁଷ୍ଟ ହେବାର ଜଣାଯାଏ । ଯାହାହେଉ କିମ୍ବଦନ୍ତୀମୂଳକ ଓଡ଼ିଶାର ଇତିହାସ ଉପରେ ଯେଉଁସବୁ କାଳ୍ପନିକ କାବ୍ୟ ଲିଖିତ ହୋଇଛି, ତାହା ଉପରେ ପ୍ରାଚୀନ ସାହିତ୍ୟରେ ଐତିହାସିକ କିମ୍ବଦନ୍ତୀମୂଳକ 'ଗ୍ୟଟ-ଇଚ୍ଛାବତୀ' ବ୍ୟତୀତ ଆଉ କିଛି ଗ୍ରନ୍ଥ ଲିଖିତ ହୋଇଥିବାର କଥା ମୋର ଦୃଷ୍ଟିରେ ପଡ଼ିନାହିଁ ।

ଓଡ଼ିଶାରେ ପ୍ରଚଳିତ 'ମାଦଳାପାଞ୍ଜି'ର ପ୍ରଭାବ ପ୍ରାଚୀନ ସାହିତ୍ୟ ଉପରେ ନାହିଁ କହିଲେ ଚଳେ । 'ମାଦଳାପାଞ୍ଜି'ର କିମ୍ବଦନ୍ତୀ ପଲ୍ଲବିତ ଓ ପରିବର୍ଦ୍ଧିତ ହୋଇ ଓଡ଼ିଶାର ବିଶେଷତଃ କଟକ ପୁରୀ ଜିଲ୍ଲାର ଅନେକ ପାଞ୍ଜିକାର ନାହାକମାନଙ୍କଠାରେ ଥିବା ଲିଖିତାକାର ପୋଥିରୁ ଦୋଳପୂର୍ଣ୍ଣିମା ଦିନ ନୂତନ ପାଞ୍ଜି ସମ୍ପର୍କରେ ପଠିତ ହେବାର ରୀତି ଅଦ୍ୟାପି ପ୍ରଚଳିତ ଅଛି । ପୁରୀର 'ମାଦଳାପାଞ୍ଜି'ର କିମ୍ବଦନ୍ତୀ ଏହି ସୂତ୍ରରେ ଓଡ଼ିଶାର ପୁରପଲ୍ଲୀରେ ପ୍ରଚଳିତ ହୋଇଥିବାର ଅନୁମାନ ସମ୍ଭବପର । 'ମାଦଳାପାଞ୍ଜି'ର ଗଙ୍ଗବଂଶୀୟ ଉପାଖ୍ୟାନ

ଉପରେ ସଂସ୍କୃତ ଭାଷାର 'ଗଙ୍ଗବଂଶାନୁଚରିତ' ନାମକ ଖଣ୍ଡିଏ ସଂସ୍କୃତ କାବ୍ୟ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ ହୋଇଥିଲେ ମଧ୍ୟ ଦକ୍ଷିଣ ଓଡ଼ିଶାର ପ୍ରାଚୀନ କବିମାନଙ୍କ ଉପରେ ତାହାର ପ୍ରଭାବ ଆଦୌ ପଡ଼ିଥିଲା ପରି ମନେହୁଏ ନାହିଁ । ପାଟନା ସମ୍ବଲପୁର ଅଞ୍ଚଳର ଚୌହାନ୍ ବଂଶୀୟ କିମ୍ବଦନ୍ତୀ ଉପରେ ସଂସ୍କୃତଭାଷାରେ 'କୋଶଳାନଳ' ନାମକ ଖଣ୍ଡିଏ କାବ୍ୟ ରଚିତ ହୋଇଥିବାର ପ୍ରମାଣ ମିଳେ । ଓଡ଼ିଆ ଭାଷାର କାବ୍ୟରେ ଚୌହାନ କିମ୍ବଦନ୍ତୀ ସ୍ଥାନ ପାଇଥିବାର କଥା ମୋତେ ଜଣାନାହିଁ । ଯାହାହେଉ ପ୍ରାଚୀନ ଓଡ଼ିଆ ସାହିତ୍ୟରେ କିମ୍ବଦନ୍ତୀମୂଳକ ଲେଖା ନାହିଁ କହିଲେ ଚଳେ । ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଶେଷାର୍ଦ୍ଧଠାରୁ କାଳ୍ପନିକ ଓଡ଼ିଆ କାବ୍ୟର ଲେଖା ଓଡ଼ିଶାରେ ପ୍ରଚଳିତ ଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ତଦବଧି ତିନିଶହ ବର୍ଷ କାଳ ମଧ୍ୟରେ ଅନେକ କାଳ୍ପନିକ କାବ୍ୟ ଓଡ଼ିଆରେ ରଚିତ ହୋଇଥିଲେ ମଧ୍ୟ ତହିଁର ନାୟକ ଓ ନାୟିକାଙ୍କୁ କବିମାନେ ଓଡ଼ିଶାର ପ୍ରଚଳିତ କିମ୍ବଦନ୍ତୀରୁ ସଂଗ୍ରହ କରିନଥିଲେ ।

ଖ୍ରୀଷ୍ଟୀୟ ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାରେ ଇଂରାଜୀ ଭାଷା ଶିକ୍ଷା ପ୍ରଚଳିତ ହେବାରୁ ଇଂରାଜୀ ସାହିତ୍ୟର ମାଧ୍ୟମରେ ଶିକ୍ଷିତ ଲୋକମାନେ ଓଡ଼ିଆ ସାହିତ୍ୟରେ ନୂତନ ଚିନ୍ତାଧାରା ସୃଷ୍ଟି କରିବାର ପ୍ରୟାସ କରିଥିଲେ । ଏମାନଙ୍କ ମଧ୍ୟରେ କବିବର ରାଧାନାଥ ରାୟ ଅଗ୍ରଣୀ ଥିଲେ । ୧୮୭୨ରେ ଇଂରାଜୀ ଭାଷାରେ ହଣ୍ଟର ସାହେବଙ୍କ ଲିଖିତ ଓଡ଼ିଶାର ଇତିହାସ ପ୍ରକାଶିତ ହେବାରୁ ଓଡ଼ିଶାର ଇଂରାଜୀ ଶିକ୍ଷିତ ଲୋକମାନେ 'ମାଦଳାପାଞ୍ଜି'ର କିମ୍ବଦନ୍ତୀ ମୂଳରେ ଇତିହାସ ପାଠ କରିବାର ସୁଯୋଗ ପାଇଥିଲେ । ତତ୍‌ପୂର୍ବରୁ ୧୮୨୫ରେ ଷ୍ଟାର୍ଲିଂ ସାହେବଙ୍କ କୃତ 'ମାଦଳାପାଞ୍ଜି'ର ଉପାଦାନ ଉପରେ ଲିଖିତ ଓଡ଼ିଶାର ଇତିହାସ ଇଂରାଜୀ ଭାଷାବିଜ୍ଞ ବୈଦେଶିକମାନେ କେବଳ ଜାଣିଥିଲେ ।

୧୮୪୫ରେ ଭବାନୀଚରଣ ବନ୍ଦୋପାଧ୍ୟାୟ 'ମାଦଳାପାଞ୍ଜି'ର ବିବରଣ ଉପରେ ନିର୍ଭର କରି 'ପୁରୁଷୋତ୍ତମ ଚନ୍ଦ୍ରିକା' ନାମଧେୟ ଖଣ୍ଡିଏ ବଙ୍ଗଳାଭାଷାରେ ପଦ୍ୟପୁସ୍ତକ ମୁଦ୍ରିତ କରିଥିଲେ । ଓଡ଼ିଶାବାସୀ ଅବଶ୍ୟ କେତେଜଣ ତାହା ପାଠକରି ଥାଇପାରନ୍ତି । ବ୍ରଜକିଶୋର ଘୋଷଙ୍କର ପୁରୀର ଇତିହାସ ଇଂରାଜୀରେ ୧୮୪୮ରେ ମୁଦ୍ରିତ ହୋଇଥିଲା । ହଣ୍ଟର ସାହେବଙ୍କ ବହି ଓଡ଼ିଶାରେ ଯେପରି ସମାଦୃତ ହୋଇଥିଲା, ତତ୍‌ପୂର୍ବରୁ ପ୍ରକାଶିତ ବହିଗୁଡ଼ିକ ସେପରି ଭାବରେ ହୋଇନଥିଲା ବୋଲି ମୋର ବିଶ୍ୱାସ । ପ୍ରକୃତରେ ୧୮୫୦ ଓ ୧୮୭୫ ମଧ୍ୟରେ ଲିଖିତ ଓଡ଼ିଆ ଗଦ୍ୟ ବା କବିତା ପୁସ୍ତକର ଏକାନ୍ତ ଅଭାବ ଥିବାର ଦେଖାଯାଏ । ମୁଁ କିନ୍ତୁ ଏହି ସମୟର କିଛି ଲେଖା ଦେଖିବାର ସୁଯୋଗ ପାଇନାହିଁ,

ପାଠ୍ୟପୁସ୍ତକ କେତୋଟି ବ୍ୟତୀତ । ତତ୍ପରେ ୧୮୭୯ ରେ ପ୍ୟାରିମୋହନ ଆଚାର୍ଯ୍ୟଙ୍କର ଓଡ଼ିଆ ଭାଷାରେ ଲିଖିତ 'ଓଡ଼ିଶାର ଇତିହାସ' ମୁଦ୍ରିତ ହୋଇଥିଲା । ସେହି ଗ୍ରନ୍ଥର ପ୍ରଚାର ଦ୍ୱାରା ମାଦଳାପାଞ୍ଜିର କିମ୍ବଦନ୍ତୀ ବହୁଳ ଭାବରେ ଓଡ଼ିଶାର ଶିକ୍ଷିତ ସମାଜରେ ପ୍ରଚଳିତ ହୋଇଥିଲା । ଅବଶେଷରେ ୧୮୮୦-୯୦ ମଧ୍ୟରେ ସୀତାନାଥ ରାୟଙ୍କ ଲିଖିତ 'ଉତ୍କଳ ଇତିବୃତ୍ତ' ଅପର ପ୍ରାଇମେରୀ ସ୍କୁଲସମୂହରେ ପାଠ୍ୟପୁସ୍ତକ ହେବାରୁ 'ମାଦଳାପାଞ୍ଜି'ର କିମ୍ବଦନ୍ତୀ ଓଡ଼ିଶାର ତତ୍‌କାଳୀନ ଆଧୁନିକ ଲେଖାପଢ଼ା ଜାଣିବା ଲୋକମାନଙ୍କ ମଧ୍ୟରେ ବିଶେଷ ଭାବରେ ପ୍ରଭାବ ପକାଇଥିଲା । ୧୮୭୫ ଓ ୧୮୮୦ ରେ ରାଜେନ୍ଦ୍ରଲାଲ ମିତ୍ରଙ୍କ 'ଏଣ୍ଟିକ୍ୱିଟିଜ୍ ଅଫ୍ ଓରିଶା' ପ୍ରତ୍ନତାତ୍ତ୍ୱିକ ଗ୍ରନ୍ଥ ମଧ୍ୟ ମାଦଳାପାଞ୍ଜିର ଉପାଦାନ ଉପରେ ଲିଖିତ ହୋଇଥିଲା; କିନ୍ତୁ ଓଡ଼ିଶାରେ ଏହାର ପାଠ ସର୍ବସାଧାରଣ ମାଧ୍ୟମରେ ପ୍ରବେଶ କରିଥିଲା ବୋଲି ସନ୍ଦେହ ହୁଏ । ତତ୍‌କାଳୀନ ଇଂରାଜୀ ଭାଷାରେ ପ୍ରବୀଣ ଲୋକମାନେ ବୋଧହୁଏ ଏହା ପାଠ କରିଥିଲେ ।

ଆଧୁନିକ ଯୁଗର ଓଡ଼ିଆ କବିମାନଙ୍କ ମଧ୍ୟରେ ରାଧାନାଥ ରାୟ 'ମାଦଳାପାଞ୍ଜି'ର କିମ୍ବଦନ୍ତୀରୁ କାବ୍ୟର ନାୟିକ ନାୟିକା ଓ ବିବରଣ ସଂଗ୍ରହ କରି 'କେଦାରଗୌରୀ', 'ନନ୍ଦିକେଶରୀ' 'ପାର୍ବତୀ', 'ଯଯାତିକେଶରୀ' ପ୍ରଭୃତି କାବ୍ୟ ରଚନା କରିଥିଲେ । 'ଉଷା'ରେ ମୟୂରଭଞ୍ଜ ରାଜବଂଶର କେତେକ କିମ୍ବଦନ୍ତୀ ସ୍ଥାନ ପାଇଛି । 'ଚିଲିକା'ରେ ମଧ୍ୟ 'ମାଦଳାପାଞ୍ଜି'ର କିମ୍ବଦନ୍ତୀ ବର୍ଣ୍ଣିତ ଅଛି । ଜାତୀୟ କିମ୍ବଦନ୍ତୀର ଉପାଦାନ ସାହିତ୍ୟ ସୃଷ୍ଟି ପାଇଁ ରାଧାନାଥ ବେଶ୍ କୃତିତ୍ୱ ଦେଖାଇଅଛନ୍ତି । ତାଙ୍କର ପ୍ରଭାବ ପରବର୍ତ୍ତୀ ସମସ୍ତ ଲେଖକମାନଙ୍କ ଉପରେ ପଡ଼ିଛି ।

ରାଧାନାଥଙ୍କ 'ଚିଲିକା' ମୁଦ୍ରିତ ହେବାପରେ ଗଙ୍ଗାଧର ମେହେରଙ୍କ 'ଉତ୍କଳଲକ୍ଷ୍ମୀ' ୧୮୯୪ରେ ଅସଂପୂର୍ଣ୍ଣ ଭାବରେ ପ୍ରକାଶିତ ହୋଇଥିଲା ଓ ପରେ ୧୯୧୪ରେ ତାହାର ପୂର୍ଣ୍ଣବିକାଶ ଲଭିଥିଲା । 'ଗଙ୍ଗାଧର ଗ୍ରନ୍ଥାବଳୀ' ୧୯୮ ପୃଷ୍ଠାରେ ମେହେର କବି ମାଦଳାପାଞ୍ଜିର ଅଳ୍ପ କେତୋଟି କିମ୍ବଦନ୍ତୀମୂଳକ ରାଜାଙ୍କର ନାମ ଉଲ୍ଲେଖ କରିଅଛନ୍ତି; ଯଥା 'ଲଲାଟକେଶରୀ' ଭୁବନେଶ୍ୱର ମନ୍ଦିରର ନିର୍ମାଣକର୍ତ୍ତା (୨) ନରସିଂହଦେବ (ଲାଙ୍ଗୁଳା ନରସିଂହ ଦେବ) କୋଣାର୍କ ମନ୍ଦିରର ନିର୍ମାଣକର୍ତ୍ତା (୩) ଅନଙ୍ଗଭୀମଦେବ (ଅନଙ୍ଗଭୀମଦେବ ପୁରୀ ମନ୍ଦିର ନିର୍ମାଣ କର୍ତ୍ତା) । ତତ୍ପରେ ୧୯୯ ପୃଷ୍ଠାରେ ପାଟଣା ସମ୍ବଲପୁରର ଚୌହାନବଂଶୀୟ କିମ୍ବଦନ୍ତୀମୂଳକ ରାଜାମାନଙ୍କ ମଧ୍ୟରୁ (୧) ରମାଇ ଦେବ (୨) ବଳରାମ ଦେବ ବିଷୟ କାବ୍ୟରେ ବର୍ଣ୍ଣିତ ଅଛି । ଏହିରୂପେ ମେହେର କବି ଓଡ଼ିଶାର କିମ୍ବଦନ୍ତୀକୁ

ତାଙ୍କ କାବ୍ୟରେ ସ୍ଥାନଦେଇ ସାହିତ୍ୟରେ ସୃଜନଶୀଳତାର ପରିଚୟ ଦେଇଅଛନ୍ତି । ମେହେର କବିଙ୍କର 'ଉତ୍କଳଲକ୍ଷ୍ମୀ' ନାୟିକା ଦେଶମାତୃକା ହୋଇଥିବାରୁ ତହିଁରେ ଅନ୍ୟ ନାୟକ ଓ ନାୟିକାଙ୍କର ସ୍ଥାନ ନଥିଲା ।

ଜାତୀୟ କିମ୍ବଦନ୍ତୀରୁ ଯେଉଁସବୁ କଥା ସମସାମୟିକ ପ୍ରମାଣଦ୍ୱାରା ସମର୍ଥିତ ହୁଏ, ତାହାକୁ ଐତିହାସିକ କିମ୍ବଦନ୍ତୀ ବୋଲାଯାଏ ଓ ଯେଉଁସବୁ କିମ୍ବଦନ୍ତୀ କଥା ଇତିହାସ ଦ୍ୱାରା ସମର୍ଥିତ ହୁଏନାହିଁ ତାହା ଜନପ୍ରିୟ କିମ୍ବଦନ୍ତୀ । ଜନପ୍ରିୟ କିମ୍ବଦନ୍ତୀ ଉପରେ ବଳିଷ୍ଠ କବିମାନେ କାବ୍ୟ ରଚନା କରି କବିକଳ୍ପନା ଦ୍ୱାରା ଜାତୀୟ ସାହିତ୍ୟକୁ ସମୃଦ୍ଧ କରନ୍ତି । ଇଂରେଜ କବି 'ଟେନିସନ୍'ଙ୍କର 'Idylls of the king' କାବ୍ୟଟି ଏହି ଶ୍ରେଣୀଭୁକ୍ତ । ରାଜା ଆର୍ଥର ଇଂଲଣ୍ଡର ଜଣେ ଐତିହାସିକ ରାଜା ନହେଲେ ମଧ୍ୟ ଖ୍ରୀଷ୍ଟଧର୍ମ ପ୍ରଚାରର ଜଣେ କାଳ୍ପନିକ ରାଜା । କବି ଟେନିସନ ସେହି କିମ୍ବଦନ୍ତୀମୂଳକ ଉପାଖ୍ୟାନ ଉପରେ ଯେଉଁ ମନୋଜ୍ଞ କାବ୍ୟ ଇଂରାଜୀରେ ଲେଖିଛନ୍ତି, ତାହା ଇଂରାଜୀ ଜାତୀୟ ସାହିତ୍ୟକୁ ଖୁବ୍ ପରିପୁଷ୍ଟ କରିଛି । ଏଣୁ ଜାତୀୟ କିମ୍ବଦନ୍ତୀମୂଳକ ଉପାଖ୍ୟାନ ଉପରେ ଲିଖିତ କାବ୍ୟ ଓ କବିତା ସର୍ବଥା ସମାଦୃତ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।



ଗଙ୍ଗାଧର ସାହିତ୍ୟ ଏକ ଅଧ୍ୟୟନ - ସଂ- ଗଣେଶରାମ ନାହାକ, ସାରସ୍ୱତ ପୁସ୍ତକ ଭଣ୍ଡାର, ସମ୍ବଲପୁର, ୧୯୮୭

# କଟା ଘା'ରେ ଚୂନ
## ବା
## ଭଞ୍ଜ ରାଜଧାନୀ ହରିହର ଗଡ଼ର ଦୁର୍ଗତି

(୧)

"ଛି ! ଯବନଗୁଣ୍ଡାଙ୍କୁ ପୁଣି ସାହାଯ୍ୟ !" ଯେଉଁମାନଙ୍କ ଲାଗି ଦେଶ ଆଜି ଛାରଖାର, ଦେବବିଗ୍ରହ ଚୂର୍ଣ୍ଣୀଭୂତ, ଚାରୁକଳାମଣ୍ଡିତା ଜନ୍ମଭୂମି ବିକଳାଙ୍ଗୀ, ସ୍ୱାଧୀନତା ଦେବୀ ବନ୍ଦିନୀ; ଯାହାଙ୍କ କରପୀଡ଼ାରେ ଦେଶ ଉତ୍ସନ୍ନପ୍ରାୟ, ଚିର ଶାନ୍ତି ଘୋର ଅଶାନ୍ତିରେ ପରିଣତ; ସେହି ଯବନମାନଙ୍କୁ ପୁଣି ସାହାଯ୍ୟ ! ସବୁ ଜାଣି ସୁଦ୍ଧା ଅନିଷ୍ଟକାରୀକୁ ପ୍ରଶ୍ରୟ ଦେବି ? ପୁଣି ଜାଣିଶୁଣି ଅନର୍ଥ ଆଣି ଘରେ ପୂରାଇବି ? x x x x ଶିଶୁ ପାର୍ଶ୍ୱରେ କାଳ-ଭୁଜଙ୍ଗ ଛାଡ଼ିଦେଲା ପରି ରାଜ୍ୟରେ ନିଷ୍ଠୁର ଯବନ ଭର୍ତ୍ତି କରାଇବି ? ଫଳରେ ମୁଁ ରାଜା ହୋଇ ରାଜପଦର ଅଯୋଗ୍ୟ -- ଏହାହିଁ ପ୍ରକାଶ ପାଇବ । x x x x ସେମାନଙ୍କର ବାହୁବଳ ଅଛି, ବହୁ ସୁଶୃଙ୍ଖଳିତ ସୈନ୍ୟଦଳ ଅଛନ୍ତି, ବହୁସଂଖ୍ୟକ ତୋପ ଅଛି; ଥାଉ ସେଥିପାଇଁ ଚିନ୍ତା ନାହିଁ । ନିଜକୁ ଅକ୍ଷମ ମଣି ଯୁଦ୍ଧରୁ ବିରତ ହେବି ? ଏହା କଦାପି ହୋଇ ନପାରେ । ଭାଗ୍ୟ ଦେବୀ ଉଦ୍‌ଯୋଗୀର ପକ୍ଷପାତୀ -- ତେବେ କିପାଇଁ ଉଦ୍‌ଯୋଗରେ ତ୍ରୁଟି କରିବି ? ଦୁର୍ଭାଗ୍ୟରୁ ଉତ୍କଳେଶଙ୍କର ଅକାଳରେ ପତନ ହେଲା, ନଚେତ୍ ଯବନପାଦ ଉତ୍କଳବକ୍ଷରେ ସହଜରେ ପଡ଼ି ପାରି ନଥା'ନ୍ତା । ସେ ଗତ କଥା । 'ଗତସ୍ୟ ଶୋଚନା ନାସ୍ତି ।' ଉତ୍କଳେଶ୍ୱରଙ୍କର ପତନ ହୋଇଅଛି ସତ୍ୟ; ମାତ୍ର ସାମନ୍ତ ରାଜାମାନେ କି ହୀନବଳ ହୋଇଅଛନ୍ତି ? ନା- ମିଥ୍ୟା କଥା । ଯୁଦ୍ଧରେ ପରାଜିତ ହେବ -- ରାଜ୍ୟ ରାଜପଣ ହରାଇବି ପଛକେ, ତଥାପି ପୁତ୍ରପ୍ରତିମ ନିରୀହ ପ୍ରଜାମାନଙ୍କଠାରେ ନିନ୍ଦାଭାଗୀ ହେବି ନାହିଁ । ହାୟ ! ପିତା ହୋଇ ପୁତ୍ରର ଏପରି ଦୁର୍ଦ୍ଦଶା ଦେଖି କିଏ ସ୍ଥିର ରହିପାରେ ? କଳାପାହାଡ଼ ଯାହା କରିଯାଇଅଛି, ଇତିହାସ ଚିରକାଳ ତାହାର ନିନ୍ଦା କରିବ ! ତାହା ଭାବିଲେ କାହାର ହୃଦୟ ବିଚଳିତ ନ ହେବ ? ସେହିଦିନୁ ଦେଶ ଯବନର ଛତ୍ରାଧୀନ । ସେହିଦିନୁ କର ବନ୍ଦୋବସ୍ତ-ବ୍ୟାଜରେ ଅର୍ଥଶୋଷଣର ସୂତ୍ରପାତ ହେଲା । ଏହି ସ୍ୱଳ୍ପଦିବସ ପୂର୍ବେ ମୁର୍ଶିଦ୍‌କୁଲିଖାଁ ଯେଉଁ ବନ୍ଦୋବସ୍ତ କରି ଯାଇଅଛି, ତାହା କି ରାଜା, କି ପ୍ରଜା, ଉଭୟଙ୍କ

ପକ୍ଷରେ କ୍ଷତିକର ହୋଇଅଛି । x x x ତୀର୍ଥଯାତ୍ରା ହିନ୍ଦୁର କୌଳିକ ଧର୍ମକାର୍ଯ୍ୟ -- ଏହା ଆବହମାନ କାଳରୁ ଚଳି ଆସୁଅଛି--ସେଥିରେ ପୁଣି ବାଧା--ତାହାପାଇଁ ପୁଣି ଗୋଟାଏ କର ସୃଷ୍ଟି ! ରାଜାପ୍ରଜା କାହାରି ଟିକିଏ ସ୍ୱଚ୍ଛଳତା ନାହିଁ, ମାନମହତ୍ତ୍ୱ ରହିବା ନିତାନ୍ତ କଷ୍ଟକର ହୋଇପଡ଼ିଅଛି । ପ୍ରକୃତି-ରଞ୍ଜନ ରାଜଧର୍ମ — ମାତ୍ର ପ୍ରଜାପୀଡ଼ନ ଏମାନଙ୍କର ମୁଖ୍ୟ କାର୍ଯ୍ୟ ! ବିଧର୍ମୀ କଣ କରି ନ ପାରେ ? ତେଣୁ ପ୍ରଜାମାନେ ଯବନକୁ ରାଜା ବୋଲିବାକୁ କୁଣ୍ଠିତ । ଆଉ ଆମ୍ଭମାନଙ୍କ କଥା ତ କହିଲେ ନ ସରେ । ଥିଲୁଁ କଣ, ଏବେ କ'ଣ କାହାଠାରେ ମସ୍ତକ ନତ କରୁଅଛୁଁ ? ଏହା ଭାଗ୍ୟବିପର୍ଯ୍ୟୟ ନୁହେଁ ତ ଆଉ କ'ଣ ? ବର୍ତ୍ତମାନ ମୋଗଲ ସୁବାଦାର ଓ ଉତ୍କଳର ନିଜାମ ଦେବାନଙ୍କ ମଧ୍ୟରେ ଭୀଷଣ ଗୃହବିବାଦ ଉପସ୍ଥିତ ହୋଇଅଛି । ଏପରି ସମୟରେ 'ଦ୍ୱୟୋର୍ବିବାଦେ ତୃତୀୟସ୍ୟ ଲାଭଃ' — ନୀତି ନ୍ୟାୟତଃ ଆଚରଣ କରାଯାଇପାରେ । ଏହା ପରିବର୍ତ୍ତରେ ଯଦି ସେମାନଙ୍କୁ ସହାୟତା କରେଁ, ତେବେ ମୋର ଅତିଶୟ ଉନ୍ନତି ହେବାର — ଯବନ ଦ୍ୱାରରେ ସମଧିକ ସମ୍ମାନ ହେବାର ସମ୍ଭାବନା । କିନ୍ତୁ ତଦ୍ଦ୍ୱାରା ପ୍ରଜାମାନଙ୍କର କି ଲାଭ ହେବ ? ସେମାନଙ୍କୁ ଦୁଃଖଦାବାନଳରେ ପୋଡ଼ାଇଲେ ଚିରକାଳ ପାଇଁ କଳଙ୍କ ଅର୍ଜିବି । ଛି ଛି ! କଣ ଭାବୁଛି ! ମୋ ପକ୍ଷରେ ଏ କଥା ମୁହଁରେ ଆଣିବା ଉଚିତ ନୁହେ । ଶତ୍ରୁ ପ୍ରତି ବାଧା ଭିଆଇ ତାହାକୁ ଦୂର କରିବା ରାଜାର କର୍ତ୍ତବ୍ୟ — ମୁଁ ରାଜା ହୋଇ ଏହା କି କରିବାକୁ ଅକ୍ଷମ ?''

ମହାରାଜ ଚକ୍ରଧର ଭଞ୍ଜ ନିଜ ବିଶ୍ରାମ ପ୍ରକୋଷ୍ଠରେ ଏହିପରି ନାନା କଥା ଭାବି ଚିନ୍ତି ଶେଷରେ ଯୁଦ୍ଧ କରିବାପାଇଁ କୃତନିଶ୍ଚୟ ହେଲେ ଏବଂ ବଙ୍ଗ ସୁବାଦାର ଆଲିବର୍ଦ୍ଦି ଖାଁ ନିକଟକୁ ସାହାଯ୍ୟ ଦାନ ପରିବର୍ତ୍ତରେ ଯୁଦ୍ଧ ଆହ୍ୱାନପତ୍ର ଦେବାର ମନସ୍ଥ କଲେ । ମନରୁ ଦୁଶ୍ଚିନ୍ତା ଅପସାରିତ ହେଲା, ମୁଖରେ ଟିକିଏ ଆନନ୍ଦରଶ୍ମି ରେଖା ପ୍ରତିଭାତ ହେଲା । ଦୁଇ ହାତରେ ମୁହଁ ଆଉଁସି ହାତ ଉପରକୁ ଉଠାଇ ନେଇ ହାଇ ମାରିଲେ ଓ ଆଳସ୍ୟ ଭାଙ୍ଗି ହେଲେ । ଗବାକ୍ଷ ପଥରେ ଦେଖିଲେ, ସୂର୍ଯ୍ୟଦେବ ମେଘାସନ ଶିଖର ଦେଶରେ ଅବସ୍ଥାନ କରୁଅଛନ୍ତି, ସେଥିରେ ମଧ୍ୟାହ୍ନର ରୌଦ୍ରମୂର୍ତ୍ତି ନାହିଁ, କେବଳ ଶୀତଳ ସ୍ନିଗ୍ଧୋଜ୍ଜ୍ୱଳ ମୟୂଖ ହେମଚ୍ଛଟାରେ ହସୁଅଛି । ମେଘାସନ ଅନୁପମ ସୌନ୍ଦର୍ଯ୍ୟ ଧାରଣ କରିଅଛି । ହେମମୟ ପଶ୍ଚିମ ଆକାଶ ତଳେ ସୁବିସ୍ତୃତ ସୁନୀଳ ପ୍ରାଚୀର ମନଃପ୍ରାଣ ମୁଗ୍ଧ କରୁଅଛି । ତାହାର ପାର୍ଶ୍ୱରେ ଦିଗନ୍ତବିସ୍ତାରିତ ସୁଶ୍ୟାମଳ ବନରାଜିର ଶୋଭା ଅନିର୍ବଚନୀୟ ହୋଇଅଛି । ସାନ୍ଧ୍ୟ ସମୀରଣ ସେବନର ଉପଯୁକ୍ତ ସମୟ ଭାବି ମହାରାଜ ତଳକୁ ଓହ୍ଲାଇ ଆସିଲେ । ଅଶ୍ୱ ପ୍ରସ୍ତୁତ ଥିଲା । ମହାରାଜ ଅଶ୍ୱପୃଷ୍ଠରେ ଆରୂଢ଼ ହୋଇ ଦ୍ରୁତଗତିରେ ଅନ୍ତର୍ହିତ ହୋଇଗଲେ ।

(୨)

ଆଲିବର୍ଦ୍ଧି ଖାଁ ବଙ୍ଗର (ଓଡ଼ିଶା ବେହାର ସମେତ) ସୁବାଦାର ହୋଇ ଦେଖିଲେ ଯେ, ଓଡ଼ିଶାର ନିଜାମ୍ ଦେୱାନ୍ ମିର୍ ହବିବ୍ ଖାଁ ତାଙ୍କ ଅଧୀନତା ସ୍ୱୀକାର କରିବାକୁ ନାରାଜ । ତେଣୁ ତାଙ୍କୁ ପଦଚ୍ୟୁତ କରିବା ନିତାନ୍ତ ଆବଶ୍ୟକ ହେଲା । ଉତ୍କଳକୁ ଯୁଦ୍ଧଯାତ୍ରା କରିବା ପାଇଁ ସେ ଲକ୍ଷାଧିକ ସୈନ୍ୟ ଓ ତଦୁପଯୁକ୍ତ ସମର ସରଞ୍ଜାମ ଆୟୋଜନ କଲେ । ବିରାଟ ଆୟୋଜନ ଦେଖି ଜୟ ଆଶା ତାଙ୍କ ମନରେ ଦୃଢ଼ତର ହେବାକୁ ଲାଗିଲା । ଏତଦ୍‌ବ୍ୟତୀତ ମୟୂରଭଞ୍ଜ ରାଜାଙ୍କ ସାହାଯ୍ୟପ୍ରାପ୍ତି ବିଷୟରେ ମଧ୍ୟ ତାଙ୍କର ଦୃଢ଼ ଧାରଣା ଥିଲା । ସେ ଭାବିଥିଲେ ଯେ, ତାଙ୍କ ସାହାଯ୍ୟ ପ୍ରାର୍ଥନା ଶୁଣି ରାଜା ଆହ୍ଲାଦରେ ତହିଁରେ ପ୍ରତିଶ୍ରୁତ ହେବେ ଏବଂ ରାଜ୍ୟ ମଧ୍ୟରେ ନିରୁପଦ୍ରବରେ ବାଟ ଛାଡ଼ିଦେବେ । ଅଧିକନ୍ତୁ ସେ ଶୁଣିଥିଲେ ଯେ, ଉତ୍କଳର ସାମନ୍ତ ରାଜନ୍ୟମଣ୍ଡଳୀ ମଧ୍ୟରେ ସେ ଅତ୍ୟନ୍ତ ପ୍ରତାପଶାଳୀ । ଏଣୁ ତାଙ୍କ ସହାୟତା ପାଇଲେ ଉତ୍କଳର ଜୟପାଇଁ ତାଙ୍କୁ ଅଧିକ ଆୟାସ ସ୍ୱୀକାର କରିବାକୁ ପଡ଼ିବ ନାହିଁ । ବିଶେଷତଃ ସୀମାନ୍ତ ପ୍ରଦେଶରେ ଥିବାରୁ ତାଙ୍କଠାରୁ ଓଡ଼ିଶାର ସବିଶେଷ ବୃତ୍ତାନ୍ତ ଅକ୍ଳେଶରେ ଜଣାପଡ଼ିବ । ଏହିପରି ନାନା ମନସ୍ତୁଷ୍ଟିକର କଥା ଭାବି ସୁବାଦାର ମୁର୍ଶିଦାବାଦରୁ ଉତ୍କଳାଭିମୁଖରେ ଅଭିଯାନ କଲେ । ସୁବାଦାରଙ୍କ ପ୍ରଧାନ ସେନାପତି ମିର୍‌ଜାଫରଙ୍କଠାରେ ସୈନ୍ୟଚାଳନାର ଭାର ଅର୍ପିତ ହେଲା । ସେ ସମୟରେ ଉତ୍କଳକୁ ଆସିବା ପାଇଁ ଗୋଟିଏ ମାତ୍ର ସୁଗମ ପଥ ଥିଲା । ଆଧୁନିକ ଜଗନ୍ନାଥ ସଡ଼କ ତାହାର ଉନ୍ନତ ଅବସ୍ଥା ମାତ୍ର । ଆଲିବର୍ଦ୍ଧି ଖାଁ ସେହି ପଥରେ ଅଗ୍ରସର ହେବାକୁ ଲାଗିଲେ । ମେଦିନୀପୁରଠାରେ ଉପସ୍ଥିତ ହୋଇ କିଛିଦିନ ସେଠାରେ ବିଶ୍ରାମାର୍ଥେ ଅବସ୍ଥାନ କଲେ ଏବଂ ନିକଟସ୍ଥ ଜମିଦାରମାନଙ୍କୁ ଡକାଇ ନାନା ଉପହାର (ଖେଲାତ୍) ଦାନ କରି ସେମାନଙ୍କର ପ୍ରୀତି ଆକର୍ଷଣ କଲେ । ଯେଉଁମାନେ ପ୍ରତିକୂଳ ମତପୋଷଣ କଲେ, ସେମାନଙ୍କ ଜମିଦାରୀ ଖାସ କରାଗଲା । ସେହି ସମୟରେ ଆଲିବର୍ଦ୍ଧି ମୟୂରଭଞ୍ଜର ସମାଗ୍ରର ଜାଣିବା ପାଇଁ ବଡ଼ ଉତ୍କଣ୍ଠିତ ଥିଲେ । ସର୍ବଦା ମନ ମଧ୍ୟରେ ସେହି ଚିନ୍ତାଟି ଜାଗ୍ରତ ଥାଏ । କାରଣ ମିର୍ ହବିବ୍ ଅପେକ୍ଷା ରାଜାଙ୍କୁ ସେ ଟିକିଏ ବେଶୀ ବିପଜ୍ଜନକ ଗଣିଥିଲେ । ମୟୂରଭଞ୍ଜ ଅତି ବୃହତ୍ ରାଜ୍ୟ ଥିଲା । ତାହାର ତତ୍‌କାଳୀନ ଉତ୍ତର ସୀମା ମେଦିନୀପୁର ପର୍ଯ୍ୟନ୍ତ, ପଶ୍ଚିମ ସୀମା ସିଂହଭୂମି ପର୍ଯ୍ୟନ୍ତ, ଦକ୍ଷିଣ ସୀମା କେଉଁଝର ଓ ବୈତରଣୀ ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବ ସୀମା ବାଲେଶ୍ୱରର ସମସ୍ତ ଉତ୍ତରାଞ୍ଚଳ ସହିତ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ସୁବିଶାଳ ରାଜ୍ୟ ଅନେକ କିଲ୍ଲା ଓ ଅଧୀନସ୍ଥ ଜମିଦାରୀରେ ବିଭକ୍ତ ହୋଇଥିଲା ।

ମେଦିନୀପୁରରୁ ସ୍ଥାନାନ୍ତର ଯାତ୍ରାର ଏହି ବନ୍ଦୋବସ୍ତ ହେଲା ଯେ, ଦୁଇଦିନ ମଧ୍ୟରେ ସେନା ମେଦିନୀପୁର ତ୍ୟାଗ କରିବ । ଇତିମଧ୍ୟରେ ମୟୂରଭଞ୍ଜ ଦୂତ ଉପସ୍ଥିତ ହୋଇ ପତ୍ର ଦେଲା । ସୁବାଦାର ପତ୍ର ପାଠ କରି ତହିଁରେ ଅସମ୍ଭାବିତ କଥାର ଉଲ୍ଲେଖ ଦେଖି କ୍ରୋଧରେ ଅଧୀର ହୋଇପଡ଼ିଲେ । ତାଙ୍କ ଆଶା-କଳ୍ପଲତା ମୂଳରେ କୁଠାରଘାତ ହେବାର ଦେଖି ସେ ଟିକିଏ ଇତସ୍ତତଃ ହୋଇଉଠିଲେ । ମୁଖରେ ନୈରାଶ୍ୟ କାଳିମା ବୋଳିଗଲା ପରି ବୋଧହେଲା । ମାତ୍ର ମୁହୂର୍ତ୍ତ ପରେ ବୀରୋଚିତ ଅସୀମ ଧୈର୍ଯ୍ୟବଳରେ ସେ ସମସ୍ତ ଦୁଶ୍ଚିନ୍ତା ମନରୁ ଦୂର କରିଦେଲେ । ମନରେ ନବବଳର ସଞ୍ଚାର ହେଲା । ସେହି ବଳରେ ବଳୀୟାନ ହୋଇ ନାନା ସୁକୌଶଳପୂର୍ଣ୍ଣ ଉପାୟମାନ ଉଦ୍ଭାବନ କଲେ ଏବଂ ସୈନ୍ୟବୃନ୍ଦଙ୍କୁ ନାନାପ୍ରକାରେ ସମୁତ୍ସାହିତ କଲେ । ନିରୂପିତ ସମୟରେ ମେଦିନୀପୁରରୁ ଶିବିର ଉଠିଆସିଲା । ଆଲିବର୍ଦ୍ଦି ଦକ୍ଷିଣାଭିମୁଖରେ ଅଗ୍ରସର ହେବାକୁ ଲାଗିଲେ ।

(୩)

ଏଣେ ସୁବାଦାରଙ୍କ ଯୁଦ୍ଧଯାତ୍ରା କଥାଶୁଣି ମିର୍ ହବିବ୍ ବ୍ୟସ୍ତ ସମସ୍ତ ହୋଇ ଯୁଦ୍ଧ ନିମିତ୍ତ ନାନା ଆୟୋଜନ କଲେ । ଅଳ୍ପଦିନ ମଧ୍ୟରେ ବହୁସଂଖ୍ୟକ ସୈନିକ ଏବଂ ପ୍ରୟୋଜନାତିରିକ୍ତ ଯୁଦ୍ଧୋପକରଣ ସଂଗୃହୀତ ହେଲା । ସେ ନିଜର ସ୍ତ୍ରୀ ପୁତ୍ର ବାରବାଟୀ ଦୁର୍ଗରେ ଛାଡ଼ି ବିଶ୍ୱସ୍ତ ଭୃତ୍ୟ ହସ୍ତରେ ଦୁର୍ଗରକ୍ଷା ଭାର ଦେଲେ ଏବଂ ସସୈନ୍ୟରେ ନବାବ ସେନାକୁ ଭେଟିବା ଉଦ୍ଦେଶ୍ୟରେ କଟକରୁ ଉତ୍ତରାଭିମୁଖରେ ଯାତ୍ରା କଲେ । ବାଲେଶ୍ୱର ସେ ସମୟରେ ଗୋଟିଏ ପ୍ରଧାନ ବନ୍ଦର ଥିଲା । ସେଠାରେ ଉପସ୍ଥିତ ହୋଇ ସେ ଶୁଣିଲେ ଯେ, ସୁବାଦାର ସେନା ଜଳେଶ୍ୱରଠାରେ ଯୁଦ୍ଧ ପରିଚାଳନାର ଉପଯୁକ୍ତ କ୍ଷେତ୍ର ନ ପାଇ ସେଠାରୁ ଆସି ନିକଟସ୍ଥ ଫୁଲାଡ଼ି ଘାଟର କିଞ୍ଚିତ୍ ପଶ୍ଚିମରେ --

"x x x ଯହିଁ ବଳାଙ୍ଗୀପଦେ
ଶୋଣ ଗଙ୍ଗାହର ମିଶନ୍ତି ଯେ ଯାହା ନୀର ସମ୍ପଦେ — "

ସେହି ସଙ୍ଗମସ୍ଥଳଟି ପ୍ରାକୃତିକ ପରିଖାବେଷ୍ଟିତ ଥିବାର ଦେଖି ସେଠାରେ ଶିବିର ସଂସ୍ଥାପନ କଲେ ଏବଂ ଶତ୍ରୁର ଆଗମନକୁ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ପ୍ରତୀକ୍ଷା କରି ରହିଲେ । କାରଣ ସେ ଭାବିଥିଲେ ଯେ, ସୁବାଦାର ସେନା ବହୁ ପଥ ଲଙ୍ଘନାନ୍ତର ମୟୂରଭଞ୍ଜ ରାଜାଙ୍କ ସହିତ ଯୁଦ୍ଧ କରି ନିଶ୍ଚୟ ପରିକ୍ଳାନ୍ତ ହୋଇ ତାଙ୍କର ସମ୍ମୁଖୀନ ହେବ; ସୁତରାଂ ଯୁଦ୍ଧରେ ବିଜୟଲକ୍ଷ୍ମୀ ତାଙ୍କର ଅଙ୍କଶାୟିନୀ ହେବାର ପୂର୍ଣ୍ଣ ସମ୍ଭାବନା ।

(୪)

ଚକ୍ରଧର ଭଞ୍ଜ ମୋଗଲ ସୁବାଦାରଙ୍କ ସହିତ ଯୁଦ୍ଧ ଘୋଷଣା କରି ସମର-ସାମଗ୍ରୀ ସଂଗ୍ରହରେ ଲିପ୍ତ ରହିଲେ । ପରେ ମୋଗଲ ସେନା ଜଗନ୍ନାଥ ସଡ଼କରେ ଆସୁଥିବାର ଶୁଣି ସୁବର୍ଣ୍ଣରେଖା କୂଳସ୍ଥିତ ରାଜଘାଟଠାରେ ସେମାନଙ୍କୁ ଭେଟିବାର ସ୍ଥିର କଲେ । ରାଜଘାଟର ତତ୍କାଳୀନ ଅବସ୍ଥା ପ୍ରତି ଦୃଷ୍ଟିପାତ କଲେ ରାଜାଙ୍କର ଯୁଦ୍ଧକ୍ଷେତ୍ର ନିର୍ବାଚନ ବିଷୟରେ ବେଶ୍ ଦକ୍ଷତା ଥିବାର ଅନୁମିତ ହୁଏ । କାରଣ ଆଜିକାଲି ରାଜଘାଟ ସମୀପସ୍ଥ ସୁବର୍ଣ୍ଣରେଖାର ଦକ୍ଷିଣକୂଳରେ ଯେଉଁଠାରେ ବର୍ତ୍ତମାନ ସୁବୃହତ ଗ୍ରାମମାନ ବିରାଜିତ, ସେ ସମୟରେ ସେଠାରେ କ୍ଷୁଦ୍ର 'ବୁଆଡ଼' (୧) ପଲ୍ଲୀମାତ୍ର ବିଦ୍ୟମାନ ନଥିଲା । ସ୍ଥାନଟି ନିବିଡ଼ ବଇଞ୍ଚ କାନକୋଳି ପ୍ରଭୃତି କଣ୍ଟକମୟ ବୃକ୍ଷଲତାଦ୍ୱାରା ପୂର୍ଣ୍ଣ ଥିଲା । କେବଳ ରାଜଘାଟଠାରେ ଗୋଟିଏ ଅନତିବିସ୍ତୃତ ପଥ ବ୍ୟତୀତ ଅନ୍ୟକୌଣସି ସ୍ଥାନରେ ଯାତାୟାତର ବିଶେଷ ସୁବିଧା ନଥିଲା । ଅମର୍ଦା (୨) ସର୍ଦାର ରାଜାଙ୍କ ଆଦେଶ ଶିରୋଧାର୍ଯ୍ୟ କରି ସେଠାରେ ସର୍ବଦା ଉପସ୍ଥିତ ଥାଇ ରାଜାଙ୍କ ପ୍ରଧାନ ପୃଷ୍ଠପୋଷକରୂପେ କାର୍ଯ୍ୟ କଲେ । ରାଜା ମଧ୍ୟ ନିଜେ ରାଜଧାନୀରୁ ସୈନ୍ୟସାମନ୍ତ ସମଭିବ୍ୟାହାରରେ ସେଠାରେ ଉପସ୍ଥିତ ହେଲେ । ଶିବିର ସ୍ଥାପନ ନିମିତ୍ତ ରାଜ ସର୍ଦାରଙ୍କ ସହିତ ମନ୍ତ୍ରଣା କଲେ । ଶେଷରେ ବଡ଼ ବଡ଼ କାଠଦ୍ୱାରା ଶିବିର ବେଷ୍ଟନ କରିବାର ସ୍ଥିର ହେଲା । ସମଗ୍ର ମୟୂରଭଞ୍ଜର ନାନା ସ୍ଥାନରୁ ସର୍ଦାର ଓ ଜମିଦାରମାନେ ସସୈନ୍ୟରେ ରାଜାଙ୍କୁ ସାହାଯ୍ୟ କରିବା ପାଇଁ ସେଠାରେ ଉପସ୍ଥିତ ହେଲେ । ରାଜଘାଟ ବୁଆଡ଼ ଓ ଖଣ୍ଡାୟତ ସୈନ୍ୟ ସମାବେଶରେ ପୂର୍ଣ୍ଣ ହେଲା । ମାତ୍ର ପୂର୍ବ ଓ ଉତ୍ତରାଞ୍ଚଳର ଜମିଦାର ଓ ସର୍ଦ୍ଦାରମାନଙ୍କ ମଧ୍ୟରୁ କ୍ୱଚିତ୍ କେହି ରାଜାଙ୍କ ଅନୁରୋଧ ରକ୍ଷା କଲେ । ପୁଣି ଜାମକୁଣ୍ଡା, ଜମ୍ବିରାପାଳ ଓ ସାବନ୍ଦରର ଭୂୟାଁମାନେ, ନାରାୟଣ ଗଡ଼ର ରାଜା ଓ ଅନ୍ୟାନ୍ୟ କେତେଜଣ କିଲ୍ଲାଦାର ରାଜାଙ୍କ ଆଦେଶ ପାଳନ କଲେନାହିଁ । ତେଣୁ ରାଜା ସେମାନଙ୍କ ସାହାଯ୍ୟରୁ ବଞ୍ଚିତ ହେଲେ । ଏହି ବଡ଼ ବଡ଼ ସର୍ଦ୍ଦାର ଓ ଜମିଦାରମାନଙ୍କ କୃତଘ୍ନତା ଦେଖି ସେ ବିପଦ ଗଣିଲେ; କିନ୍ତୁ କ୍ଷତ୍ରିୟୋଚିତ ଶୌର୍ଯ୍ୟ ବୀର୍ଯ୍ୟ ତାଙ୍କୁ ଆରବ୍ଧ କର୍ମରୁ ବିରତ ହେବାକୁ ଦେଲାନାହିଁ ।

---

(୧) ମୟୂରଭଞ୍ଜର ଆଦିମ ଅଧିବାସୀ ଯଥା -- ଭୂୟାଁ, ବାମୁଡ଼ି, କୋହ୍ଲ, ସାନ୍ତାଳ ପ୍ରଭୃତି ଜାତି ସାଧାରଣତଃ ବୁଆଡ଼ ନାମରେ କଥିତ ହୁଅନ୍ତି ।

(୨) ଏହା ଗୋଟିଏ ବୃହତ୍ ଗ୍ରାମ, ଏଠାରେ ପୂର୍ବେ ଗୋଟିଏ କିଲ୍ଲା (Fort) ଥିଲା ।

ସୁବାଦାର ଆଲିବର୍ଦ୍ଦି ଖାଁ ରାଜଘାଟଠାରେ ଉପସ୍ଥିତ ହୋଇ ଦେଖିଲେ ଯେ, ରାଜଶିବିର ଆକ୍ରମଣ କରିବା ବଡ଼ ଦୁରୂହ ବ୍ୟାପାର । କାରଣ ତାହା ନିକଟରେ ଉପସ୍ଥିତ ହେବାକୁ ହେଲେ ଅନେକ ବାଧାବିଘ୍ନ ଅତିକ୍ରମ କରିବାକୁ ପଡ଼ିବ । ସେ ଦେଖିଲେ, ସୁବର୍ଣ୍ଣରେଖା ନଦୀ ରାଜାଙ୍କର ପରିଖାର କାର୍ଯ୍ୟ କରୁଅଛି । ନଦୀ ଅତିକ୍ରମ କରିବାକୁ ଚେଷ୍ଟା କଲେ ରାଜସୈନ୍ୟ କର୍ତ୍ତୃକ ବିନାଶ ଘଟିବାର ସମ୍ପୂର୍ଣ୍ଣ ସମ୍ଭାବନା । ନଦୀ ମଧ୍ୟ ଅଥଳ । ପାର ହେବାପାଇଁ ବହୁସଂଖ୍ୟକ ନୌକା ଏକାନ୍ତ ଆବଶ୍ୟକ । ନିକଟବର୍ତ୍ତୀ କୌଣସି ସ୍ଥାନରେ ମଧ୍ୟ ନଦୀ ପାର ହେବାର ସୁଗମ ପଥ ନାହିଁ । ବିପଥରେ ସୁବିଧା ଅନ୍ୱେଷଣ କରିବା ଅପେକ୍ଷା ସମ୍ମୁଖସ୍ଥିତ ବାଧାବିଘ୍ନର ସମ୍ମୁଖୀନ ହୋଇ ସୁପଥରେ ଯିବା ବୁଦ୍ଧିମାନର କାର୍ଯ୍ୟ । ଆଲିବର୍ଦ୍ଦି ତାହାହିଁ ଅନୁସରଣ କଲେ । ନଦୀତଟରେ ସ୍ତୂପାକାରରେ ମାଟି ଜମାକରି ତହିଁରେ କମାଣ ବସାଇଲେ ଏବଂ ରାଜାଙ୍କ ଶିବିର ପ୍ରତି ଲକ୍ଷ୍ୟ କରି ଅବିରତ ଗୋଲାବର୍ଷଣ କଲେ । ଯୁଗପତ୍ ସହସ୍ର ବଜ୍ରନିନାଦ ସମ ଶବ୍ଦ କରି ନବାବଙ୍କ କମାଣରାଶିରୁ ଗୋଲାମାନ ନିର୍ଗତ ହୋଇ ଅପରପାର୍ଶ୍ୱସ୍ଥ ଶିବରରେ ପତିତ ହେଲା । ପ୍ରତିଧ୍ୱନି ଚତୁର୍ଦ୍ଦିଗସ୍ଥ ବାୟୁରାଶିରେ ବ୍ୟାପ୍ତ ହୋଇ ଅବନୀ ଓ ଆକାଶମଣ୍ଡଳକୁ କମ୍ପିତ କଲା । ତଦ୍ୱାରା ରାଜାଙ୍କ ଶିବିର ବିଧ୍ୱସ୍ତ ହୋଇଗଲା । ରାଜପକ୍ଷୀୟ ସୈନ୍ୟମାନେ ଭୀତ ହୋଇ ଯୁଦ୍ଧଗ୍ଭଳନ ପାଇଁ ଆଉ ସାହସୀ ହେଲେନାହିଁ । ଚୁଆଡ଼ମାନଙ୍କର ଗୋଟିଏ ପ୍ରଧାନ ଦୋଷ, ସେମାନେ ଥରେ ଭୟ କରିଗଲେ ଆଉ କଦାପି ସାହସ କରନ୍ତି ନାହିଁ । ଏ କ୍ଷେତ୍ରରେ ତାହାହିଁ ହେଲା । ଖଣ୍ଡାୟତ୍ ସୈନ୍ୟମାନେ ମଧ୍ୟ ଚୁଆଡ଼ମାନଙ୍କ ରୀତି ଅବଲମ୍ବନ କଲେ । ରାଜା ଯେତେପ୍ରକାର ଉତ୍ସାହ ଦେଲେ, ସବୁ ବ୍ୟର୍ଥ ହେଲା । ସୈନ୍ୟସାମନ୍ତମାନ ପୃଷ୍ଠଭଙ୍ଗ ଦେଇ ଇତସ୍ତତଃ ହୋଇଯିବାରୁ ଚକ୍ରଧର ଭଞ୍ଜ ଅଗତ୍ୟା ବିଷର୍ଣ୍ଣହୃଦୟରେ ରାଜଧାନୀକୁ ଫେରିଆସିଲେ; କିନ୍ତୁ ନବାବଙ୍କ ଅଧୀନତା ସ୍ୱୀକାର କରିବାକୁ ତାଙ୍କ ମନ ବଳିଲା ନାହିଁ ।

(୫)

ନବାବ ଆଲିବର୍ଦ୍ଦି ରାଜଘାଟ ଯୁଦ୍ଧର ଜୟୀ ହେଲେ ହେଁ ହଠାତ୍ ନଦୀ ପାର ହୋଇ ଦକ୍ଷିଣକୁ ଅଗ୍ରସର ହେଲେନାହିଁ । ପ୍ରଥମରେ ମିର୍ ହବିବଙ୍କ ଶିବିର ଦେଖି ସୁବିଧାଜନକ ସ୍ଥାନରେ ଶିବିର ସ୍ଥାପନୋପଯୋଗୀ ସ୍ଥାନ ନିର୍ବାଚନ କରିବାପାଇଁ ବାଲେଶ୍ୱରକୁ ଗୁପ୍ତଚର ପଠାଇଲେ । ତତ୍ପରେ ସୁବିଧାରେ ନଦୀ ପାର ହେବାର ଉପାୟ ନିର୍ଦ୍ଧାରଣ କଲେ । ରାଜାଙ୍କ ଛାଉଣୀରେ ଯେଉଁ କାଠଗୁଡ଼ାକ ଲାଗିଥିଲା, ସେଗୁଡ଼ାକୁ ବଡ଼େଇ ଲଗାଇ ନୌକା ପ୍ରସ୍ତୁତ କରାଇନେଲେ । ବାଲେଶ୍ୱରରୁ ଚର ସଂବାଦ ନେଇ ଫେରିଆସିବା ବେଳକୁ

ସମସ୍ତ ଠିକ ହୋଇଯାଇଥିଲା । ଗୁପ୍ତଚର ମିର୍ ହବିବଙ୍କ ଶିବିର ଦେଖି ଯାଇ ବଲାଙ୍ଗୀର ଉତ୍ତରପାର୍ଶ୍ୱସ୍ଥ ରାମଚନ୍ଦ୍ରପୁର ଗ୍ରାମଠାରେ ଶିବିର ସଂସ୍ଥାପନର ଉପଯୁକ୍ତ ସ୍ଥାନ ନିର୍ବାଚିତ କରିଥିବାର ପ୍ରକାଶ କରିବାରୁ ନବାବ 'ଆଗାଡ଼ି ଫୌଜ' (ଅଗ୍ରବର୍ତ୍ତୀ ସେନା) ଅବିଳମ୍ବେ ପଠାଇଦେଲେ । କରତ ପ୍ରଭୃତି ଅସ୍ତ୍ରମାନ ଧରି ଅନେକ ମୂଲିଆ, କମାର ଓ ବଢ଼େଇ ଗ୍ଭଲିଲେ । ପଶ୍ଚାଦ୍‌ଗାମୀ ସୈନ୍ୟ ତୋପ-ଶକଟ, ଖାଦ୍ୟ-ଶକଟ ପ୍ରଭୃତି ଯିବାର ସୁବିଧା ସକାଶେ ପଥସ୍ଥିତ ଉଚ୍ଚାବଚ୍ ଭୂମିକୁ ସମତଳ କରିବା, ଜଳାଶୟ ନିକଟରେ ଡେରା ଠିକ୍ କରିବା ଏମାନଙ୍କର କାର୍ଯ୍ୟ । ମାତ୍ର ପଥରେ ଉକ୍ତ କାର୍ଯ୍ୟମାନଙ୍କ ମଧ୍ୟରୁ ଏମାନଙ୍କୁ କୌଣସିଟି କରିବାକୁ ପଡ଼ିଲା ନାହିଁ । ଏମାନେ ବରାବର ରାମଚନ୍ଦ୍ରପୁର ପର୍ଯ୍ୟନ୍ତ ଗ୍ଭଲିଗଲେ ।

ନବାବ 'ଆଗାଡ଼ି ଫୌଜ' ବିଦାୟ କରି ପ୍ରଥମରେ ଗୋଲନ୍ଦାଜ ସୈନ୍ୟ ସଙ୍ଗରେ ତୋପ-ଶକଟ ପାର କରାଇଦେଲେ । ତତ୍ପରେ ପଦାତିକ ସୈନ୍ୟ ନଦୀ ପାରହେଲେ । ସେମାନଙ୍କ ସ୍କନ୍ଧସ୍ଥିତ ବନ୍ଧୁକ ଓ ପାର୍ଶ୍ୱଦେଶରେ ଲମ୍ବମାନ ଅସି-କୋଷ ଦର୍ଶକ ମନରେ ମହାଭୀତି ଉପୁଜାଉଥିଲା । ସେମାନଙ୍କ ପଛେ ପଛେ ଅଶ୍ୱାରୋହୀ ସୈନ୍ୟମାନେ ବାହାରିଲେ । ତତ୍‌ପଶ୍ଚାତ୍ ପାରିଷଦବେଷ୍ଟିତ ବଙ୍ଗ ସୁବାଦାର ଆଲିବର୍ଦ୍ଦି ଖାଁ ନଦୀର ଅପରତଟରେ ପହଞ୍ଚି ସଜ୍ଜିତ ବିଶାଳକାୟ ହସ୍ତୀପୃଷ୍ଠରେ ଆରୂଢ଼ ହୋଇ ଅଗ୍ରସର ହେଲେ । ତାଙ୍କ ପଛେ ପଛେ ଶରୀରରକ୍ଷୀ ସୈନ୍ୟ (Body guard) ଆସିଲେ । ତତ୍‌ପଶ୍ଚାତ୍ ବୃହତ୍‌କାୟ ଉଷ୍ଟ୍ର, ହସ୍ତୀ, ଗର୍ଦ୍ଦଭ, ବଳଦମାନେ ଖାଦ୍ୟଭାର ବହନ କରି ଗ୍ଭଲିଲେ । ଏମାନଙ୍କ ସଙ୍ଗରେ ଦଳେ ସୈନ୍ୟ ତତ୍ତ୍ୱାବଧାନ ପାଇଁ ରହିଥିଲେ । ସର୍ବଶେଷରେ ଅନେକ ବ୍ୟବସାୟୀ ନାନାବିଧ ବିକ୍ରେୟ ଦ୍ରବ୍ୟ ଘେନି ଗ୍ଭଲିଥିଲେ । ଏତେ ଲୋକ ପାରହେବାରୁ ନଦୀ ନିକଟରେ ଅନେକ ସମୟ ଅତିବାହିତ ହେଲା । ରାଜଘାଟଠାରୁ ବସ୍ତା ପର୍ଯ୍ୟନ୍ତ ସୈନ୍ୟମାନେ ଲାଗି ରହିଲେ । ଏହିପରି ନାନା ରଣସଜାରେ ଜଗନ୍ନାଥ ସଡ଼କ ପୂର୍ଣ୍ଣ ହେଲା ।

ସନ୍ଧ୍ୟାର ଆଗମନ ଦେଖି ସମସ୍ତେ ଜଳାଶୟ ସ୍ଥାନ ଲୋଡ଼ି ବିଶ୍ରାମର ଆୟୋଜନ କଲେ । ଅତି ପ୍ରତ୍ୟୁଷରୁ ଯାତ୍ରା କରିବାର ଆଦେଶ ଥିବାରୁ କେହି ତମ୍ବୁ ପ୍ରଭୃତି ଟାଣିଲେ ନାହିଁ । ବୃକ୍ଷମୂଳ ବା ଉନ୍ମୁକ୍ତ ସ୍ଥାନରେ ନିଦ୍ରା ଗଲେ । ପ୍ରତ୍ୟୁଷରୁ ସମସ୍ତେ ଯାତ୍ରା କରି ଓଳିକ ମଧ୍ୟରେ ରାମଚନ୍ଦ୍ରପୁରଠାରେ ଉପସ୍ଥିତ ହେଲେ । ରାମଚନ୍ଦ୍ରପୁର ମିର୍ ହବିବଙ୍କ ଶିବିରଠାରୁ ସାର୍ଦ୍ଧ ଏକକ୍ରୋଶ ଦୂରବର୍ତ୍ତୀ ଥିବାରୁ ଶତ୍ରୁ ପକ୍ଷରୁ କୌଣସି ଆକସ୍ମିକ ବିପଦ ଉପସ୍ଥିତ ହେବାର ସମ୍ଭାବନା ନଥିଲା ।

ତିନି ସପ୍ତାହ କାଳ ସମର ଶାନ୍ତି ନିମିତ୍ତ ଉଭୟ ପକ୍ଷୀୟ ଗୁପ୍ତଚର ଓ ଦୂତମାନଙ୍କର ଚେଷ୍ଟା ଲାଗିଲା । ଅବଶେଷରେ କିଛି ଫଳ ନ ହେବାରୁ ଯୁଦ୍ଧ ସ୍ଥିର ରହିଲା । ମିର୍ ହବିବ୍ ମଧ୍ୟ ଛାଉଣିରେ ରହିବା ବିରକ୍ତିକର ମଣିଲେ । ତେଣୁ ସେ ପ୍ରଥମରେ ଶିବିରାଭ୍ୟନ୍ତରରୁ ବହିର୍ଗତ ହୋଇ ସୈନ୍ୟସଜା ରଚନା କଲେ । ମିର୍ ହବିବ୍ ସମର ପ୍ରତୀକ୍ଷାରେ ରହିଅଛନ୍ତି ଶୁଣି ଆଲିବର୍ଦ୍ଧି ମଧ୍ୟ ସୈନ୍ୟ ଘେନି ଯୁଦ୍ଧାର୍ଥ ବାହାରିଲେ । ସାକ୍ଷାତ୍‌ମାତ୍ରେ ଉଭୟ ପକ୍ଷରୁ ପ୍ରଥମରେ ତୋପଧ୍ୱନିଦ୍ୱାରା ଯୁଦ୍ଧଘୋଷଣା କରାଗଲା । ସେହି ଯୁଦ୍ଧ ଶୀଘ୍ର ବିରତ ହେଲା । ତତ୍ପରେ ପଦାତିକ ସୈନ୍ୟବୃନ୍ଦ ଭୟଙ୍କର ଗତିରେ ଖଡ୍ଗ ଓ ବର୍ଚ୍ଛା ଗ୍ଚଳନାପୂର୍ବକ ଯୁଦ୍ଧରେ ବ୍ୟାପୃତ ହେଲେ । ଯୁଦ୍ଧ କ୍ରମଶଃ ଭୀଷଣତର ଆକାର ଧାରଣ କଲା । ମିର୍ ହବିବ୍‌ଙ୍କ ସୈନ୍ୟମାନେ ପ୍ରବଳ ଭାବରେ ଶତ୍ରୁପକ୍ଷ ଆକ୍ରମଣ କଲେ । ସେହି ପ୍ରହାର ନବାବ ସୈନ୍ୟ ସହ୍ୟ କରି ନପାରି ଛତ୍ରଭଙ୍ଗ ଦେଲା । ସେମାନଙ୍କ ମଧ୍ୟରେ ଘୋର ବିଶୃଙ୍ଖଳା ଉପସ୍ଥିତ ହେଲା । ସେମାନେ ଛିନ୍ନଭିନ୍ନ ହୋଇ ଇତସ୍ତତଃ ପଳାୟନ କଲେ । ନବାବ ଆଲିବର୍ଦ୍ଧି ପରାଜିତ ହେଲେ । ଏହା ଦେଖି ମିର୍ ହବିବ୍ ସୈନ୍ୟଙ୍କୁ ପ୍ରତ୍ୟାବର୍ତ୍ତନ ପାଇଁ ଆଦେଶ ଦେଲେ । ସୈନ୍ୟଦଳ ଶିବିରକୁ ଫେରି ଆସି ଆମୋଦପ୍ରମୋଦରେ ମତ୍ତ ରହିଲେ । କେହି ସୁଦ୍ଧା ଆଲିବର୍ଦ୍ଧିଙ୍କର ସମ୍ବାଦ ନେଲାନାହିଁ । ନିଜାମ୍ ଦେବାନ୍ କର୍ତ୍ତୃକ ନବାବଙ୍କ ପରାଜୟ କି କମ୍ ଆନନ୍ଦର ବିଷୟ ? ଆଲିବର୍ଦ୍ଧି ଲଜ୍ଜିତ ହୋଇ ଅତୀତ ବିଷଣ୍ଣ ହେଲେ । ପରେ ବହୁ ଚେଷ୍ଟାରେ ବିକ୍ଷିପ୍ତ ସୈନ୍ୟମାନଙ୍କୁ ସଂଗୃହୀତ କରି ଦ୍ୱିତୀୟ ବାର ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଏଣେ ଠିକ୍ ଏହି ସମୟରେ ମିର୍ ହବିବ୍‌ଙ୍କ ଶିବିରରେ ବିଶ୍ୱାସଘାତକତା ଉପସ୍ଥିତ ହେଲା । ତାଙ୍କର ଦୁଇ ଜଣ ସେନାପତି ସଦଳବଳରେ ବିପକ୍ଷ ପକ୍ଷ ଅବଲମ୍ବନ କଲେ । ତେଣୁ ନବାବ ଆଲିବର୍ଦ୍ଧି ଖାଁ ଦ୍ୱିତୀୟ ବାର ଯୁଦ୍ଧରେ ଅନାୟାସରେ ଜୟଲାଭ କଲେ । ମିର୍ ହବିବଙ୍କର ଆଉ ଅଣୁମାତ୍ର ଜୟାଶା ରହିଲା ନାହିଁ । ସେ ଆତ୍ମରକ୍ଷା ପାଇଁ ବାଲେଶ୍ୱର ଆସି ନୌକାଯୋଗେ ଦାକ୍ଷିଣାତ୍ୟକୁ ପଳାଇଲେ । ପଳାୟନ ପୂର୍ବରୁ ନିଜର ସ୍ତ୍ରୀ, ପୁତ୍ର ଓ ଧନସମ୍ପତ୍ତି କଟକରୁ ମହାନଦୀ ମୁହାଣକୁ ପଠାଇ ଦେବାପାଇଁ ବିଶ୍ୱସ୍ତ ଗୁପ୍ତଚର ନିଯୁକ୍ତ କରିଗଲେ ।

(୬)

ହରିହରପୁର ଏକ ପ୍ରାଚୀନ ଦୁର୍ଗ -- ଭଞ୍ଜବଂଶୀୟ ରାଜାମାନଙ୍କର ରାଜଧାନୀ । ତାହାର ତିନି ପାର୍ଶ୍ୱ ନିବିଡ଼ ବଂଶବନଦ୍ୱାରା ବେଷ୍ଟିତ । ତତ୍ପର ସୁଗଭୀର ପରିଖା । ପୂର୍ବ ପାର୍ଶ୍ୱରେ କଳନାଦିନୀ କ୍ଷୁଦ୍ର ନଦୀ ପ୍ରାକୃତିକ ପରିଖାରୂପେ ବିରାଜିତ ଥାଇ ହରିହରପୁରର

ଚରଣ ଧୌତ କରିବାରେ ନିଯୁକ୍ତ । ନଦୀର ଦକ୍ଷିଣତୀରସ୍ଥ ସମୁନ୍ନତ ଭୃଗୁ ତାହାର ପ୍ରାକୃତିକ ପ୍ରାଚୀରରୂପେ ବିଦ୍ୟମାନ । ନଦୀର ଅପରପାର୍ଶ୍ୱରେ ନିଘଞ୍ଚ ସୁବିଶାଳ ଶାଳବନ ନିତ୍ୟ ହରିତାୟମାନ ରମଣୀୟ ଶୋଭା ଧାରଣ କରିଅଛି । ଦୁର୍ଗ ମଧ୍ୟକୁ ପ୍ରବେଶ ପାଇଁ ଉତ୍ତର ପଶ୍ଚିମ ଓ ଦକ୍ଷିଣ ଦିଗରେ ତିନୋଟି ମାତ୍ର ପଥ ବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ । ଏହି ପଥ ମଧ୍ୟରେ ପ୍ରବେଶ କଲେ ପ୍ରଥମରେ ଉଚ୍ଚ ପ୍ରାଚୀର ନୟନଗୋଚର ହୁଏ । ପ୍ରାଚୀର ମଧ୍ୟରେ ରାଜପ୍ରାସାଦ, ସାଧାରଣ ଲୋକାଳୟ, ସୈନ୍ୟନିବାସ, ରାଜୋଦ୍ୟାନ, ଅଶ୍ୱହସ୍ତିଶାଳା, ଶସ୍ୟଭଣ୍ଡାର, ଦେବମନ୍ଦିର, କୂପ, ପୁଷ୍କରିଣୀ ଆଦି ପ୍ରତିଷ୍ଠିତ । ସିଂହଦ୍ୱାର ସମ୍ମୁଖରେ ଚିତ୍ରବତ୍ ପ୍ରତୀୟମାନ ସ୍ଥାପତ୍ୟକଳାବିମଣ୍ଡିତ ସୁଢ଼ଳ-ଲତା-ପତ୍ର-ପୁଷ୍ପ-ଖୋଦିତ-ଇଷ୍ଟକାବଳୀଖଚିତ "ରସିକ ରାୟ ମନ୍ଦିର" * ଦର୍ଶକର ମନଃପ୍ରାଣ ମୋହିତ କରେ । ତପରେ ଦ୍ୱିତଳ ବିଶ୍ରାମାଳୟ ଓ ତତ୍‌ପଶ୍ଚାତ୍ ରାଣୀହଂସପୁର ଏବଂ ସୁଚିତ୍ରିତ ରାଧାମୋହନ ମନ୍ଦିର । ଏହିପରି ନାନା ଦୃଶ୍ୟରେ ପୂର୍ଣ୍ଣ ହୋଇ ହରିହରପୁର ଅପୂର୍ବଶ୍ରୀ ଧାରଣ କରିଅଛି ।

ମହାରାଜା ଚକ୍ରଧର ଭଞ୍ଜ ରାଜଘାଟରୁ ଫେରିଆସି ପୁନଶ୍ଚ ଯୁଦ୍ଧଯାତ୍ରା ପାଇଁ ବିପୁଳ ଆୟୋଜନ କରିବାରେ ଉଦ୍‌ଯୁକ୍ତ । କିନ୍ତୁ କୃତଘ୍ନ ସୈନ୍ୟମାନେ ଓ ଅଧୀନସ୍ଥ ଜମିଦାର ସର୍ଦ୍ଦାରମାନେ ତାଙ୍କ ପ୍ରସ୍ତାବରେ ଆଦୌ ସମ୍ମତ ନ ହେବାରୁ ସେ ଗଭୀର ମର୍ମବେଦନା ଅନୁଭବ କଲେ ଏବଂ ହତାଶ ହୋଇ କେବଳ କି ଉପାୟରେ ରାଜ୍ୟ ଯବନ ଅତ୍ୟାଚାରରୁ ରକ୍ଷା କରିବେ, ତାହା ଚିନ୍ତା କରିବାକୁ ଲାଗିଲେ । ସୁବାଦାରଙ୍କ ଅଧୀନସ୍ଥ ହେବା ତାଙ୍କୁ ମୃତ୍ୟୁବତ୍ ବୋଧହେଲା । ଏଣେ ଆଲିବର୍ଦ୍ଦି ଜୟଲାଭ କରି ଆଉ ଦକ୍ଷିଣ ଆଡ଼କୁ ଅଗ୍ରସର ହେଲେନାହିଁ । ତାଙ୍କର ଉଚ୍ଚଳ ଜୟବାସନା ପୂର୍ଣ୍ଣ ହେଲା । ଶତ୍ରୁତାଚରଣକାରୀ ମିର୍ ହବିବ୍ ଲୋକଚକ୍ଷୁରୁ ଅନ୍ତର୍ହିତ ହୋଇ ପ୍ରାଣ ଘେନି ପଳାଇଲା । ତେଣୁ ନବାବ ସ୍ୱ ରାଜଧାନୀକୁ ଫେରିଯିବା ସମୟରେ ପଥଶତ୍ରୁ ମୟୂରଭଞ୍ଜ ରାଜାଙ୍କ ଉପରେ ପୂର୍ବ ଅବମାନନାର ପ୍ରତିଶୋଧ ନେବାର ସ୍ଥିର କଲେ । ଏହି ବୈରନିର୍ଯ୍ୟାତନ ଲାଗି ସେ ହରିହରପୁର ଅଭିମୁଖରେ ଧାବମାନ ହେଲେ ।

ନବାବ ଆଲିବର୍ଦ୍ଦି ଖାଁ ହରିହରପୁର ଆସୁଥିବାର ଶୁଣି ସେଠାର ସମସ୍ତ ଲୋକ ତ୍ରସ୍ତବ୍ୟସ୍ତ ହୋଇପଡ଼ିଲେ । ନାଗରିକମାନେ ଆଶ୍ରୟ ଲୋଡ଼ିବାରେ ବ୍ୟସ୍ତ ରହିଲେ । କାରଣ ସେମାନଙ୍କୁ ମୁସଲମାନମାନଙ୍କ ଅତ୍ୟାଚାର ସୁବିଦିତ ଥିଲା । କେହି କେହି ନିଜ

* ବୈଦ୍ୟନାଥ ଭଞ୍ଜ ରସିକାନନ୍ଦଙ୍କଠାରୁ ବୈଷ୍ଣବ ଧର୍ମର ଦୀକ୍ଷା ଗ୍ରହଣ କରିଥିଲେ । ତାଙ୍କ ନାମକୁ ଚିରସ୍ମରଣୀୟ କରିବା ଉଦ୍ଦେଶ୍ୟରେ ସେ ଇଷ୍ଟଦେବଙ୍କୁ 'ରସିକରାୟ' ନମ ପ୍ରଦାନ କରିଥିଲେ ।

ନିଜ ସମ୍ପତ୍ତି ଭୂଗର୍ଭସାତ୍ କରି ସପରିବାରରେ ଜଙ୍ଗଲ ମଧ୍ୟକୁ ପଳାୟନ କଲେ । ଅନେକେ ଏକାବେଳକେ ହରିହରପୁର ତ୍ୟାଗ କଲେ । ନଗରବାସୀମାନଙ୍କୁ ପଳାୟନରେ ସୁଦ୍ଧା ରାଜା ଭୀତ ଓ ତ୍ରସ୍ତ ହେଲେନାହିଁ । ସେ ସର୍ବଦା ଅଟଳ, ସର୍ବଦା ପରାଧୀନ ରହିବାକୁ ପରାଙ୍ମୁଖ । ହରିହରପୁର ଭାବୀ ଅମଙ୍ଗଳ ସୁନିଶ୍ଚିତ ଜାଣି ସେ ରାଜପରିଜନବର୍ଗଙ୍କୁ ବ୍ରାହ୍ମଣଘାଟିକୁ * ପଠାଇଦେଲେ । ସେମାନେ ରାଜାଙ୍କୁ ସଙ୍ଗରେ ନେଇ ଯିବାପାଇଁ ଅତ୍ୟନ୍ତ ଚେଷ୍ଟା କରିଥିଲେ; ମାତ୍ର ରାଜା "ସମୟ ଉପସ୍ଥିତ ହେଲେ ପଳାଇବି" କହି ସେମାନଙ୍କୁ ଭୁଲାଇ ଦେଲେ । ସମସ୍ତଙ୍କ ପଳାୟନ ପରେ ରାଜାଙ୍କୁ ଏକାକୀ ଗଡ଼ରେ ରହିବା ଦେଖି କେତେଜଣ ବିଶ୍ୱସ୍ତ ଅନୁଚର ଓ ଶତାଧିକ ଖଣ୍ଡାୟତ ପାଇକ ଗଡ଼ ଛାଡ଼ିବାକୁ ସମ୍ମତ ହେଲେନାହିଁ । ଏମାନଙ୍କ ସତ୍ ସାହସରେ ରାଜା କିଞ୍ଚିତ୍ ଅନୁଭବ କଲେ ।

ନବାବ ବାଟରେ ଆସୁ ଆସୁ ଶୁଣିଲେ ଯେ, ହରିହରପୁରରୁ ରାଜାଙ୍କ ସଙ୍ଗରେ ସମସ୍ତେ ଜଙ୍ଗଲ ମଧ୍ୟକୁ ପଳାଇଅଛନ୍ତି । ଏହାଶୁଣି ସେ ପ୍ରଜାମାନଙ୍କ ବିଶେଷତଃ ଖଣ୍ଡାୟତ ଓ ବୁଆଡ଼ମାନଙ୍କ ଉପରେ ଦ୍ୱିଗୁଣ ପ୍ରତିହିଂସା ସାଧନ କଲେ । ସେମାନଙ୍କ ଧନ ସମ୍ପତ୍ତି ନିଃଶେଷିତଭାବରେ ଲୁଣ୍ଠନ କଲେ ଏବଂ ସ୍ତ୍ରୀ ବାଳକମାନଙ୍କୁ ବନ୍ଦୀ କରି ସଙ୍ଗରେ ଘେନିଆସିଲେ । ବନ୍ଦୀ ସଂଖ୍ୟା ଅଧିକ ହେବା ସଙ୍ଗେ ସଙ୍ଗେ ନିଷ୍କୋଷିତ ଅସିଦ୍ୱାରା ସେମାନଙ୍କ ସଂଖ୍ୟା ନ୍ୟୂନ କରାହେଉଥିଲା । ସୈନ୍ୟମାନେ ଚାରିଆଡ଼େ ବିସ୍ତାରିତ ହୋଇ ସର୍ବତ୍ର ପ୍ରାଣହାନି ଘଟାଇଲେ । ଯେଉଁମାନେ ବନଦେବୀଙ୍କ ଚରଣରେ ଶରଣ ପଶିଥିଲେ, ସେମାନେ କେବଳ ରକ୍ଷା ପାଇଗଲେ । ଏହିପରି ଲୁଣ୍ଠନ ଓ ହତ୍ୟା କାର୍ଯ୍ୟରେ ଲିପ୍ତ ରହି ନବାବ ହରିହରପୁରଠାରେ ଉପସ୍ଥିତ ହୋଇ ଦେଖିଲେ ଯେ, ଗଡ଼ର ଦ୍ୱାରଦେଶରେ କେତେଜଣ ସୈନିକବେଶଧାରୀ ପୁରୁଷ ଯୁଦ୍ଧ ପ୍ରତୀକ୍ଷାରେ ସୁସଜ୍ଜିତ ଅଛନ୍ତି । ଏମାନଙ୍କୁ ଦେଖି ନବାବଙ୍କ ମନୋଗତ ରୋଷାଗ୍ନି ପ୍ରବଳ ଭାବରେ ପ୍ରଜ୍ୱଳିତ ହୋଇଉଠିଲା । ସେ ଯୁଦ୍ଧାରମ୍ଭ ପାଇଁ ସେନାପତି ମିର୍‌ଜାଫରଙ୍କୁ ଆଦେଶ ଦେବାମାତ୍ରକେ ତାଙ୍କର ସୈନ୍ୟମାନେ ପିପୀଲିକା ସଦୃଶ ଦୁର୍ଗ ମଧ୍ୟକୁ ଧାଡ଼ିଦେଲେ । ରାଜାଙ୍କ ପାଇକମାନେ ଦ୍ୱାରଦେଶରେ ଥାଇ କୌଶଳରେ ସୁବାଦାର୍ ସୈନ୍ୟମାନଙ୍କୁ ନିହତ କରି ଭୂଲୁଣ୍ଠିତ କରିବାକୁ ଲାଗିଲେ । ସ୍ୱପକ୍ଷର ବଳକ୍ଷୟ

---

* ଭଞ୍ଜ ରାଜାମାନେ ରାଜ୍ୟ ସୁଶାସନ ନିମିତ୍ତ ମୟୂରଭଞ୍ଜକୁ ଦୁଇ ରାଜଧାନୀରେ ବିଭକ୍ତ କରିଥିଲେ । କାରଣ ମଧ୍ୟବର୍ତ୍ତୀ ପର୍ବତମାଳା ଗୋଟିଏ ବିଷମ ସଙ୍କଟ ଥିଲା । ରାଜା ହରିହରପୁରଠାରେ ରହୁଥିଲେ । ତାଙ୍କ ଭ୍ରାତା ବା ବଂଶୀୟ କେହି ବ୍ରାହ୍ମଣଘାଟୀରେ ରାଜପ୍ରତିନିଧିରୂପେ ରହୁଥିଲେ । ରାଇରଙ୍ଗପୁର ବ୍ରାହ୍ମଣଘାଟୀର ରାଜଧାନୀ ଥିଲା ।

ହେବାର ଦେଖି ସେନାପତି ସୈନ୍ୟ ଫେରାଇନେଲେ ଏବଂ ଗୋଲାବର୍ଷଣ ପାଇଁ ଆଦେଶ ଦେଲେ । ଆଦେଶ ଶୀଘ୍ର କାର୍ଯ୍ୟରେ ପରିଣତ ହେଲା । ଗୋଲାବର୍ଷଣ ହେବାରୁ ରାଜାଙ୍କ ପାଇକମାନେ ବିପକ୍ଷର ସମ୍ମୁଖୀନ ହୋଇପାରିଲେ ନାହିଁ । ଅଧିକନ୍ତୁ ଅନେକେ ଆହତ ହୋଇ ଭୂଶଯ୍ୟାରେ ମହାନିଦ୍ରା ଭଜିଲେ । ଇତିମଧ୍ୟରେ ଦୁର୍ଭାଗ୍ୟକ୍ରମେ ଗୋଟିଏ ଗୋଲା ଆସି ରାଜାଙ୍କ ଉରୁରେ ଆଘାତ କଲା । ରାଜା ସଂଜ୍ଞାହୀନ ହୋଇପଡ଼ିଲେ । ୪/୬ ଜଣ ଅନୁଚର ତାଙ୍କୁ ସଚେତ କରାଇବାପାଇଁ ସେଠାରୁ ବୋହିନେଲେ । ଅବଶିଷ୍ଟ ଯେଉଁମାନେ ଜୀବିତ ଥିଲେ, ସେମାନେ ଯବନସେନା ବନ୍ୟାଜଳ ସଦୃଶ ମାଡ଼ିଆସୁଥିବାର ଦେଖି ଅଚିରେ ପ୍ରାଣହାନି ସ୍ଥିର କଲେ । ରାଜାଙ୍କୁ ଗଡ଼ ମଧ୍ୟରୁ ଅପସାରିତ କରିବା ପାଇଁ ପୂର୍ବୋକ୍ତ ଅନୁଚରମାନଙ୍କୁ କହି, ମହାବିକ୍ରମ ପ୍ରକାଶପୂର୍ବକ ସେମାନେ ଯୁଦ୍ଧରେ ମତ୍ତ ହେଲେ ଏବଂ ବହୁସଂଖ୍ୟକ ଯବନ ସୈନ୍ୟମାନଙ୍କର ପ୍ରାଣ ସଂହାର କରି ସେହି ସମରଭୂମିରେ ଅନ୍ତିମ ଶଯ୍ୟାରେ ଶାୟିତ ହେଲେ ।

ପଥ ନିଷ୍କଣ୍ଟକ ହେବାରୁ ଯବନମାନେ ଗଡ଼ ମଧ୍ୟରେ ପ୍ରବିଷ୍ଟ ହୋଇ ଦେଖିଲେ ଯେ, ଭିତରେ କେହି ନାହାନ୍ତି; ତାହା କେବଳ ନାନା ଦ୍ରବ୍ୟ ସାମଗ୍ରୀରେ ପୂର୍ଣ୍ଣ । ସମସ୍ତେ ଲୁଣ୍ଠନ କରିବାରେ ଲାଗିଲେ । ଯେ ଯାହା ପାଇଲା ଘେନି ପଳାଇଲା । ତତ୍ପରେ ଗୋଲାବର୍ଷଣଦ୍ୱାରା ଇଷ୍ଟକାଳୟମାନ ଭଗ୍ନ ଓ ସାଧାରଣ ଗୃହମାନ ଦଗ୍ଧ କରାଇ ଇନ୍ଦ୍ରଭୁବନ ସଦୃଶ ହରିହରପୁର ଗଡ଼କୁ ମହାଶ୍ମଶାନରେ ପରିଣତ କଲେ ।

ରାଜାଙ୍କର ଯେଉଁ ଆଘାତ କଥା ଇତିପୂର୍ବେ ଉଲ୍ଲେଖ କରାହୋଇଅଛି, ତାହା ଆଂଶିକଭାବରେ ହୋଇଥିବାରୁ ଅଧିକ ଅନିଷ୍ଟକର ହେଲାନାହିଁ । ରାଜା କିଛିଦିନ ଜ୍ୱର ଓ ଶରୀରବେଦନା ଭୋଗ କରି ସୁସ୍ଥ ହେଲେ । ସେ ଏବେ ସ୍ୱକୃତ କାର୍ଯ୍ୟର ପରିଣାମ ଯେ କି ଉତ୍କଟ, ତାହା ଅନୁଭବ କରିପାରିଥିଲେ । ତେଣୁ ନବାବଙ୍କ କୃପା-ଦୃଷ୍ଟି ଆକର୍ଷଣରେ ପ୍ରୟାସୀ ହୋଇ ମୁସ୍ତାଫା ଖାଁ ହସ୍ତରେ ନିଜକୁ ଧରାଦେଲେ । ରାଜାଙ୍କୁ ଧରି ଦେବାପାଇଁ ନବାବ ଯେଉଁ ଅର୍ଥ ଘୋଷଣା କରିଥିଲେ, ତାହା ମୁସ୍ତାଫା ଭାଗରେ ପଡ଼ିଲା । ଏହାପରେ ରାଜା ମଧ୍ୟ ନବାବଙ୍କଠାରେ ମଧ୍ୟସ୍ଥତା କରିବା ନିମିତ୍ତ ତାକୁ ଅର୍ଥପ୍ରଲୋଭନ ଦେଖାଇବାରୁ ଉଭୟ ଅର୍ଥପ୍ରାପ୍ତିର କାରଣ ରାଜାଙ୍କ ଜାଣି ସେ ତାଙ୍କ ପ୍ରସ୍ତାବରେ ସମ୍ମତ ହେଲା । ସେ ରାଜାଙ୍କର ହୋଇ ନବାବଙ୍କୁ ଅନେକ କଥା କହିଲା; ମାତ୍ର ଏହାର ଉତ୍ତରସ୍ୱରୂପ ସେ ବିକଟ ମୁଖଭଙ୍ଗୀ ଓ ତୀବ୍ର ଭର୍ତ୍ସନା ବ୍ୟତୀତ ଆଉ କିଛି ପାଇ ନଥିଲା ।

କିଛିକ୍ଷଣ ପରେ ମିର୍ ଜାଫର ଆଦିଷ୍ଟ ହେଲେ — ଦରବାର କକ୍ଷରେ ପ୍ରବିଷ୍ଟ ହେଲାକ୍ଷଣି ରାଜାଙ୍କୁ ହତ୍ୟା କରିବ । ରାଜା ନବାବଙ୍କଠାରେ ଯେଉଁ ଆବେଦନ କରିଥିଲେ, ତାହା କିଛିମାତ୍ର ଫଳପ୍ରଦ ନ ହେବାରୁ ସେ ବିନାନୁମତିରେ ସ୍ୱାଧୀନଭାବରେ ତାଙ୍କୁ ସାକ୍ଷାତ୍ କରିବାର ସ୍ଥିର କଲେ । ତେଣେ ମିର୍ ଜାଫର୍ ଆଦେଶ ପାଳନ କରି ଗୃହାଭ୍ୟନ୍ତରରେ ସଶସ୍ତ୍ର ସୈନ୍ୟ ଲୁକ୍କାୟିତ ରଖିଥିଲେ । ରାଜା ଅନୁଚରବର୍ଗ ସହିତ ଦରବାର କକ୍ଷରେ ପ୍ରବେଶ ମାତ୍ରକେ ଆକ୍ରାନ୍ତ ହେଲେ । ଅକଳିତ ଅସି ଉପର୍ଯ୍ୟୁପରି ପତିତ ହୋଇ ତାଙ୍କ ଶରୀରକୁ ଖଣ୍ଡବିଖଣ୍ଡ କରି ପକାଇଲା । ତାଙ୍କ ଅନୁଚରବୃନ୍ଦ ପଳାୟନ ତତ୍ପର ହୋଇ ସୁଦ୍ଧା ଯବନ ହସ୍ତରୁ ରକ୍ଷା ପାଇଲେ ନାହିଁ । ନବାବଙ୍କ ମନସ୍କାମନା ପୂର୍ଣ୍ଣ ହେଲା । ମୟୂରଭଞ୍ଜର ବିଶାଳ ବିସ୍ତୃତି ହେତୁରୁ ତାଙ୍କୁ ଏତେ ଆୟାସ ଭୋଗ କରିବାକୁ ହୋଇଅଛି ଜାଣି ନବାବ ତାହାର ଉଚ୍ଛେଦର ପନ୍ଥା ପ୍ରସ୍ତୁତ କଲେ । କ୍ଷମତାଶାଳୀ ଜମିଦାର ଓ ସର୍ଦ୍ଦାରମାନଙ୍କୁ ସେମାନଙ୍କ ଶାସନଭୁକ୍ତ ସ୍ଥାନମାନଙ୍କରେ ମୋଗଲ ସୁବାରେ ଜମିଦାର ବାହେଲ କଲେ । ଏହିରୂପେ ପୂର୍ବ ଓ ଉତ୍ତରାଞ୍ଚଳର ଅନେକ ସ୍ଥାନ ମୟୂରଭଞ୍ଜରୁ ପୃଥକ୍ ହୋଇଗଲା । ଚକ୍ରଧର ଭଞ୍ଜଙ୍କ ପରବର୍ତ୍ତୀ ରାଜା ଦାମୋଦର ଭଞ୍ଜଙ୍କୁ ସେ ମୟୂରଭଞ୍ଜର ଅବଶିଷ୍ଟାଂଶରେ ଜମିଦାର ନିଯୁକ୍ତ କଲେ । ଅନନ୍ତର ନବାବ ସେନା ହରିହରପୁର ତ୍ୟାଗପୂର୍ବକ ମୁର୍ଶିଦାବାଦ ଅଭିମୁଖରେ ଯାତ୍ରା କଲେ । ଆଲିବର୍ଦ୍ଦିଙ୍କ ଆକ୍ରମଣରେ ମୟୂରଭଞ୍ଜର କି ପ୍ରାଣ, କି ଧନ, କି ବସ୍ତୁତି, ସକଳ ବିଷୟରେ ଅଶେଷବିଧ କ୍ଷତି ହୋଇଥିଲା । ମହାରାଜ ଚକ୍ରଧର ଭଞ୍ଜ ଦେଶ-କାଳ-ପାତ୍ର ବିଗ୍ଭର ନକରି ଯେପରି ବିବେଚନାଶୂନ୍ୟ କାର୍ଯ୍ୟ କରିଥିଲେ, ସାହାଯ୍ୟପ୍ରାର୍ଥୀ ପ୍ରତି ଯେପରି ପ୍ରହାର ବିଧାନ କରିଥିଲେ, ଦୁର୍ବଳ ହୋଇ ନିଜକୁ ଯେପରି ବଳବାନର ସମକକ୍ଷ ମନେ କରିଥିଲେ, ସେହିପରି ତାଙ୍କୁ ତାହାର ଫଳ ଅବଶ୍ୟ ଭୋଗ କରିବାକୁ ପଡ଼ିଲା । ତାଙ୍କ ପାଇଁ ଭଞ୍ଜଭୂମିର ଦଶା ଯେ କଣ ହେଲା, ତାହା ସେ ଦେଖିଲେ ନାହିଁ କି ଶୁଣିଲେ ନାହିଁ, ତାହା ଦେଖିଲେ ତାଙ୍କ ସନ୍ତାନସନ୍ତତି । ସେ କେବଳ ମାତ୍ର ଦେଖିଥିଲେ - ପ୍ରିୟ ରାଜଧାନୀ ହରିହରପୁରର ଅନ୍ତିମକାଳର ଭୀଷଣ ଶ୍ମଶାନ ଦୃଶ୍ୟ !

(୭)

କିୟଦ୍ଦିବସ ପରେ ପଳାୟିତ ଲୋକମାନେ ହରିହରପୁରକୁ ଫେରିଆସି ସୁରମ୍ୟ ଆବାସ ଭସ୍ମୀଭୂତ ଓ ଭୂତଳଶାୟୀ ହୋଇଥିବାର ଦେଖିଲେ । ଯେଉଁମାନଙ୍କର ଅର୍ଥ ଥିଲା, ସେମାନେ ଗୃହ ନିର୍ମାଣରେ ଶୀଘ୍ର ଲାଗିଗଲେ । ଯେଉଁମାନଙ୍କର ଅର୍ଥର ଅଭାବ, ସେମାନେ ଗୃହ ନିର୍ମାଣ କରିବାକୁ ବହୁ କଷ୍ଟ ଭୋଗ କଲେ । କେହି କେହି ଗୃହର ସମଗ୍ରାଂଶ ନିର୍ମାଣ

କରି ନ ପାରି ଅର୍ଦ୍ଧାଂଶ ନିର୍ମାଣ କଲେ — ବାକି ଅଂଶ କାନ୍ଥଡ଼ା ପଡ଼ି ରହିଲା । ଯେଉଁମାନଙ୍କର ପକ୍କାଘର ଥିଲା, ସେମାନଙ୍କ ଦୁଃଖ ବଚନାତୀତ । ଅଧିକାଂଶଙ୍କ ଗୃହ ପତନରେ ଭଗ୍ନ ଇଷ୍ଟକ ସ୍ତୂପୀକୃତ ହୋଇଥିବାରୁ ଗୃହର ଚିହ୍ନ ମାତ୍ର ନଥିଲା । ରାଜଭବନର ମଧ୍ୟ ଶୋଚନୀୟ ଦଶା; ମାତ୍ର ଦେବମନ୍ଦିରାଦି ଆଂଶିକ କ୍ଷତବିକ୍ଷତ ହେବା ବ୍ୟତୀତ ଆଉ କିଛି ଅନିଷ୍ଟ ହୋଇ ନଥିଲା । କୌଣସିଠାରେ ସୁଦ୍ଧା ଧନସମ୍ପତ୍ତିର ସତ୍ତା ଦୃଷ୍ଟିଗୋଚର ହେଉ ନଥିଲା । ଯେଉଁମାନେ ସ୍ୱ ସ୍ୱ ସମ୍ପତ୍ତି ପୋତି ପକାଇଥିଲେ, ସେମାନଙ୍କ ମଧ୍ୟରୁ କେତେଜଣ ତାହା ପାଇଲେ । ଅନ୍ୟ କେତେକ ପ୍ରୋଥିତ ସ୍ଥାନରେ ଖାଲି ଗାତ ଥିବାର ଦେଖି ନିରାଶ ହୋଇ ଫେରିଆସିଲେ । ଯାହାହେଉ, ହରିହରପୁର ଅଳ୍ପଦିନ ମଧ୍ୟରେ ଲୋକାରଣ୍ୟ ହୋଇଗଲା । ରାଜାପ୍ରଜା ସମସ୍ତେ ହରିହରପୁରର ଶୋଭାବର୍ଦ୍ଧନାର୍ଥେ ପ୍ରାଣପଣେ ଚେଷ୍ଟା କରିବାକୁ ଲାଗିଲେ । ମାତ୍ର ଏପରି ବୃହତ୍ ସ୍ଥାନଟିର ଶୋଭା ସମ୍ପାଦନ କାର୍ଯ୍ୟ ଅଳ୍ପଦିନରେ କି ହେବାର ସମ୍ଭବ ?

(୮)

ମିର୍ ହବିବ୍ ଦାକ୍ଷିଣାତ୍ୟକୁ ପଳାଇ ମରହଟ୍ଟାମାନଙ୍କ ସହିତ ମିଳିତ ହେଲେ । ସେ ସମୟରେ ମରହଟ୍ଟା ଶକ୍ତି ସମଗ୍ର ଭାରତକୁ କବଳିତ କରିବା ପାଇଁ ମୁଖ ବ୍ୟାଦାନ କରୁଥିଲା । ଏହି ସୁଯୋଗରେ ମିର୍ ହବିବ୍ ମୋଗଲ ସୁବାଦାରଙ୍କ ବିରୁଦ୍ଧରେ ନାନା ଷଡ଼ଯନ୍ତ୍ର କରିବାରେ ଲିପ୍ତ ରହିଲେ । ସେ ମରହଟ୍ଟାମାନଙ୍କୁ ପ୍ରଚୁର ଅର୍ଥଲାଭର -- ତଥା ରାଜ୍ୟଲାଭର ପନ୍ଥା ମଧ୍ୟ ଦେଖାଇଦେଲେ । ଉତ୍କଳ ଓ ବଙ୍ଗ ପରି ଧନଶାଳୀ ଦେଶକୁ "ଚଉଥ" ଆଦାୟ ଛଳରେ ଲୁଣ୍ଠନ କଲେ ଅର୍ଥପିପାସା ଯେ ମେଣ୍ଟିଯିବ, ଏ ବିଷୟରେ ଅଣୁମାତ୍ର ଅବିଶ୍ୱାସ ନ କରି ଅର୍ଥଗୃଧ୍ନୁ ମରହଟ୍ଟାମାନେ ଚତୁରଙ୍ଗ ବଳ ଘେନି ଉତ୍କଳାଭିମୁଖରେ ଧାବମାନ ହେଲେ । ସେମାନେ "ବର୍ଗୀ" ନାମରେ ପରିଚିତ ଥିଲେ । ଏମାନଙ୍କର ଏହି ଆକ୍ରମଣ "ବର୍ଗୀମାନଙ୍କ ଅତ୍ୟାଚାର" ନାମରେ ଇତିହାସରେ ପ୍ରସିଦ୍ଧ । ଏମାନଙ୍କ ଅତ୍ୟାଚାର ଦେଖି ଦେଶବାସୀମାନେ ମୁସଲମାନ ଅତ୍ୟାଚାରକୁ ସାମାନ୍ୟ ବୋଧ କରିଥିଲେ । କାରଣ ମୁସଲମାନମାନେ ସିନା ବଡ଼ ବଡ଼ ନଗର ଧ୍ୱଂସ କରୁଥିଲେ, ମାତ୍ର ଏମାନେ କ୍ଷୁଦ୍ର ପଲ୍ଲୀଠାରୁ ଆରମ୍ଭ କରି ବଡ଼ ବଡ଼ ନଗର ପର୍ଯ୍ୟନ୍ତ ସମସ୍ତ ଧ୍ୱଂସ କରିବାକୁ ଆରମ୍ଭ କଲେ । ଏମାନେ ଗ୍ରାମ ନଗରମାନଙ୍କରେ ହଠାତ୍ ଉପସ୍ଥିତ ହୋଇ ତାହା ବିଧ୍ୱସ୍ତ ଓ ଜନଶୂନ୍ୟ କରୁଥିଲେ । ଯଦିବା ଏମାନେ ବାଲ୍ୟକାଳରୁ ହିନ୍ଦୁର ରୀତିନୀତିର ଆଚାର ବ୍ୟବହାରରେ ଲାଳିତପାଳିତ ହୋଇଥିଲେ, ତଥାପି ଅର୍ଥ ସଂଗ୍ରହ ନିମିତ୍ତ ଦେବମନ୍ଦିର ଓ ଦେବବିଗ୍ରହ ନଷ୍ଟ କରିବାକୁ

ଏମାନେ ତିଳେ ମାତ୍ର କୁଣ୍ଠିତ ହେଉ ନଥିଲେ । ସେମାନେ ଉତ୍କଳର ନାନାସ୍ଥାନର ଲୁଣ୍ଠନକାର୍ଯ୍ୟରେ ଅଗ୍ରସର ହୋଇ ଅବଶେଷରେ ବାଲେଶ୍ୱରଠାରେ ଉପସ୍ଥିତ ହେଲେ । ସେଠାରୁ ଗ୍ରରିଆଡ଼କୁ ସୈନ୍ୟ ବିସ୍ତାରିତ ହୋଇଗଲା । ଗୋଟିଏ ବୃହତ୍ ଦଳ ମୟୂରଭଞ୍ଜ ଆଡ଼କୁ ଧାବମାନ ହେଲା । ବାଟରେ ଆସୁ ଆସୁ ଗୋଡ଼ଦା, ସୁତାନଟାଇ, (୧) ପ୍ରଭୃତି ପଥପାର୍ଶ୍ୱସ୍ଥ ବୃହତ୍ ଗ୍ରାମମାନ ଉତ୍ସନ୍ନ କରି ମାଣତ୍ରୀଠାରେ (୨) ଉପସ୍ଥିତ ହେଲେ ।

ମରହଟ୍ଟାମାନେ ଆସୁଥିବାର ଅବଗତ ହୋଇ ରାଜା ଦାମୋଦର ଭଞ୍ଜ ବିପଦ ଆଶଙ୍କା କଲେ । ବିପଦ ପରେ ବିପଦ ଆସି ଉପସ୍ଥିତ ହେବାର ଦେଖି ସେ ନିରୂପାୟ ହୋଇଗଲେ । କାରଣ ମରହଟ୍ଟାମାନଙ୍କ କାର୍ଯ୍ୟକଳାପ ସର୍ବତ୍ର ପ୍ରଗ୍ରରିତ ହୋଇଥିଲା । ସେ ମରହଟ୍ଟାମାନଙ୍କୁ ସନ୍ତୁଷ୍ଟ ବା ପରାଭୂତ କରିପାରିବେ, ଏ ଭଳି କିଛି ଧନସମ୍ପତ୍ତି ବା ସୈନ୍ୟବଳ ତାଙ୍କର ସେତେବେଳେ ନ ଥିଲା । ରାଜକୋଷ ଶୂନ୍ୟପ୍ରାୟ ଥିଲା । ସୈନ୍ୟସାମନ୍ତ ନାମକୁ କିଛି ଥିଲେ, ମାତ୍ର କାମକୁ କିଛି ନଥିଲେ କହିଲେ ଚଳେ । ବାକି କେବଳ ଭୂୟାଁ ବାଥୁଡ଼ି ସେମାନଙ୍କ ପୃଷ୍ଠପୋଷକତାରେ ଯେ ଗୋଟାଏ ଭଲ ଫଳ ହେବ, ଏହା ସେ ମନରେ ଆଦୌ ସ୍ଥାନ ଦେଲେନାହିଁ । ନିରାପଦରେ ରହିବା ନିମିତ୍ତ ସେ ରାଜପରିବାରଙ୍କୁ ବ୍ରାହ୍ମଣଘାଟୀକୁ ପଠାଇଦେଲେ ଏବଂ ଦଳବଳ ସଂଗ୍ରହ କରି ମରହଟ୍ଟାମାନଙ୍କୁ ଭେଟିବା ସକାଶେ ମାଣତ୍ରୀ ଆଡ଼କୁ ଯାତ୍ରା କଲେ । ମାଣତ୍ରୀ ଅପେକ୍ଷା ଅଦୂରବର୍ତ୍ତୀ କୁରାଡ଼ିଗଡ଼ ସୁଦୃଢ଼ ଥିବାରୁ ରାଜା ସେଠାରେ ଡେରା ପକାଇଲେ । ଯୁଦ୍ଧ ଅଧିକ ଦିବସ ସ୍ଥାୟୀ ହେବାର ସମ୍ଭାବନାରେ ରାଜା ପ୍ରଚୁର ଧାନ୍ୟ ସଂଗ୍ରହ କରି ଗଡ଼ ମଧ୍ୟରେ ରଖିଲେ । ଏହି ସମୟରେ ମରହଟ୍ଟାମାନେ ମାଣିତ୍ରୀରେ ପହଞ୍ଚିବାରୁ ଶୀଘ୍ର ଯୁଦ୍ଧ ଆରମ୍ଭ ହେଲା । ରାଜା ପରାଜିତ ହୋଇ ହରିହରପୁରକୁ ପଳାଇ ଆସିଲେ । ପଳାୟନ ସମୟରେ ସେହି ଧାନ୍ୟ କାଳେ ମରହଟ୍ଟାମାନଙ୍କର ହସ୍ତଗତ ହେବ, ଏହା ଭାବି ତାହା ଭସ୍ମୀଭୂତ କରିଆସିଲେ । ଅଦ୍ୟାପି ସେହି ପୋଡ଼ା ଧାନ ସେଠାରେ ଦେଖିବାକୁ ମିଳେ । ରାଜାଙ୍କ ପରାଜୟ ଶୁଣି ହରିହରପୁରକୁ ଅନେକେ ପ୍ରାଣହାନି ଭୟରେ ଅନ୍ୟତ୍ର ପଳାଇଲେ ।

ମରହଟ୍ଟାମାନେ ଜୟୀ ହୋଇ ରାଜାଙ୍କର ଅନୁଧାବନ ନ କରି ବାଲେଶ୍ୱରକୁ ସାହାଯ୍ୟାର୍ଥ ସମ୍ବାଦ ପଠାଇଲେ । କାରଣ ସେମାନେ ରାଜାଙ୍କ ପରାଜୟକୁ ଚତୁରତା ସ୍ଥିର

---

(୧) ମୟୂରଭଞ୍ଜର ସୀମାନ୍ତବର୍ତ୍ତୀ ଗ୍ରାମଦ୍ୱୟ ।

(୨) ମାଣତ୍ରୀ ମୟୂରଭଞ୍ଜର ଗୋଟିଏ ପ୍ରଧାନ ଗ୍ରାମ । ଏଠାରେ ବିଖ୍ୟାତ ମହାଦେବ "କଖାରୁଆ ବୈଦ୍ୟନାଥ"ଙ୍କ ମନ୍ଦିର ଅଛି । ପୂର୍ବେ ଏଠାରେ ଗୋଟିଏ କ୍ଷୁଦ୍ର ଗଡ଼ ଥିଲା ।

କରିଥିଲେ । ଶୀଘ୍ର ବାଲେଶ୍ୱରରୁ ସାହାଯ୍ୟକାରୀ ସୈନ୍ୟମାନେ ଆସି ମାଣତ୍ରୀରେ ଉପସ୍ଥିତ ହେଲେ । ଏଠାରେ ସେମାନେ ଶୁଣିଲେ ଯେ, ରାଜାଙ୍କ ଏକମାତ୍ର ପୃଷ୍ଠପୋଷକ ଭୂୟାଁ ବାଥୁଡ଼ିମାନେ ମକର * ପର୍ବ ଉପଲକ୍ଷରେ ଆତ୍ମଜ୍ଞାନଶୂନ୍ୟ ହୋଇ ଉନ୍ମତ୍ତ ହେବେ । ଏହି ସମୟ କାର୍ଯ୍ୟସିଦ୍ଧିର ଅନୁକୂଳ ହେବ ଭାବି ସେମାନେ ଧୀରସ୍ଥିର ଭାବରେ ମକର ସଂକ୍ରାନ୍ତି ଦିବସକୁ ପ୍ରତୀକ୍ଷା କରି ରହିଲେ ।

ମକର ସଂକ୍ରାନ୍ତି ନିକଟତର ହେଉଅଛି । ଭଞ୍ଜଭୂମିବାସୀମାନଙ୍କ ଆନନ୍ଦୋତ୍ସବର ଦ୍ୱାର ଧୀରେ ଧୀରେ ଉନ୍ମୁକ୍ତ ହେଉଅଛି । ନଈକୂଳ ଓ ପୋଖରୀ ହୁଡ଼ାମାନଙ୍କରେ ଆଖୁ ପେଡ଼ା ଲାଗିଅଛି । ହାଟମାନଙ୍କରେ ଶତ ଶତ କୁକ୍କୁଟ ଦ୍ୱନ୍ଦ୍ୱ-ଯୁଦ୍ଧରେ ପ୍ରାଣ ହରାଉଅଛନ୍ତି । ନବବସ୍ତ୍ର ପାଇଁ ସମସ୍ତେ ଲାଳାୟିତ । ସମସ୍ତଙ୍କ ଘରେ "ହାଣ୍ଡିଆ" ମଦ ପୂର୍ଣ୍ଣମାତ୍ରାରେ ରହିଅଛି । ଦିନ ଗ୍ବଲିଗଲା । ଦେଖୁଁ ଦେଖୁଁ ସମ୍ବାଦ ଆସି ଉପସ୍ଥିତ ହେଲା -- ଭୂୟାଁ ବାଥୁଡ଼ି ଆନନ୍ଦସ୍ରୋତରେ ଭାସମାନ ଅଛନ୍ତି, ମଦ୍ୟପାନ କରି ସମସ୍ତେ ଆତ୍ମବିସ୍ମୃତ ହୋଇଅଛନ୍ତି । ଲୋକମାନେ ମାଦକତାର ଅଧୀନ ହେଲେ ମନୁଷ୍ୟତ୍ୱରୁ ବିଚ୍ୟୁତ ହୁଅନ୍ତି । ଏହି ସୁଯୋଗରେ ମରହଟ୍ଟାମାନେ ହରିହରପୁର ଆକ୍ରମଣ ଓ ଲୁଣ୍ଠନ ଉଦ୍ଦେଶ୍ୟରେ ଧାବମାନ ହୋଇ ସନ୍ଧ୍ୟା ସମୟରେ ଉପସ୍ଥିତ ହେଲେ । ରାତ୍ରରେ ଗଡ଼-ପ୍ରବେଶ ଅଧିକ ନିରାପଦ ହେବାର ସ୍ଥିର କରି ତାହା କଲେ । କେହି କୌଣସିପ୍ରକାର ବାଧା ଭିଆଇଲା ନାହିଁ । ବର୍ଣ୍ଣ ମାତାଲ ଦ୍ୱାର ରକ୍ଷକମାନେ ନିଦ୍ରାଭିଭୂତ ହୋଇଥିବାରୁ ବର୍ଗୀଖଡ୍ଗ ପ୍ରସାଦରୁ ସେଠାରେ ମହାନିଦ୍ରା ଭଜିଲେ ! ଅସଂଖ୍ୟ ମସାଲ ପ୍ରଜ୍ୱଳିତ ହୋଇ ଗଡ଼ର ଅନ୍ଧକାର ନାଶ କଲା । ସେମାନେ ସହରରେ କିଛି ନପାଇ ସହର ଗୃହର ଅନ୍ଧିକନ୍ଧି ଖୋଜିବାକୁ ଲାଗିଲେ । ଯେଉଁଠାରେ ଯାହାକୁ ପାଇଲେ, ତାକୁ ଅର୍ଥପାଇଁ ପୀଡ଼ା ଦେଲେ । ପୀଡ଼ାର ଫଳ କିଛି ନ ହେବାରୁ ତାହାର ପ୍ରାଣ ଅର୍ଥରୂପେ ଗ୍ରହଣ କଲେ । କେତେଜଣ ପ୍ରାସାଦରେ ପ୍ରବେଶ କରି ଇତସ୍ତତଃ ଅର୍ଥ ଅନ୍ୱେଷଣରେ ଧାବମାନ ହେଉଅଛନ୍ତି, ଏମନ୍ତ ସମୟରେ ଗୋଟିଏ କୋଠରୀରେ ଜଣେ ବୈରାଗୀବେଶଧାରୀ ଲୋକକୁ ଦେଖି ସେମାନଙ୍କ ମଧ୍ୟରୁ ଜଣେ ପ୍ରଶ୍ନ କଲା, "ରାଜା କାହିଁ ?" ବୈରାଗୀ ଉତ୍ତର କଲେ – "ଭିତରେ ଖୋଜିଲେ ପାଇବ ।"

ସେମାନେ ଏହାଶୁଣି ଶୀଘ୍ର ରାଣୀହଂସପୁର ଆଡ଼କୁ ଧାବମାନ ହେଲେ ।

---

* ଏହି ପର୍ବଟି ମୟୂରଭଞ୍ଜରେ ସାର୍ବଜନୀନ ପର୍ବବିଶେଷ । ଏହି ଉପଲକ୍ଷରେ ସମସ୍ତେ ନୂଆ ଲୁଗା ପିନ୍ଧନ୍ତି । ଅନାର୍ଯ୍ୟମାନେ "ହାଣ୍ଡିଆ" ମଦ ଖାଇ ଉନ୍ମତ୍ତ ହୁଅନ୍ତି । ଅନେକ ଖାସି କୁକୁଡ଼ା ମରାଯାଏ ।

ସେହି ବୈରାଗୀରୂପୀ ଦାମୋଦର ଭଞ୍ଜ "ଆଉ ରକ୍ଷା ନାହିଁ" କହି ଦ୍ରୁତପଦରେ ଅଶ୍ୱଶାଳାକୁ ଯାଇ ଗୋଟିଏ ଅଶ୍ୱପୃଷ୍ଠରେ ଆରୂଢ଼ ହେଲେ ଏବଂ ଦ୍ରୁତ ଗତିରେ ପଶ୍ଚିମ ଦ୍ୱାର ଆଡ଼କୁ ଗତି କଲେ । ଯିବା ସମୟରେ କହିଗଲେ, "ରାଜା ଘୋଡ଼ା ଚଢ଼ି ଗ୍ଲିଗଲା ଶକ୍ତି ଥିଲେ ଅନୁଧାବନ କର ।" ଏହାଶୁଣି କେତେଜଣ ତାଙ୍କର ପଶ୍ଚାତ୍‌ଧାବନ କଲେ । ମାତ୍ର କେହି ତାଙ୍କର ସନ୍ଧାନ ପାଇଲେ ନାହିଁ । ମରହଟ୍ଟାମାନଙ୍କର ଅର୍ଥକାମନା ଫଳବତୀ ନ ହେବାରୁ ହରିହରପୁର ଦୁର୍ଗ ପ୍ରାଚୀରାଦି ଭୂମିସାତ୍ କରିଗଲେ ।

(୯)

ମରହଟ୍ଟାମାନେ ଗ୍ଲିଯିବା ପରେ ସ୍ୱଳ୍ପ ନଗରବାସୀ ହରିହରପୁରକୁ ଫେରିଆସିଲେ । ଅବଶିଷ୍ଟାଂଶ ଜଙ୍ଗଲର ନାନାସ୍ଥାନରେ ବାସଗୃହ ନିର୍ମାଣ କରି ସେ ସ୍ଥାନମାନଙ୍କରେ ଅଧିବାସୀ ହେଲେ । ରାଜା ମଧ୍ୟ ଆଉ ହରିହରପୁର ଗଡ଼କୁ ଆସିଲେ ନାହିଁ । ସେ ବ୍ରାହ୍ମଣୀଘାଟୀର ରାଜଧାନୀ ରାଇରଙ୍ଗପୁରରେ ବାସ କଲେ । କାରଣ ମରହଟ୍ଟାମାନେ ଭଞ୍ଜ ରାଜ୍ୟ ଓ ରାଜଧାନୀ ହରିହରପୁର ପୁନଃ ପୁନଃ ଆକ୍ରମଣ କରିବାକୁ ଲାଗିଲେ । ଏହିପରି ବାରମ୍ବାର ଆକ୍ରାନ୍ତ ହୋଇ ହରିହରପୁର ଜନଶୂନ୍ୟ ହେଲା । ହରିହରପୁର ରାଜପ୍ରସାଦାଦି ଭୂମିସାତ୍ ହୋଇ ପଡ଼ି ରହିଲା । ଦେବମନ୍ଦିରମାନଙ୍କରେ ଆଉ ଦେବ ଆରାଧନା ହେଲାନାହିଁ । ଆଉ ପ୍ରାତଃ-ମଧ୍ୟାହ୍ନ-ସାୟାହ୍ନରେ ଆରତୀ ଘଣ୍ଟା ବାଜିଲା ନାହିଁ । ଦେବବିଗ୍ରହ ପ୍ରିୟପୀଠରେ ଆଉ ବସିବାକୁ ଆସିଲେ ନାହିଁ । ପ୍ରତି ଭଗ୍ନାବଶିଷ୍ଟ ମନ୍ଦିର ଚିମୁଣିଆମାନଙ୍କର ଶାନ୍ତି-ନିକେତନ ହେଲା । ଉଚ୍ଚ ପ୍ରାଚୀର ଗଡ଼ଖାଇରେ ପଡ଼ି ଲୋପ ପାଇଲା । ଇଷ୍ଟକାଳୟର ଚିରବାଦୀ ବୃକ୍ଷଲତାଗୁଡ଼ାକ ଜନ୍ମି ରାହୁ ପରି ବଢ଼ିଗଲା । ସେହଦିନୁ ହରିହରପୁର ପରିତ୍ୟକ୍ତ ହୋଇ କଣ୍ଟକାକୀର୍ଣ୍ଣ ବନରେ ପରିଣତ ହୋଇଅଛି । ଆଜିଯାଏ ତାହାର ଧ୍ୱଂସାବଶେଷ ଲୋପ ପାଇନାହିଁ -- ବହୁ ଶତ ବର୍ଷ ପର୍ଯ୍ୟନ୍ତ ମଧ୍ୟ ପାଇବ ନାହିଁ । ତାହାର ସେହି ବିଧ୍ୱସ୍ତ ଅଂଶମାନ ବିଭିନ୍ନ ସ୍ଥାନମାନଙ୍କରେ ସେହିପରି ସ୍ତୂପାକାର ବା ଗର୍ତ୍ତାକାରରେ ପଡ଼ି ରହିଅଛି । ହାଲକୁ କେତେଜଣ ଦୂର ସ୍ଥାନକୁ ଆସି ସେଠାରେ ଘର କରି ରହିଅଛନ୍ତି । ତାହା ଗ୍ରାମରେ ପରିଣତ ହୋଇ "ହରିପୁର ଗ୍ରାମ" ବୋଲି କଥିତ ହେଉଅଛି ।



ଉତ୍କଳ ସାହିତ୍ୟ, ୧୮/୫

# ପୂଜା
## (ଗଳ୍ପ)

ଗ୍ରାମର ଅନତିଦୂରରେ ସ୍ୱଚ୍ଛ ନିର୍ଝରଟିଏ ନିରତ ପ୍ରବାହିତ । ତାହାର ଦୁଇପାର୍ଶ୍ୱ ବହୁଳ ଲତାଗୁଳ୍ମରେ ପରିଶୋଭିତ । ନିକଟରେ ଶ୍ମଶାନ । ଶ୍ମଶାନର ଏକ ପାର୍ଶ୍ୱରେ ଗୋଟିଏ ପ୍ରାଚୀନ ଭଗ୍ନ ମନ୍ଦିର ଜଟାଗୁଳ୍ମଶିଖର ହୋଇ ବିରାଜମାନ । ମନ୍ଦିର ମଧ୍ୟରେ ଶିବମୂର୍ତ୍ତି ସ୍ଥାପିତ । କେହି ସେହି ଦେବବିଗ୍ରହଙ୍କର ପୂଜା ଅର୍ଚ୍ଚନା କରନ୍ତି ନାହିଁ । ସେ ଅପୂଜିତ ପରିତ୍ୟକ୍ତ ହୋଇ କେତେ କାଳରୁ ଯେ ପଡ଼ିଅଛନ୍ତି, ତାହା କେହି କହିପାରିବ ନାହିଁ । ଗ୍ରାମରୁ ଏହି ମନ୍ଦିରଟି ବେଶ୍ ଦୃଷ୍ଟିଗୋଚର ହୁଏ ।

ବର୍ଷାକାଳ, ଦିନମାନରେ ଅନବରତ ବୃଷ୍ଟିପାତ ହେତୁରୁ ବାହ୍ୟ ପ୍ରକୃତି ସିକ୍ତ । ଘ୍ରିଆଡୁ କେବଳ ଝରଝର, ହୁହୁ, ଘୋଘୋ ଶବ୍ଦ ଶ୍ରୁତିଗୋଚର ହେଉଅଛି । ସନ୍ଧ୍ୟାର ଠିକ୍ ପ୍ରାକ୍‌କାଳରେ ପଶ୍ଚିମ ଆକାଶ ଈଷତ୍ ସିନ୍ଦୂରରାଗରେ ରଞ୍ଜିତ ହେବାପରେ ଘୋରତମିସ୍ର ପୃଥିବୀର ସଲିଳସିକ୍ତ ବଦନମଣ୍ଡଳ ଆବୃତ କଲା । ପ୍ରକୃତି ଭୀଷଣତର ଆକାର ଧାରଣ କଲା । ଏବେ ଅମାବାସ୍ୟା ତିଥି, ତହିଁରେ ପ୍ରାବୃଟ ରଜନୀ, ଉଭୟେ ପ୍ରକୃତିର ଭୀଷଣତା ବଢ଼ାଇଦେଲେ । ନାନା ନୈଶ ଜୀବକୁଳ ବିକଟ ସ୍ୱର ଆରମ୍ଭ କଲେ । ଖଦ୍ୟୋତ ବୃକ୍ଷରାନ୍ତରାଳରେ ଲୁଚି ନିଜର କ୍ଷଣପ୍ରଭା-ଲାଞ୍ଛିତ କନକ-ଜ୍ୟୋତି ବିକିରଣରେ ନିଯୁକ୍ତ ରହିଲା ।

କେତେଜଣ ଗ୍ରାମବାସୀ ଜଣକର ଉଚ୍ଚ ପିଣ୍ଡାରେ ବସି କୃଷି ବିଷୟରେ କଥୋପକଥନ କରୁଅଛନ୍ତି । ଏମନ୍ତ ସମୟରେ ସେମାନଙ୍କ ମଧ୍ୟରୁ ଜଣେ ସେହି ଶ୍ମଶାନସ୍ଥ ମନ୍ଦିରର ଆଲୁଅ ଜଳିବାର ଦେଖିଲା । ଏହି କଥା ଶୁଣି ସମସ୍ତେ ଶ୍ମଶାନ ଆଡ଼କୁ ଅନାଇ ରହିଲେ, ସମସ୍ତଙ୍କ ମନରେ ନାନାପ୍ରକାର ସନ୍ଦେହ ଉପସ୍ଥିତ ହେଲା । କେତେକ ଭୀତ ହୋଇ ଜଡ଼ବତ୍ ବସି ରହିଲେ । କାହାରି କାହାରି ମୁଖରୁ ବାକ୍ୟ ନିଃସୃତ ହେଲାନାହିଁ । କେହି କେହି କହିଲେ — ଶ୍ମଶାନବାସୀ ଶିବଙ୍କର ଭୂତପ୍ରେତଯୋନିବିଶିଷ୍ଟ ଅନୁଚରମାନେ ଉପସ୍ଥିତ ହୋଇଅଛନ୍ତି; ସେମାନଙ୍କ ମୁଖନିଃସୃତ ଅଗ୍ନିଶିଖା ଦୃଷ୍ଟିଗୋଚର ହେଉଅଛି । ଆଉ କେହି କେହି କହିଲେ — ନିରୋଳା ସ୍ଥାନ ପାଇ ଦସ୍ୟୁ ଦୁର୍ବୃତ୍ତମାନେ ବୈଠକ କରିଅଛନ୍ତି । କିନ୍ତୁ

ଦୁର୍ବୃତ୍ତମାନେ କି ଗ୍ରାମ ସନ୍ନିକଟରେ ଆଲୁଅ ଜାଳିଥା'ନ୍ତି ? ଯାହାହେଉ, ଏହା ଦେଖି ଗ୍ରାମର ଆବାଳ-ବୃଦ୍ଧ-ବନିତାଙ୍କ ମଧ୍ୟରେ ନାନା ଆଲୋଚନା ଲାଗିଲା । ସମସ୍ତେ ଭୀତଶଙ୍କିତ ହୃଦୟରେ ନିଦ୍ରା ଗଲେ ।

ପ୍ରଭାତ ହେଲା । ଗଗନମଣ୍ଡଳରୁ ମେଘମାଳା ତିରୋହିତ ହୋଇଥିବାରୁ ପ୍ରକୃତି ହାସ୍ୟମୟୀ ଦେଖାଯାଉଥିଲା । ସୂର୍ଯ୍ୟ ଉଦିତ ହେବାମାତ୍ରକେ ଦଶଦିଗ ବାଳାତପରେ ମଣ୍ଡିତ ହୋଇ ଅପୂର୍ବ ଶ୍ରୀଧାରଣ କଲା । ସେହି ଗ୍ରାମରୁ ଜଣକେତେ କୌତୁହଳପ୍ରିୟ ବ୍ୟକ୍ତି ଶ୍ମଶାନସ୍ଥ ଭଗ୍ନ ମନ୍ଦିରକୁ ଯାଇ ଯାହା ଦେଖିଲେ, ତହିଁରେ ଅଧିକ ବିସ୍ମିତ -- ଚମତ୍କୃତ ହେଲେ । ସେମାନେ ଦେଖିଲେ, ସେହି ବହୁକାଳର ପରିତ୍ୟକ୍ତ ମନ୍ଦିରଟି ଅତ୍ୟନ୍ତ ପାରିପାଟୀ ସହକାରେ ପରିଷ୍କୃତ ହୋଇଅଛି । ଅଥଚ ମନ୍ଦିରରେ ଜନ୍ମିଥିବା ବନ୍ୟ ଲାତଗୁଳ୍ମାଦି ମଧ୍ୟରୁ କୌଣସିଟି ଜନ୍ମସ୍ଥାନରୁ ଉନ୍ମୂଳିତ ବା ଛିନ୍ନ ହୋଇନାହିଁ । ବହୁଦିନର ଅପୂଜିତ ଦେବବିଗ୍ରହ ଭକ୍ତର ପୁଷ୍ପ ଚନ୍ଦନରେ ମଣ୍ଡିତ ହୋଇଥିବାରୁ ଭଗ୍ନ ଦେଉଳର ପୂର୍ବଶ୍ରୀ ପୁନଶ୍ଚ ବିକଶିତ ହୋଇଅଛି । ମନ୍ଦିରାଭ୍ୟନ୍ତରରେ ଜଣେ ଭାବବିଭୋର, ଧ୍ୟାନ-ନିମୀଳିତ ଚକ୍ଷୁ, ଅପୂର୍ବଦୃଷ୍ଟ ସନ୍ନ୍ୟାସୀ ଉପବିଷ୍ଟ । ତାଙ୍କୁ ଦେଖିଲାମାତ୍ରେ ସମସ୍ତଙ୍କ ହୃଦୟରେ ଭକ୍ତିରସ ସ୍ୱତଃ ଉଦ୍ରିକ୍ତ ହେଲା । କିନ୍ତୁ କେହି ନବାଗତ ସନ୍ନ୍ୟାସୀଙ୍କର ପରିଚୟ ଜିଜ୍ଞାସାରେ ସାହସୀ ହେଲେନାହିଁ । ସମ୍ବାଦ ପାଇ ସନ୍ନ୍ୟାସୀଙ୍କ ଦର୍ଶନ ପାଇଁ ସେଠାକୁ ଲୋକେ ଯାତାୟାତ କରିବାକୁ ଲାଗିଲେ ।

ସନ୍ନ୍ୟାସୀଙ୍କର ବାକ୍ୟ ସଂଯତ । କିନ୍ତୁ ତାଙ୍କର ଆୟତ ଲୋଚନର ପ୍ରସନ୍ନମୟୀ ଦୃଷ୍ଟିରେ ଏପରି ବୈଚିତ୍ର୍ୟମୟୀ ଭାଷା ଥିଲା ଯେ, ଆବାଳବୃଦ୍ଧ ତାହା ସୁସ୍ପଷ୍ଟ ଭାବରେ ବୁଝି ପାରୁଥିଲେ । ଗୁପ୍ତ ଚିତ୍ତ ଦର୍ଶନରେ ତାଙ୍କର ଅମୋଘ ଶକ୍ତି ଥିଲା । ତେଣୁ ତାଙ୍କଠାରୁ -- ତାଙ୍କର ସେହି ସହଜ-ଶାନ୍ତ ଚକ୍ଷୁଠାରୁ ଆବିଳତାପୂର୍ଣ୍ଣ ହୃଦୟରେ କେହି ଫେରିପାରୁ ନଥିଲେ ।

ସନ୍ନ୍ୟାସୀ ଦିନଯାକ ଦେବାର୍ଚ୍ଚନାରେ ନିଯୁକ୍ତ ରହୁଥିଲେ । ଦିନାନ୍ତେ ଦେବାର୍ଚ୍ଚନା ସମାପ୍ତ କରି ସେ 'ଗୋପୀଯନ୍ତ୍ର' ବାଦନପୂର୍ବକ ଅର୍ଦ୍ଧନିମୀଳିତନେତ୍ର ହୋଇ ବନ୍ଦନାଗୀତି ଏପରି ସୁମିଷ୍ଟସ୍ୱରରେ ଗାନ କରୁଥିଲେ ଯେ, ତାହା ପାଷାଣକୁ ତରଳାଇ ଦେଉଥିଲା ପରି ବୋଧ ହେଉଥିଲା । ଶ୍ରୋତୃବର୍ଗ ଚିତ୍ରାର୍ପିତବତ୍ ଦଣ୍ଡାୟମାନ ହୋଇ ତାଙ୍କର ସଙ୍ଗୀତ ଶ୍ରବଣ କରୁଥିଲେ । ଅନେକେ ତାହାର ଅର୍ଥଗ୍ରହଣ କରିବାରେ ଅକ୍ଷମ ହେଉଥିଲେ ସତ୍ୟ; ମାତ୍ର ସେମାନଙ୍କ ମୁଖଭଙ୍ଗୀରୁ ତାହାର ମର୍ମ ଗ୍ରହଣ କରୁଥିବା ପରି ବୋଧ ହେଉଥିଲା ।

ଏହିପରି ଦିନ ଅତିବାହିତ ହେବାକୁ ଲାଗିଲା । ସମସ୍ତ ଗ୍ରାମବାସୀ ସନ୍ନ୍ୟାସୀଙ୍କର ଭକ୍ତଶ୍ରେଣୀଭୁକ୍ତ ହେଲେ । ସମସ୍ତଙ୍କ ହୃଦୟ ନବୀନ ଭକ୍ତିରସରେ ଦ୍ରବୀଭୂତ ହେଲା । ସମସ୍ତେ ଜୀର୍ଣ୍ଣ ମନ୍ଦିରଟିର ସଂସ୍କାରରେ ବ୍ରତୀ ହୋଇ ତାହା ସମାଧାନ ନିମିତ୍ତ ସନ୍ନ୍ୟାସୀଙ୍କୁ ନାନାପ୍ରକାରେ ଅନୁରୋଧ କଲେ । ମାତ୍ର ସନ୍ନ୍ୟାସୀ କହିଲେ -- ତଦ୍ଦ୍ୱାରା ବହୁ ଲତା ଗୁଳ୍ମାଦିର ଧ୍ୱଂସ ଘଟିବ । ତେଣୁ ସେମାନେ ତଦ୍ ବିଷୟରେ ବଳହାର ନ କରି ନିରସ୍ତ ରହିଲେ ।

ସନ୍ନ୍ୟାସୀଙ୍କ ବନ୍ଦନାଗୀତି — ସେ ତ ଏକ ଅପୂର୍ବ ମୋହ । ଯେ ଥରେ ମାତ୍ର ତାହା ଶୁଣିଲା, ପୁନଶ୍ଚ ନ ଶୁଣି ସେ ସ୍ଥିର ରହିପାରିଲା ନାହିଁ । ସଙ୍ଗୀତ ହେଉଥିବାବେଳେ ମନ୍ଦିର ମଧ୍ୟରେ ତିଳ ନିକ୍ଷେପ କରିବାର ସ୍ଥାନ ନଥାଏ । ଭିତରେ, ବାହାରେ -- ଗ୍ୱରିଆଡ଼ରେ ଶତ ଶତ ଲୋକ ସଙ୍ଗୀତ ଶ୍ରବଣୋଦ୍ଦେଶ୍ୟରେ ଉପସ୍ଥିତ ଥା'ନ୍ତି । କ୍ରମେ କ୍ରମେ ଗ୍ରାମାନ୍ତରରେ ସନ୍ନ୍ୟାସୀଙ୍କର ମହୀୟସୀ ଶକ୍ତି ପ୍ରଗ୍ୱରିତ ହେଲା । ଗ୍ରାମାନ୍ତରରୁ ଅସଂଖ୍ୟ ଲୋକ ଆସି ଭକ୍ତସଂଖ୍ୟା ବୃଦ୍ଧି କଲେ ।

ସର୍ବପ୍ରଥମେ ସନ୍ନ୍ୟାସୀଙ୍କର କାର୍ଯ୍ୟବିଶେଷ ନିମିତ୍ତ ସମୟ ନିରୂପିତ ଥିଲା । ଦେବାର୍ଚ୍ଚନା ସମୟରେ ସେ ନିର୍ଦ୍ଧିଷ୍ଟ ସମୟ ପର୍ଯ୍ୟନ୍ତ ଅବିଚଳିତ ଚିତ୍ତରେ ଦେବସେବା କରୁଥିଲେ । ତତ୍ପରେ ଗୋପୀଯନ୍ତ୍ରର ତାନରେ ବନ୍ଦନ-ଗୀତିକା ଗୀତ ହେଉଥିଲା । ବନ୍ଦନାର ସମାପ୍ତି ପରେ ସେ ଧ୍ୟାନନିରତ ହେଉଥିଲେ । କିନ୍ତୁ ଏହି ନିୟମିତ ସମୟରେ ଶ୍ରୋତୃବର୍ଗ ସେହି ଅମୃତ-ନିସ୍ୟନ୍ଦିନୀ ସଙ୍ଗୀତଧ୍ୱନିରେ ପରିତୃପ୍ତ ନ ହୋଇ ଆକାଙ୍‌କ୍ଷିତ ରହୁଥିଲେ । ସେମାନଙ୍କ ବାସନା -- ସନ୍ନ୍ୟାସୀଙ୍କ ବନ୍ଦନାଗୀତ ସମାପ୍ତ ନ ହୋଇ ଅହରହ ଧ୍ୱନିତ ହେଉଥାଉ । ସେହି ଜନମଣ୍ଡଳୀଙ୍କ ଅଭୀପ୍‌ସିତ ବାସନା ସନ୍ନ୍ୟାସୀଙ୍କ ହୃଦୟର ଅନ୍ତରତମ ପ୍ରଦେଶରେ ଅଚିରେ ସ୍ଥାନ ପାଇଲା ।

ତିଳ ସଂକ୍ରାନ୍ତିଠାରୁ ଦିବସ ତିଳେ ତିଳେ ବଢ଼ି ଯେପରି ରାତ୍ରିକୁ ନ୍ୟୁନ କରିପକାଏ, ସନ୍ନାସୀଙ୍କର ସେହି ବନ୍ଦନାଗାନର ସମୟ ତଦ୍ରୂପ କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇ ଅବଶେଷରେ ଧ୍ୟାନାର୍ଚ୍ଚନାର ସମୟଟିକୁ ମଧ୍ୟ ଲୁପ୍ତ କରିଦେଲା । ସନ୍ନ୍ୟାସୀ ଅନବରତ ଗାନ କରିବାରେ ମତ୍ତ ରହିଲେ ।

ସହସା ଦିନେ ସନ୍ନ୍ୟାସୀଙ୍କର ଚେତନା ଆସିଲା । ତାଙ୍କ ସୁଖସ୍ୱପ୍ନ ଭାଙ୍ଗିଗଲା । ସେ ଚମକି ପଡ଼ି ହାହାକାର କରିବାକୁ ଲାଗିଲେ । କ'ଣ କରୁ କରୁ ସେ କ'ଣ କରି ପକାଇଅଛନ୍ତି, ତାହା ଭାବି ଅତ୍ୟନ୍ତ ବ୍ୟସ୍ତ ହେଲେ । ପୂଜାସ୍ତୋତ୍ର ବଦଳରେ ସେ ଯେ

ଗାନ-ବ୍ୟବସାୟ ଆରମ୍ଭ କରିଅଛନ୍ତି ! ପାଞ୍ଚ ଦିନ ହେଲା ଦେବତାଙ୍କ ସେବା-ପୂଜା ହୋଇନାହିଁ । ପୂଜା ନିମିତ୍ତ ଯେଉଁ ଫୁଲ ଆଣିଥିଲେ, ତାହା ଦେବତାଙ୍କ ଆଗରେ ପଡ଼ି ମଉଳି ଯାଉଅଛି । ବନ୍ଦନାଗୀତ ଗାଇ ସେ ଭକ୍ତମାନଙ୍କର ପ୍ରୀତି-କୁସୁମରେ ନିଜର ପୂଜା କରିଅଛନ୍ତି । ଆତ୍ମଗ୍ଲାନି ସନ୍ୟାସୀଙ୍କର ସମଗ୍ର ପ୍ରାଣ ଅଧିକାର କଲା । ପ୍ରତି ଲୋମକୂପରୁ ଆତ୍ମ-ଗ୍ଲାନିଜନିତ ସ୍ୱେଦବାରି ବହିର୍ଗତ ହେଲା । ସେ ଆତ୍ମଜ୍ଞାନଶୂନ୍ୟ ହୋଇ -- ବାଗ୍ଧଳପ୍ରାୟ ହୋଇ ଗୋପାଯନ୍ତ୍ର ଭୂମିରେ ନିକ୍ଷେପପୂର୍ବକ ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲେ ଏବଂ ଦେବତାଙ୍କ ପଦ୍ମଚରଣ ତଳେ ମୁଣ୍ଡ କୋଡ଼ି କୋଡ଼ି କହିଲେ "କି ହେଲା, ଦେବତା ! -- ହୃଦୟର ଦେବତା ! ହାୟ ! ମୁଁ କି କଲି ! x x x x x "

କିୟତ୍‌କ୍ଷଣ ପରେ ମୂର୍ଚ୍ଛା ଅପଗତ ହେଲା । ସନ୍ୟାସୀଙ୍କ ବଦନମଣ୍ଡଳ ଗମ୍ଭୀର, ଧୀର, ପ୍ରଶାନ୍ତ । ସଦ୍ୟ ବିକଶିତ କମଳର ଆଭା ତାଙ୍କ ମୁଖମଣ୍ଡଳରୁ ବହିର୍ଗତ ହେଉଥିଲା ପରି ଜଣାଯାଉଥିଲା । ମନରୁ ବେଦନା କାଳିମା କିଏ ଯେପରି ପୋଛି ଦେଇଥଲା । ସମସ୍ତେ ଶୁଣିଲେ -- ଯେପରି କିଏ ତାଙ୍କୁ କହୁଅଛି -- "ନିର୍ବୋଧ ! ତୋର ପୁଣି କି ବେଦନା ? କିପାଇଁ ବାଦ୍ୟଯନ୍ତ୍ର ଭାଙ୍ଗିଲୁ ? କିପାଇଁ ବିଶ୍ୱସଙ୍ଗୀତ ବନ୍ଦ କଲୁ ? ପଥର ଭିତରେ ନ ପୂରାଇ ଅନନ୍ତ ବିଶ୍ୱରେ ମୋତେ ଛାଡ଼ି ଦେଇଥିଲୁ, ଭଲ ତ କରିଥିଲୁ । ସବୁ ଜୀବଠାରେ ପ୍ରୀତି -- ବିଶ୍ୱସଂସାରରେ ତୃପ୍ତି; ସେହି ତ ମୋ ପୂଜାସାମଗ୍ରୀ ।"

ଏହାଶୁଣି ସମସ୍ତେ ଅବାକ୍ ହୋଇଗଲେ । ଭଗବାନ୍ ପୁତ୍ତଳିକାପୂଜାରେ ଅସନ୍ତୁଷ୍ଟ -- ସମସ୍ତଙ୍କ ମନରେ ଏହି ଦୃଢ଼ଧାରଣା ସ୍ଥାନ ପାଇଲା । ସମସ୍ତେ ସନ୍ୟାସୀଙ୍କୁ ଧନ୍ୟ ଧନ୍ୟ କହି ଘରକୁ ଫେରିଆସିଲେ ।

ପରଦିନ ସକାଳେ ଯାଇ ଦେଖିଲାବେଳକୁ ମନ୍ଦିରଟି ଶୂନ୍ୟ, ସନ୍ୟାସୀ ନାହାନ୍ତି । ଚତୁର୍ଦ୍ଦିଗ ସ୍ୱର୍ଗୀୟ ସୌରଭରେ ପୂର୍ଣ୍ଣ । ସ୍ୱର୍ଣ୍ଣବର୍ଣ୍ଣ ପାରିଜାତମାଳା ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଅଛି । ଏହା ଦେଖିଲାକ୍ଷଣି ସମସ୍ତେ କହିଲେ -- ସନ୍ୟାସୀ ସ୍ୱଦେହରେ ସ୍ୱର୍ଗବାସ ପାଇଲେ । ଧନ୍ୟ ସନ୍ୟାସୀ ! ତୁମ୍ଭର ମହିମା ଧନ୍ୟ ! ଧନ୍ୟ ତୁମ୍ଭର "ପୂଜା" । *



* ଗୋଟିଏ ବଙ୍ଗଳା ଗଳ୍ପର ଆଂଶିକ ଅବଲମ୍ବନରେ ଲିଖିତ ।

# ପୂର୍ବ ଭାରତରେ ଅଥର୍ବବେଦର ଚର୍ଚ୍ଚା

ଅଥର୍ବବେଦର ଘନିଷ୍ଠତା ଊର୍ଦ୍ଧ୍ୱଲୋକ ଅପେକ୍ଷା ପୃଥିବୀ ସହିତ ଅଧିକ । ବିଖ୍ୟାତ 'ପୃଥିବୀ-ସୁକ୍ତ' ଟି ଅଥର୍ବବେଦରେ ସ୍ଥାନ ପାଇଅଛି ବୋଲି ଯେ ଅଥର୍ବ ସଂହିତାକୁ ଐହିକ ବେଦ ବୋଲାଯାଏ ତାହା ନୁହେ, ଏହି ବେଦରେ ମର୍ତ୍ତବାସୀ ମାନବର ସ୍ୱାଭାବିକ ଆଶା ଆକାଙ୍‌କ୍ଷା, ସୁପ୍ରକୃତି ଓ କୁପ୍ରକୃତିର ଯେପରି ଅସଂବୃତ ପରିଚୟ ମିଳେ, ଏପରି ଆଉ କୌଣସି ବେଦରେ ମିଳେନାହିଁ । ଅଥର୍ବ ବେଦରେ ଉଚ୍ଚ-ନୀଚ, ଭଲମନ୍ଦ, ସକଳପ୍ରକାର ଭାବର ଏକତ୍ର ସମାବେଶ ହୋଇଅଛି । ବଶୀକରଣ, ମାରଣ, ଉଚ୍ଚାଟନ ପ୍ରଭୃତି ଅଭିଗ୍ୱର କ୍ରିୟା ଓ ରୋଗନାଶ, ସ୍ୱାସ୍ଥ୍ୟରକ୍ଷା, ସମୃଦ୍ଧି ଲାଭ ପ୍ରଭୃତି ଶାନ୍ତି କର୍ମରେ ଯେଉଁ ସବୁ ଆଥର୍ବଣ ମନ୍ତ୍ରପାଠର ବ୍ୟବସ୍ଥା ଅଛି; ତାହା ଭିତରେ ବୈର-ଦ୍ୱେଷ, ହିଂସା-ପ୍ରତିହିଂସା, ପ୍ରୀତି-ମୈତ୍ରୀ, କରୁଣା-ମମତା ପ୍ରଭୃତି ମନୁଷ୍ୟର ସହଜାତ ବୃତ୍ତିଗୁଡ଼ିକ ଫୁଟି ଉଠିଛି । ଏହି ଅଥର୍ବ ବେଦର ବାଣୀରେ ଆଧ୍ୟାତ୍ମିକ ସାମ୍ୟବାଦ, ଅତି ଗହନ ଦାର୍ଶନିକ ତତ୍ତ୍ୱ ଓ ସୁଗଭୀର ଦେଶପ୍ରେମ ମଧ୍ୟ ପ୍ରଗ୍ୱରିତ ହୋଇଅଛି । ମତ୍ସ୍ୟଜୀବୀ 'ଦାସ' ଓ 'ବ୍ରହ୍ମ', କର୍ମକର 'ଦାସ' ଓ 'ବ୍ରହ୍ମ' -- ଏହାହିଁ ଅଥର୍ବ ବେଦର ଉକ୍ତି । ଅଥର୍ବବେଦ ପ୍ରାଗ୍‌ଯୁଗୀୟ ସମାଜର ଗୋଟିଏ ସୁସ୍ପଷ୍ଟ ଆଲେଖ୍ୟ । ସେହି ଦୃଷ୍ଟିରୁ ମାନବଜାତିର ସାମାଜିକ ଇତିହାସରେ ଏହି ବେଦର ଗୁରୁତ୍ୱ ସର୍ବାପେକ୍ଷା ଅଧିକ ।

ପୁରାଣାଦି ପ୍ରାଚୀନ ଗ୍ରନ୍ଥର ସାକ୍ଷ୍ୟ ଅନୁସାରେ ଏକ ସମୟରେ ଅଥର୍ବ ବେଦର ନଅଟି (୯) ଶାଖା ଥିଲା । ସେ ସବୁ ଶାଖାର ଅନୁବର୍ତ୍ତୀ ବେଦ ସଂପ୍ରଦାୟଗୁଡ଼ିକର ନାମ ଥିଲା -- ପୈପଲାଦ, ତୌଦ, ମୌଦ, ଶୌନକ, ଜାଜ୍ଜଳ, ଜଳଦ, ବ୍ରହ୍ମବଦ, ଦେବଦର୍ଶ ଏବଂ ଗ୍ୱରଣ ବୈଦ । ପ୍ରତ୍ୟେକ ଶାଖାରେ ଖଣ୍ଡିଏ ଲେଖାଏଁ ସ୍ୱତନ୍ତ୍ର ମନ୍ତ୍ରସଂହିତା ଥିଲା । ସେ କଥାର ଇଙ୍ଗିତ ନାନାଗ୍ରନ୍ଥର ଉକ୍ତି ଓ ଉଦ୍ଧୃତିରୁ ମିଳେ ।

୧୮୫୭ ଖ୍ରୀଷ୍ଟାବ୍ଦରେ ଜର୍ମାନ ଅଧ୍ୟାପକ ରଡ୍ ଲଫ୍ ରୋଟ (Roth) ଏବଂ ମାର୍କିନ୍ ଅଧ୍ୟାପକ ଡବଲିଉ, ଡି. ହୁଇଟ୍‌ନି (Whitney) ବାର୍ଲିନରୁ ଶୌନକ ଶାଖାର

ଅଥର୍ବ ବେଦସଂହିତା ପ୍ରକାଶ କରିଥିଲେ । ବେଦର ମୂଳଗ୍ରନ୍ଥଗୁଡ଼ିକ ଉତ୍ସାହୀ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ପ୍ରଯତ୍ନରେ ୟୁରୋପରୁ ପ୍ରଥମେ ପ୍ରକାଶିତ ହୋଇଥିଲା -- ଏହା ଆମ୍ଭମାନଙ୍କର ନିଷ୍କ୍ରିୟତାର ଲକ୍ଷଣ । ଯାହାହେଉ, ଏକ ଶତ ବର୍ଷ ପୂର୍ବେ ଶୌନକ ଶାଖାର ସଂହିତା ଖଣ୍ଡିକ ଅଥର୍ବ ବେଦ ବୋଲି ସର୍ବତ୍ର ପରିଚିତ ହୋଇଥିଲା । ପରବର୍ତ୍ତୀ କାଳରେ ଅଥର୍ବ ବେଦର ଯେଉଁ ସବୁ ସଂସ୍କରଣ, ଅନୁବାଦ ବା ଭାଷ୍ୟ ମୁଦ୍ରିତ ହୋଇଅଛି, ସେଗୁଡ଼ିକ ଶୌନକ ଶାଖାଭୁକ୍ତ ।

ଶୌନକ ସଂହିତା ସମ୍ପାଦନ କରି ରୋଟସାହେବ କିନ୍ତୁ ତୃପ୍ତ ହୋଇ ନଥିଲେ । ସେ ଉତ୍କୃଷ୍ଟ ପାଠଯୁକ୍ତ ଆଉ ଖଣ୍ଡିଏ ଅଥର୍ବ ସଂହିତାର ଅନୁସନ୍ଧାନରେ ବ୍ୟସ୍ତ ହୋଇଉଠିଲେ । ଅଧ୍ୟାପକ ରୋଟ ଥିଲେ ତତ୍‌କାଳୀନ ୟୁରୋପର ବିଶିଷ୍ଟ ପ୍ରାଚ୍ୟ-ବିଦ୍ୟାବିତ୍ । ସେ ଭାରତବର୍ଷର ବ୍ରିଟିଶ ସରକାରଙ୍କ ନିକଟକୁ ନୂତନ ପୋଥି ଅନୁସନ୍ଧାନ ପାଇଁ ଅନୁରୋଧ କରି ଚିଠି ଲେଖିଲେ । ଭାରତବର୍ଷର ଉତ୍ତରାଞ୍ଚଳରେ ଯେ ଏହି ପୋଥିପ୍ରାପ୍ତିର ସମ୍ଭାବନା ଅଛି, ଏହା ମଧ୍ୟ ଅନୁମାନ କରି ରୋଟ ସାହେବ ଲେଖିଥିଲେ । ଭାରତସରକାର ତାଙ୍କର ଅନୁରୋଧ ରକ୍ଷା କରି ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ତତ୍‌କାଳୀନ ଛୋଟ ଲାଟ୍ ସାର୍ ଉଇଲିୟମ୍ ମୁରେଙ୍କ ଉପରେ ଅନୁସନ୍ଧାନର ଭାର ଦେଲେ । ସତକୁ ସତ କାଶ୍ମୀର ରାଜ୍ୟର ଶ୍ରୀନଗରର ଗ୍ରନ୍ଥାଗାରରେ ଆକାଂକ୍ଷିତ ଗ୍ରନ୍ଥର ଖଣ୍ଡିଏ ଜୀର୍ଣ୍ଣ ପୋଥି ମିଳିଲା । ଏହି ପୋଥି ଖଣ୍ଡିକ ଅଥର୍ବ ବେଦର ପୈପଲାଦ ଶାଖାର ସଂହିତା । ଏହା ଭୂର୍ଜପତ୍ର ଉପରେ କାଶ୍ମୀରୀୟ ଶାରଦା ଲିପିରେ ଲେଖା । ଏହି ପୋଥିଖଣ୍ଡିକର ପ୍ରଥମ ପତ୍ର ଓ ଆଉ ଗୋଟିଏ ପତ୍ର ନଷ୍ଟ ହୋଇଥିଲା । ଭୂର୍ଜପତ୍ରର ସୂକ୍ଷ୍ମ ତ୍ୱକ୍ ଉଠିଯିବାରୁ ଅନେକ ସ୍ଥଳରେ ଅକ୍ଷର ମଧ୍ୟ ତତ୍ ସହିତ ଉଠିଯାଇଥିଲା । ଆଉ କେତୋଟି ପତ୍ରର ଲେଖା ମଧ୍ୟ ନିତାନ୍ତ ଅସ୍ପଷ୍ଟ ହୋଇଥିଲା । ଏତେ ବିକଳତା ସତ୍ତ୍ୱେ ବେଦ ବିଦ୍ୟାର ଏହି ଅପୂର୍ବ ଗ୍ରନ୍ଥଟି ଜର୍ମାନୀରେ ପରମ ସମାଦରସହିତ ଗୃହୀତ ହୋଇଥିଲା । ସାଫଲ୍ୟପରିତୃପ୍ତ ରୋଟ ସାହେବ ୧୮୭୫ ଖ୍ରୀଷ୍ଟାବ୍ଦରେ ପୈପଲାଦ ଅଥର୍ବବେଦୀୟ ବିଷୟବସ୍ତୁର ପରିଚୟ ଓ ପୋଥି ଆବିଷ୍କାରର ବିଚିତ୍ର ଇତିବୃତ୍ତ ସହ ଖଣ୍ଡିଏ ବହି ପ୍ରକାଶ କରିଥିଲେ । ପୁଣି ସେ ୧୮୭୮ ଖ୍ରୀଷ୍ଟାବ୍ଦରେ ଫ୍ଲୋରେନ୍‌ସ ନଗରରେ ଅନୁଷ୍ଠିତ ଆନ୍ତର୍ଜାତୀୟ ପ୍ରାଚ୍ୟବିଦ୍ୟା ସମ୍ମେଳନରେ ପୈପଲାଦ ସଂହିତା ସଂପର୍କରେ ଏକ ପ୍ରବନ୍ଧ ମଧ୍ୟ ପାଠ କରିଥିଲେ । ଏହାଦ୍ୱାରା ୟୁରୋପ ଓ ଆମେରିକାର ପଣ୍ଡିତ ମହଲରେ ଚହଳ ପଡ଼ିଥିଲା । ରୋଟ-ସାହେବଙ୍କ ମୃତ୍ୟୁପରେ ପୋଥି

ଖଣ୍ଡିକୁ ଆଧୁନିକ ପଶ୍ଚିମ ଜର୍ମାନୀ ଅନ୍ତର୍ଭୁକ୍ତ ଟୁବିଙ୍ଗେନ ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାରରେ 'ଅମୂଲ୍ୟ ସମ୍ପଦ' (Priceless Treasure) ରୂପେ ରଖାଗଲା । ୧୯୦୧ ଖ୍ରୀଷ୍ଟାବ୍ଦରେ ଟୁବିଙ୍ଗେନର ଅଧ୍ୟାପକ ରିଗ୍‌ର୍ଡ଼ ଗାର୍ବେ (Garbe) ଓ ବାଲ୍‌ଟିମୋରର ଅଧ୍ୟାପକ ମରିସ୍ ବ୍ଲୁମ୍ ଫିଲଡ୍ (Bloomfield) ଙ୍କର ତତ୍ତ୍ୱାବଧାନରେ କ୍ରମୋଫଟୋଗ୍ରାଫି ସହାୟତାରେ ପୋଥିଖଣ୍ଡିକ ଯଥାଦୃଷ୍ଟ ମୁଦ୍ରିତ ହେଲା; କିନ୍ତୁ ଦେଖାଗଲା ଯେ କେବଳ ଅସଂପୂର୍ଣ୍ଣ ନୁହେ, ପୋଥିଟି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଭୁଲରେ ପରିପୂର୍ଣ୍ଣ ଓ ଅର୍ଥବୋଧର ଏକାବେଳକେ ଅଯୋଗ୍ୟ । ତଥାପି ଗ୍ରନ୍ଥର ଗୁରୁତ୍ୱ ବୁଝି ଅଧ୍ୟାପକ ଏଲ୍.ସି. ବେରେଟ୍ (Barret) ଙ୍କ ଦ୍ୱାରା ଆମେରିକାନ୍ ଓରିଏଣ୍ଟାଲ୍ ସୋସାଇଟିର ବିଖ୍ୟାତ ତ୍ରୈମାସିକ ପତ୍ରିକାରେ ଖଣ୍ଡ ଖଣ୍ଡ କ୍ରମଶଃ ଖ୍ରୀ: ୧୯୦୧ ଠାରୁ ୧୯୪୦ ମଧ୍ୟରେ ଦୀର୍ଘକାଳ ଧରି ଗ୍ରନ୍ଥଟି ରୋମାନ୍ ଅକ୍ଷରରେ ମୁଦ୍ରିତ ହେଲା ଓ କିଛି କିଛି ଆନୁମାନିକ ସଂଶୋଧନ ମଧ୍ୟ ତହିଁରେ ଯୋଗ କରାଗଲା । ଏହି ରୋମାନ୍ ଅକ୍ଷରରେ ମୁଦ୍ରିତ ପୁସ୍ତକକୁ ଡକ୍ଟର ରଘୁବୀର ଦେବନାଗରୀ ଲିପିରେ ପ୍ରକାଶ କରିଅଛନ୍ତି; କିନ୍ତୁ ମୁଦ୍ରିତ ଗ୍ରନ୍ଥଟି ପ୍ରଶ୍ନବୋଧକ ଚିହ୍ନଦ୍ୱାରା, ତାରକାଚିହ୍ନ ଦ୍ୱାରା ଓ ବିନ୍ଦୁଯୁକ୍ତ ଶୂନ୍ୟସ୍ଥାନ ଦ୍ୱାରା କଣ୍ଟକିତ ହୋଇଅଛି । ମୂଳବସ୍ତୁର ତ୍ରୁଟି ଲାଗି ପଣ୍ଡିତମାନଙ୍କର ସମସ୍ତ ଅଧ୍ୟବସାୟ ପ୍ରାୟ ନିଷ୍ଫଳ ବୋଲି ବିବେଚିତ ହୁଏ । ହାର୍ବାର୍ଡ଼ ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଦ୍ୟା ଗ୍ରନ୍ଥମାଳାରେ ପ୍ରକାଶିତ ଶୌନକୀୟ ଅଥର୍ବବେଦର ଭୂମିକାରେ ଅଧ୍ୟାପକ ସି. ଆର୍. ଲୋନମେନ୍ (Lonman) ପରିହାସ କରି କାଶ୍ମୀରୀ ପୋଥିର ନାମ ଦେଇଅଛନ୍ତି -- 'ଅପପାଠ, ସ୍ଖଳିତ-ରତ୍ନାକର' ଭୁଲତ୍ରୁଟିର ଖଣି । ସେ ଆହୁରି କହିଅଛନ୍ତି ଯେ ଏହି ପୋଥିଟି ଏତେ ଅଶୁଦ୍ଧ ଯେ ଶତ ସଂଶୋଧନ ଦ୍ୱାରା ଏହାର ପ୍ରକୃତ ପାଠ ଉଦ୍ଧାର କରିବାର କୌଣସି ସମ୍ଭାବନା ନାହିଁ । ଅଧ୍ୟାପକ ପଲ୍ ଡିମେ (Thiemey) ମନ୍ତବ୍ୟ ଦେଇଅଛନ୍ତି ଯେ ବିଦ୍ୟାକ୍ଷେତ୍ରରେ ଏହି ପୋଥିଟି ଏକାବେଳକେ ନିରର୍ଥକ (Useless for philological purpose) ।

ପୈପଲାଦସଂହିତା କାଶ୍ମୀରରେ ଆବିଷ୍କୃତ ହୋଇଥିଲା ଓ ଭାରତର ଅନ୍ୟତ୍ର ପୈପଲାଦ ଶାଖାର ନାମ ସୁଦ୍ଧା ଅଜ୍ଞାତ ଥିଲା । ସୁତରାଂ ପଣ୍ଡିତମାନ ଏହି ଶାଖାର ନାମ ରଖିଲେ "କାଶ୍ମୀରୀୟ ଅଥର୍ବ ବେଦ" । ଅଧ୍ୟାପକ ଡିମେ ନାନାପ୍ରକାର ଯୁକ୍ତିତର୍କ ଅବତାରଣ କରି ସ୍ଥିର କରିଥିଲେ ଯେ ପୈପଲାଦ ଅଥର୍ବ ବେଦ ଭାରତବର୍ଷର ଉତ୍ତର-ପଶ୍ଚିମ ପ୍ରାନ୍ତରେ ଉଦ୍ଭୂତ ହୋଇଥିଲା ଓ ଏହି ଅଞ୍ଚଳରେ ଏହି ଶାଖାର ପ୍ରସାର ନିବଦ୍ଧ ଥିଲା । ତେଣୁ

ବର୍ତ୍ତମାନ କାଳରେ ପୈପଲାଦ ସଂପ୍ରଦାୟ ବିଲୁପ୍ତ ହୋଇଅଛି ବୋଲି ପଣ୍ଡିତମାନେ ସ୍ଥିର କରି ନେଇଥିଲେ । ବହୁ ଚେଷ୍ଟାରେ ଏତେ କାଳଯାଏଁ କୌଣସି ଦ୍ୱିତୀୟ ପୋଥିର ସନ୍ଧାନ ନ ମିଳିବାରୁ ସଂହିତାର ପାଠୋଦ୍ଧାରର ଅନୁଶୀଳନଧାରା ରୁଦ୍ଧ ହୋଇଥିଲା ।

ତିନିବର୍ଷ ପୂର୍ବେ ପ୍ରାଚୀନ ବଙ୍ଗର ବେଦ ଚର୍ଚ୍ଚା ସଂପର୍କରେ ଅନୁସନ୍ଧାନ କରୁଥିବା ସମୟରେ ବଙ୍ଗଦେଶର ଦୁଇଟି ତାମ୍ର ଶାସନ ପ୍ରତି ମୋର ଦୃଷ୍ଟି ଆକର୍ଷିତ ହୋଇଥିଲା । ଏଥିମଧ୍ୟରୁ ଖଣ୍ଡିଏ ଦିନାଜପୁର ଜିଲ୍ଲାର ବେଲୋୟା ଗ୍ରାମରୁ ପାପ୍ତ ବିଗ୍ରହପାଳ ୩ୟଙ୍କର ଦାନଲିପି, ଅନ୍ୟଟି ପାବନା ଜିଲ୍ଲାର ମାଧାଇ ନଗରରୁ ପ୍ରାପ୍ତ ଲକ୍ଷ୍ମଣସେନଙ୍କର ଦାନଲିପି । ଉଭୟ ତାମ୍ରଶାସନର ଭୂମିଗ୍ରହୀତା ଥିଲେ ପୈପଲାଦ ବ୍ରାହ୍ମଣ । ପୂର୍ବ ଭାରତରେ ଏକ ସମୟରେ ପୈପଲାଦ ସଂପ୍ରଦାୟର ଅସ୍ତିତ୍ୱ ଥିଲା । ଏହା ଏକାବେଳକେ ଅଜ୍ଞାତ କହିଲେ ଚଳେ । ଏହାପରେ ଅଳ୍ପଦିନ ମଧ୍ୟରେ ଏହାର ସମର୍ଥକ ପ୍ରମାଣ ମିଳିଲା 'ଗୋପାଳତାପିନୀ' ଉପନିଷଦ୍‌ର ଟୀକାକାର ବଳଦେବ ବିଦ୍ୟାଭୂଷଣଙ୍କର ଲେଖାରୁ । ବିଦ୍ୟାଭୂଷଣ ଲେଖିଅଛନ୍ତି -- "ଗୋପାଳୋପନିଷତ୍ ଖଣ୍ଡିକ ପୈପଲାଦ ଶାଖାର ଗ୍ରନ୍ଥ; ଏହା ଉତ୍କଳୀୟ ପ୍ରଭୃତି ଆଥର୍ବଣିକମାନଙ୍କ ଦ୍ୱାରା ଅଧୀତ ହୁଏ" -- "ଉତ୍କଳାଦିଭିରାଥର୍ବଣିକୈରଧୀୟମାନା ପୈପଲାଦ ଶାଖାନ୍ତଃ ସ୍ଥିତେୟଂ ଗୋପାଳୋପନିଷତ୍ ।"

ଏବେ ବେଶ୍ ବୁଝାଗଲା ଯେ ପୈପଲାଦ ଶାଖା କେବଳ କାଶ୍ମୀରର ନୁହେ, ପୂର୍ବ ଭାରତରେ ଏହି ଶାଖାର ବେଶ୍ ପ୍ରଚଳନ ଥିଲା । ମୁଁ ସନ୍ଧାନ ପାଇଲି ଯେ ବିହାରର ସିଂହଭୂମ ଜିଲ୍ଲାର ଧଳଭୂମ ପ୍ରଗନାର ଗୁହିଆପାଳ ଗ୍ରାମରେ ଷାଠିଏ ଘର ପୈପଲାଦଙ୍କର ନିବାସ ଅଛି । ଏହିଠାରେ ମୋର ପୈପଲାଦ ତଥ୍ୟ ସଂଗ୍ରହର ସୂତ୍ରପାତ ହେଲା । 'ପୈଠନସୀ ସୂତ୍ର' ଯେ ପୈପଲାଦ ଗ୍ରନ୍ଥ, ଏ ବିଷୟରେ ନିଶ୍ଚିତ ପ୍ରମାଣ ଏହି ଗ୍ରାମରୁ ସଂଗୃହୀତ ହେଲା । ତାଳପତ୍ରରେ ଓଡ଼ିଆ ଅକ୍ଷରରେ ଲିଖିତ ପୋଥି ଦେଖିଲି । ଅଥର୍ବ ବେଦର କ୍ରିୟାକାଣ୍ଡର ପରିଚୟ ମିଳିଲା । ତାହା ବ୍ୟତୀତ ଆଧୁନିକ ବଙ୍ଗ, ବିହାର ଓ ଓଡ଼ିଶାର ନାନାସ୍ଥାନରେ ଅଦ୍ୟାପି ଯେ ହଜାର ହଜାର ପୈପଲାଦୀ ବ୍ରାହ୍ମଣ ବାସ କରୁଅଛନ୍ତି, ତାହାର ସନ୍ଧାନ ମଧ୍ୟ ପାଇଲି; କିନ୍ତୁ ମୂଳ ପୈପଲାଦ ସଂହିତାର କୌଣସି କିନାରା ହେଲାନାହିଁ । ଫେରିବା ପଥରେ ପଶ୍ଚିମବଙ୍ଗର ସୀମା ମଧ୍ୟରେ ମେଦିନୀପୁର ଜିଲ୍ଲାର କେତେଜଣ ପୈପଲାଦୀ ପୁରୋହିତମାନଙ୍କ ସହିତ ପରିଚୟ ହେଲା । ଏମାନଙ୍କର ଘରେ କ୍ରିୟାକାଣ୍ଡର ପୋଥି ଦେଖିବାକୁ ପାଇଲି ।

ଶେଷରେ ମୋର ଓଡ଼ିଶା ପରିକ୍ରମା ଆରମ୍ଭ ହେଲା । ଦୁଇ ବର୍ଷ ପୂର୍ବେ ଏହି ଅଭିଯାନ ଆରମ୍ଭ ହୋଇଥିଲା, ଆଜି ଯେ ଶେଷ ହୋଇଛି, ଏହା କହିପାରିବି ନାହିଁ । ବିଭିନ୍ନ ଯାତ୍ରାରେ ପୁରୀ, ମୟୂରଭଞ୍ଜ, ବାଲେଶ୍ୱର ଓ କଟକ ଜିଲ୍ଲାର ଗ୍ରାମେ ଗ୍ରାମେ ଶତ ଶତ ପୈପଲାଦୀରଙ୍କର ଦର୍ଶନ ପାଇଅଛି । କୃଷିକର୍ମ ଏମାନଙ୍କର ପ୍ରଧାନ ଜୀବିକା; କିନ୍ତୁ ଏମାନଙ୍କ ମଧ୍ୟରେ ବର୍ତ୍ତମାନ ସୁଦ୍ଧା ଏପରି ବ୍ୟକ୍ତି ଅଛନ୍ତି, ଯେଉଁମାନେ ଆଜି ମଧ୍ୟ ଅଥର୍ବ ବେଦର ମୁଖ୍ୟ ମୁଖ୍ୟ ସୁକ୍ତଗୁଡ଼ିକୁ ମୁହେଁ ମୁହେଁ ପାଠ କରିପାରନ୍ତି । ଏମାନଙ୍କର ପିତୃପିତାମହମାନେ ସମଗ୍ର ବେଦ ମୁଖସ୍ଥ କରିଥିଲେ । ଏମାନଙ୍କୁ ପୈପଲାଦ ସଂହିତାର ଅଲିଖିତ ପୋଥି ବା ଜୀବନ୍ତ ପୋଥି ବୋଲି ଗୃହୀତ କରାଯିବା ଉଚିତ, କିନ୍ତୁ ମୁଁ ହସ୍ତଲିଖିତ ତାଳପତ୍ର ପୋଥି ମଧ୍ୟ ସଂଗ୍ରହ କରିଅଛି । ୯୦ବର୍ଷ ପୂର୍ବେ ଯେ ଚେଷ୍ଟାର ଆରମ୍ଭ ହୋଇଥିଲା, ଏବେ ତାହା ସମ୍ପୂର୍ଣ୍ଣ ହେଲା । ପୁରୀ ଜିଲ୍ଲାର ବାସୁଦେବପୁର ଓ ଜଗନ୍ନାଥପୁର ଗ୍ରାମରେ ଓ ବାଲେଶ୍ୱର ଜିଲ୍ଲାର ମାକଳା ଓ ମାହାନ୍ତିଗଡ଼ା ଗ୍ରାମରେ ବ୍ରାହ୍ମଣମାନଙ୍କ ଘରେ ଏହି ପୋଥି ଯତ୍ନେ ରକ୍ଷିତ ଥିଲା । ଏହିସବୁ ପୋଥି ସମ୍ପୂର୍ଣ୍ଣ ଓ ପ୍ରାୟ ଶୁଦ୍ଧ । ବର୍ତ୍ତମାନ କାଶ୍ମୀର ପୋଥିର ଅଶୁଦ୍ଧିଗୁଡ଼ିକର ସଂଶୋଧନ ଓ ସମସ୍ତ ଶୂନ୍ୟସ୍ଥାନର ଯଥାଯଥ ପୂରଣ ଅଳ୍ପାୟାସସାଧ୍ୟ ହେବ ବୋଲି ମନେହୁଏ ।

କେବଳ ମୂଳ ପୈପଲାଦ ସଂହିତା ନୁହେ, ଯେ ରୂପ ଉପାଦାନଦ୍ୱାରା ପୈପଲାଦ ଗୋଷ୍ଠୀର ଧର୍ମ, ସଂସ୍କୃତି ଓ ଐତିହ୍ୟର ସୁସ୍ପଷ୍ଟ ପରିଚୟ ମିଳିପାରେ, ଏପରି ଗ୍ରନ୍ଥସବୁ ମୋର ହସ୍ତଗତ ହୋଇଅଛି । ଏଗୁଡ଼ିକ ମଧ୍ୟରେ ଅତି ଦୁର୍ଲ୍ଲଭ 'ଅଙ୍ଗୀରସ କଳ୍ପ', 'କର୍ମ୍ମପଞ୍ଜିକା', 'କର୍ମ୍ମ-ସମୁଚ୍ଚୟ' ଓ ଅପ୍ରକାଶିତ କେତୋଟି ଆଥର୍ବଣ ଉପନିଷଦ ମଧ୍ୟ ଅନ୍ତର୍ଭୁକ୍ତ । ବଙ୍ଗଳା ଅକ୍ଷରରେ ଲିଖିତ ଖଣ୍ଡିଏ 'ପୈପଲାଦ କର୍ମ୍ମ-ସମୁଚ୍ଚୟ' ଗ୍ରନ୍ଥ ମଧ୍ୟ ଅଛି । ଏ ଖଣ୍ଡିକ ମେଦିନୀପୁର ଜିଲ୍ଲାର ଅନ୍ତର୍ଗତ କାନ୍ଥି ମହକୁମାର ଦାନ । ଏହି ଗ୍ରନ୍ଥଗୁଡ଼ିକ ପ୍ରକାଶିତ ହେଲେ ଏକ ବିନଷ୍ଟ ବୈଦିକ ଶାଖାର ନାନା ତଥ୍ୟ ପଣ୍ଡିତ ସମାଜର ଗୋଚରକୁ ଆସିବ ।

ଭାରତବର୍ଷର ପୂର୍ବପ୍ରାନ୍ତ - ଅଙ୍ଗ, ବଙ୍ଗ ଓ କଳିଙ୍ଗ ବେଦ ବିଦ୍ୟାରେ ବିମୁଖତା ପାଇଁ ଚିରନିନ୍ଦିତ । ପ୍ରତ୍ନବିତ୍ ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ଏହି ପ୍ରାନ୍ତ ସୁଦୀର୍ଘ କାଳ ବୈଦିକ ସଭ୍ୟତାର ଗଣ୍ଡିରୁ ବହିର୍ଭୂତ ଥିଲା । ପରବର୍ତ୍ତୀ କାଳରେ ବୈଦିକ ସଂସ୍କୃତି ଭାରତବର୍ଷର ପୂର୍ବାଞ୍ଚଳରେ ଦୃଢ଼ମୂଳ ହୋଇପାରି ନ ଥିଲା । ବର୍ତ୍ତମାନ କିନ୍ତୁ ଦେଖାଯାଉଛି

ଯେ ଏ ସବୁ ସିଦ୍ଧାନ୍ତ ସଂପୂର୍ଣ୍ଣ ପ୍ରମାଣମୂଳକ ନୁହେ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ପାତଞ୍ଜଳି ଅଙ୍ଗଦେଶରେ ବୈଦିକ ସଂସ୍କୃତିର ଅସ୍ତିତ୍ୱ ଇଙ୍ଗିତ କରିଥିଲେ । ପାଳରାଜାମାନଙ୍କର ପ୍ରଥମ ଯୁଗରେ ଦର୍ଭପାଣି, କେଦାର ମିଶ୍ର 'ଚତୁର୍ବେଦବିତ୍' ପଣ୍ଡିତ ଥିଲେ । ପରବର୍ତ୍ତୀ ଯୁଗରେ ଗୁଣବିଷ୍ଣୁ, ହଳାୟୁଧ, ରାମନାଥ, ରାମକୃଷ୍ଣ ପ୍ରଭୃତି ମହୋପାଧ୍ୟାୟ ବଙ୍ଗାଳୀ ପଣ୍ଡିତଗଣଙ୍କର ବେଦାଲୋଚନାର ପ୍ରମାଣସ୍ୱରୂପ ସେମାନଙ୍କର ଗ୍ରନ୍ଥଗୁଡ଼ିକ ଅଦ୍ୟାପି ରହିଅଛି । ସାଂପ୍ରତିକ ଆବିଷ୍କାର ଦ୍ୱାରା ଜଣାଯାଇଅଛି ଯେ ବୈଦିକ ସମାଜର ଗୋଟିଏ ବୃହତ୍ ସଂପ୍ରଦାୟ ପୂର୍ବ ଭାରତରେ ସମୃଦ୍ଧି ଲାଭ କରିଥିଲା । ସେ ସମୃଦ୍ଧି ଆଜିପର୍ଯ୍ୟନ୍ତ ଲୋପ ପାଇନାହିଁ । ଓଡ଼ିଶାର ଦରିଦ୍ର ଓ ଅନାଡ଼ମ୍ବର ପୈପଲାଦିଗଣ ବେଦ ବିଦ୍ୟାର ଅମୂଲ୍ୟ ସଂପଦ ପୈପଲାଦ ଗ୍ରନ୍ଥଗୁଡ଼ିକ ପୁରୁଷାନୁକ୍ରମେ ରକ୍ଷାକରି ଆସିଅଛନ୍ତି । ଏବେ ସୁଦ୍ଧା ଏମାନେ ଲେଖ-ପ୍ରମାଦଯୁକ୍ତ ମନ୍ତ୍ରଶୁଦ୍ଧିଗୁଡ଼ିକୁ ସଂପ୍ରଦାୟ ପ୍ରାପ୍ତ ମୁଖସ୍ଥ ଶ୍ରୁତିର ସାହାଯ୍ୟରେ ଶୁଦ୍ଧ କରି ଦେଇପାରନ୍ତି । କାଶ୍ମୀରର ପୋଥିରେ ଗୋଟିଏ ମନ୍ତ୍ରର ପାଠ ଥିଲା -- ''ଯଶାମୀଶାନଃ'' । ଏହାର କୋଣସି କିଛି ଅର୍ଥ କରି ହେଉନଥିଲା । ବେରେଟ ସାହେବ ଆନୁମାନିକ ପାଠ ଦେଇଥିଲେ 'ଯଶାମେମାନ' । ଏଥିରେ ମଧ୍ୟ ଅର୍ଥ ଆସୁ ନଥିଲା । ଡାକ୍ତର ରଘୁବୀର ଗୋଟିଏ ପ୍ରଶ୍ନ ଚିହ୍ନ ବସାଇ ଛାପିଅଛନ୍ତି -- ''ଯଶମ୍ ? ଈଶାନଃ ।'' ମୋର ଅନୁରୋଧରେ ମାକଳାଗ୍ରାମର ବୈଦିକମାନେ ପାଠକଲେ -- ''ବିଶାମୀଶାନଃ'' । ଏଥିରୁ ସୁନ୍ଦର ଅର୍ଥ ଆସିଲା । ବିଶାମ୍ = ମନୁଷ୍ୟାଣାମ୍, ଈଶାନଃ = ଅଧିପତିଃ । ନବଲବ୍ଧ ପୋଥି ମିଳାଇ ଦେଖିଅଛି ଏହାହିଁ ପୈପଲାଦର ପ୍ରକୃତ ପାଠ ।

ଓଡ଼ିଶାରେ ଓ ତତ୍ସଂଲଗ୍ନ ବିହାର ଓ ପଶ୍ଚିମବଙ୍ଗ ଜିଲ୍ଲାଗୁଡ଼ିକରେ ପ୍ରାୟ ଚାଳିଶ ହଜାର ଅଥର୍ବବେଦୀ ବ୍ରାହ୍ମଣ ବାସ କରନ୍ତି ବୋଲି ଶୁଣିଅଛି । ଗୋଟିଏ ବିସ୍ମୟର କଥା ଏହି ଯେ ଏମାନେ ଅନ୍ୟବେଦୀୟ ବ୍ରାହ୍ମଣ ସମାଜରେ ଟିକିଏ ଅଲଗା ଭାବରେ ରହନ୍ତି । ଓଡ଼ିଶାର ପ୍ରବୀଣ ପଣ୍ଡିତଗଣ ଓ ପଦସ୍ଥ ବ୍ୟକ୍ତିଗଣ ଆଥର୍ବଣ ବ୍ରାହ୍ମଣମାନଙ୍କର ଗୌରବ କଥା କିଛିମାତ୍ର ଜାଣନ୍ତି ନାହିଁ । ସେମାନେ କେବଳ ଜାଣନ୍ତି ''ଶୁଷ୍କମୀନଂ ଅଥର୍ବାନ୍ନଂ ଇତ୍ୟାଦି ।'' ଅଥଚ ଓଡ଼ିଶାର ଗଡ଼ଜାତର ରାଜାମାନେ ବହୁସଂଖ୍ୟକ 'ଶାସନ' ଦାନକରି ଅଥର୍ବବେଦୀୟ ବ୍ରାହ୍ମଣମାନଙ୍କୁ ରାଜଧାନୀର ଅଦୂରବର୍ତ୍ତୀ ଗ୍ରାମମାନଙ୍କରେ ରଖାଇଥିଲେ । ସମ୍ଭବତଃ ଅଭିଚାର କ୍ରିୟାରେ ପୌରୋହିତ୍ୟ ପାଇଁ ଅଥର୍ବବେଦୀୟ ବ୍ରାହ୍ମଣମାନେ ନିନ୍ଦାଭାଜନ ହୋଇଥିଲେ । ପୈପଲାଦି ସଂହିତା ବହୁମାନ୍ୟ ବେଦ । ପାଣିନି ଓ ପାତଞ୍ଜଳି, ବାଦରାୟଣ

ଓ ଶଙ୍କରାଚାର୍ଯ୍ୟ ଅଥର୍ବବେଦ କହିଲେ ପୈପଲାଦ ସଂହିତାକୁ ହିଁ ବୁଝୁଥିଲେ । 'ବ୍ରହ୍ମସୂତ୍ରଭାଷ୍ୟ' ରେ ଶଙ୍କର ଏହି ସଂହିତାରୁ ଆଥର୍ବଣିକ ପ୍ରମାଣ ସଂଗ୍ରହ କରିଥିଲେ । ଅଗ୍ନି ପୁରାଣ ଓ ବିଷ୍ଣୁଧର୍ମୋତ୍ତର ପୁରାଣରେ ଏହି ସଂହିତାର ମନ୍ତ୍ରଦ୍ୱାରା 'ଅଥର୍ବ-ବିଧାନ' ରଚିତ ହୋଇଅଛି । ସ୍କନ୍ଦ ପୁରାଣରେ ପୈପଲାଦ ଅଥର୍ବବେଦର ଶ୍ରେଷ୍ଠଶାଖା ପ୍ରବର୍ତ୍ତକ ରୂପେ ଉଲ୍ଲିଖିତ ଅଛି । ସର୍ବଜନବିଦିତ ପୈପଲାଦ ସାହିତ୍ୟ ଯଥାଯଥ ସଂପାଦିତ ହେଲେ ବେଦବିଦ୍ୟାର କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସଂଯୋଜିତ ହେବ । *



* ଅଧ୍ୟାପକ ଦୁର୍ଗାମୋହନ ଭଟ୍ଟାଗ୍ରର୍ଯ୍ୟ ମହାଶୟ ମୋତେ ଅନୁବାଦ ପାଇଁ ଅନୁମତି ଦେଇଥିବାରୁ ମୁଁ ତାଙ୍କଠାର ଋଣୀ । ଏହି ପ୍ରବନ୍ଧଟି ୧୩୬୭ ସାଲର ଶାରଦୀୟ ସଂଖ୍ୟା 'ସ୍ୱାଧୀନତା' ପତ୍ରିକାରେ ମୁଦ୍ରିତ ହୋଇଥିଲା ଓ ଅନୁବାଦକ 'ସ୍ୱାଧୀନତା'ର ସଂପାଦକଙ୍କ ଠାରେ ଋଣୀ । ଅଧ୍ୟାପକ ଭଟ୍ଟାଗ୍ରର୍ଯ୍ୟ ଏ ପ୍ରବନ୍ଧରେ ନାମ 'ପୂର୍ବ ଭାରତରେ ଅଥର୍ବବେଦର ଚର୍ଚ୍ଚା' ରଖିଥିଲେ ମଧ୍ୟ ଏଥିରେ ପ୍ରକୃତରେ ଉତ୍କଳରେ ଅଥର୍ବବେଦର ଚର୍ଚ୍ଚା ହୋଇଅଛି । ଏଣୁ ଓଡ଼ିଆରେ ଏ ପ୍ରବନ୍ଧଟି ଅନୁବାଦ କରିବା ପାଇଁ ଉତ୍ସାହିତ ହୋଇଥିଲି ।

ନବଜୀବନ, ୫/୧୨

ଡକ୍ଟର ଗଣେଶ ପ୍ରସାଦ ସାହୁ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବାପରେ ସେହିଠାରେ ୟୁଜିସି ଫେଲୋସିପ୍ ପାଇ କବି ଭାନୁଜୀ ରାଓଙ୍କ କବିତା ଉପରେ ଗବେଷଣା କରି ୨୦୦୪ ମସିହାରେ ସମ୍ମାନିତ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ତାଙ୍କ ବହୁ ଲେଖା ଓଡ଼ିଶାର ଖ୍ୟାତନାମା ପତ୍ରିକା କୋଣାର୍କ, ଇସ୍ତାହାର, ନବପତ୍ର, ଅମୃତାୟନ, ବନାନୀ ଇତ୍ୟାଦିରେ ପ୍ରକାଶିତ । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ । ସମାଲୋଚନାତ୍ମକ ପୁସ୍ତକ 'ସାହିତ୍ୟ ଦର୍ପଣ'(୨୦୦୮) ମଧ୍ୟ ଲେଖକଙ୍କର ଅନ୍ୟ ଏକ କୃତି। ଅନେକ ପ୍ରକାଶିତ କବିତାରୁ ତାଙ୍କର କବି ପ୍ରତିଭାର ପରିଚୟ ମିଳେ। ସମ୍ପ୍ରତି ସେ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟରେ ଅତିଥି ଅଧ୍ୟାପକ ଭାବେ କାର୍ଯ୍ୟରତ ଥିବା ସହ ବହୁ ଗବେଷଣାମୂଳକ କାର୍ଯ୍ୟରେ ସମ୍ପୃକ୍ତ ।

ଓଡ଼ିଶା ସାହିତ୍ୟ ଏକାଡେମୀ

ISBN 81-7586-160-6
9788175861602

ଓଡ଼ିଶା ସାହିତ୍ୟ ଏକାଡେମୀ



ଡକ୍ଟର ଗଣେଶ ପ୍ରସାଦ ସାହୁ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବାପରେ ସେହିଠାରେ ୟୁଜିସି ଫେଲୋସିପ୍ ପାଇ କବି ଭାନୁଜୀ ରାଓଙ୍କ କବିତା ଉପରେ ଗବେଷଣା କରି ୨୦୦୪ ମସିହାରେ ସମ୍ମାନିତ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ତାଙ୍କ ବହୁ ଲେଖା ଓଡ଼ିଶାର ଖ୍ୟାତନାମା ପତ୍ରିକା କୋଣାର୍କ, ଇସ୍ତାହାର, ନବପତ୍ର, ଅମୃତାୟନ, ବନାନୀ ଇତ୍ୟାଦିରେ ପ୍ରକାଶିତ । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ । ସମାଲୋଚନାତ୍ମକ ପୁସ୍ତକ 'ସାହିତ୍ୟ ଦର୍ପଣ'(୨୦୦୮) ମଧ୍ୟ ଲେଖକଙ୍କର ଅନ୍ୟ ଏକ କୃତି। ଅନେକ ପ୍ରକାଶିତ କବିତାରୁ ତାଙ୍କର କବି ପ୍ରତିଭାର ପରିଚୟ ମିଳେ। ସମ୍ପ୍ରତି ସେ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟରେ ଅତିଥି ଅଧ୍ୟାପକ ଭାବେ କାର୍ଯ୍ୟରତ ଥିବା ସହ ବହୁ ଗବେଷଣାମୂଳକ କାର୍ଯ୍ୟରେ ସମ୍ପୃକ୍ତ ।





ISBN 81-7386-160-6

ଓଡ଼ିଶା ସାହିତ୍ୟ ଏକାଡେମୀ